# ସମ୍ମୋହନୀ

ଆଁଦ୍ରେ ମୋରୋଁ

ଓଡିଆ ଅନୁବାଦ

**ଚିତ୍ତରଞ୍ଜନ ଦାସ**



ପ୍ରଥମ ସଂସ୍କରଣ : ୧୯୫୯ (ସାଧାରଣତନ୍ତ୍ର ଦିବସ)


ନୂତନ ସଂସ୍କରଣ - ୨୦୧୧

*ପ୍ରକାଶକ :*

ଭାଗ୍ୟଧର ସାହୁ

ପଥିକ ପ୍ରକାଶନୀ

ଭୁବନେଶ୍ୱର ୭୫୧୦୨୫

ଓଡ଼ିଶା

ପ୍ରାପ୍ତିସ୍ଥାନ : ବିଶ୍ୱନୀଡମ୍,

୮୩/ଏ, ବାପୁଜୀ ନଗର,

ଭୁବନେଶ୍ୱର -୭୫୧ ୦୦୯

ଓଡ଼ିଶା

*ମୁଦ୍ରଣ ଓ ବନ୍ଧାଇ :*

ଗ୍ରାଫିସ୍କ୍ରୀନ, ଭୁବନେଶ୍ୱର

*ପ୍ରଚ୍ଛଦପଟ ଶିଳ୍ପୀ :*

ଅସିତ୍ ମୁଖାର୍ଜୀ

ମୂଲ୍ୟ : ୧୨୦.୦୦

ପ୍ରସିଦ୍ଧ ରୁଷ୍ ସାହିତ୍ୟିକ

**ଶ୍ରୀଯୁକ୍ତ ଇଲିୟା ଏରେନ୍‌ବୁର୍ଗଙ୍କୁ**

ସ୍ନେହ ଓ ଭକ୍ତିର ନିଦର୍ଶନ ସ୍ୱରୂପ

ଏହି ଓଡ଼ିଆ ଅନୁବାଦ

ଉତ୍ସର୍ଗିତ

This Oriya edition

dedicated

to

**MR. ILYA G. EHRENBURG**

whose

sympathy knows no barrier

**Paris le, 22 September 1958**

Au moment ou l' UNESCO, sur la recommandation du Pen Club, fait traduire en francais ou en anglais de oeuvres d'eerivains de l' Orient, Monsieur Das offre a ses compatriotes la traduction, en langue Oriya, de "Galigai," le dernier roman de Francois Mauriac, un des plus grands ecrivains de la France contemporaine. Ce double mouvement de traductions, de I Orient vers l' Occident et de l' Occident vers l' Orient, n'est pas autre chose que la pulstion de la fraternite humine et, dans notre univers morcele et dechire, la manifestation d'une volonte universelle de comprehension et d'union qui l' emporte de beaucoup sur les evenements qui nous separent.

Monsieur Das aura ete, au milieu des siens, un des artisans de cettee fraternite spirituelle car, traduire, c'est communier et devenir semblable aux autres tout en restant profondement soi-meme.

**Andre Chamson**
de l' Academie Francaise,
President International de la
Federation des Pen Clubs.

# PREFACE

At a time when UNESCO, following the advice of the Pen-Club, encourages the translation into French or English of the works of writers from the East, Mr. Das offers to his fellow countrymen the translation in Oriya of "Galigai" the latest novel of Francois Mauriac, one of the greatest writers of France. This double current of translation, from the East to the West and from the West to the East, is nothing else but the throbbing of human brotherhood and, in our split up and shattered world, the manifestation of a universal desire of understanding and union which is far more important than all the events which separate men from each other.

Mr. Das is, among his countrymen, one of the artisans of that spiritual fraternity for, to translate is to communicate and to become similar to other while however retaining one's own self.

**Sd/ Andre Chamson**
of the French Academy,
International President of the
Federation of P.E.N. Clubs.

Paris,
22 Sept 1958

# ମୁଖବନ୍ଧ

ଆନ୍ତର୍ଜାତିକ ପି.ଇ.ଏନ୍.ର ପରାମର୍ଶକ୍ରମେ ଯେତେବେଳେ ଇଉନେସ୍କୋ (ମିଳିତ ଜାତିସଂଘର ଶିକ୍ଷା, ବିଜ୍ଞାନ ଓ ସଂସ୍କୃତି ଶାଖା) ପ୍ରାଚ୍ୟ ଲେଖକମାନଙ୍କର ଗ୍ରନ୍ଥଗୁଡ଼ିକର ଇଂରାଜୀ ବା ଫରାସୀ ଅନୁବାଦ କରିବାକୁ ଯାଉଛି, ଶ୍ରୀଯୁକ୍ତ ଦାସ ଠିକ୍ ସେତିକିବେଳେ ତାଙ୍କର ଦେଶବାସୀମାନଙ୍କୁ 'ଗାଲିଗାଇ'ର ଓଡ଼ିଆ ଅନୁବାଦଟି ନିବେଦନ କରିବାକୁ ଯାଉଛନ୍ତି । ଫ୍ରାଁସୋୟା ମୋରିୟାକ୍ ହେଉଛନ୍ତି ଫ୍ରାନ୍‌ସର ସର୍ବଶ୍ରେଷ୍ଠ ଆଧୁନିକ ସାହିତ୍ୟିକମାନଙ୍କ ମଧ୍ୟରେ ଜଣେ ଏବଂ 'ଗାଲିଗାଇ' ହେଉଛି ତାଙ୍କର ସର୍ବାଧୁନିକ ଉପନ୍ୟାସ । ପ୍ରାଚ୍ୟରୁ ପାଶ୍ଚାତ୍ୟ ଉଦ୍ଦେଶ୍ୟରେ ଏବଂ ପାଶ୍ଚାତ୍ୟରୁ ପ୍ରାଚ୍ୟ ଉଦ୍ଦେଶ୍ୟରେ ବାହାରିଥିବା ଏହି ସମାନ୍ତରାଳ ଅନୁବାଦ-ସମାରୋହକୁ ମାନବିକ ଭ୍ରାତୃତ୍ୱର ଏକ ସମାନ୍ତରାଳ ସ୍ପନ୍ଦନ ବୋଲି କହିବାକୁ ହିଁ ହେବ । ନାନା ଖଣ୍ଡରେ ବିଚ୍ଛିନ୍ନ ଓ ବିଦୀର୍ଣ୍ଣ ହୋଇଯାଇଥିବା ଆମର ପୃଥିବୀରେ ଏହି ସ୍ପନ୍ଦନ ମଣିଷକୁ ମଣିଷ ସହିତ ଅନ୍ତରଙ୍ଗ ଭାବରେ ପରିଚିତ ଓ ସମ୍ମିଳିତ କରାଇବାର ଇଚ୍ଛା ହିଁ ପ୍ରକଟ କରୁଅଛି । ଆମକୁ ପରସ୍ପରଠାରୁ ବ୍ୟବହିତ କରି ରଖିଥିବା ଘଟଣାବଳୀ ଉପରେ ଆଜି ଏହି ଇଚ୍ଛା, କ୍ରମେ ଯଥେଷ୍ଟ ପ୍ରଭାବ ପକାଇବାକୁ ଆରମ୍ଭ କଲାଣି ।

ମୁଁ ବିଶ୍ୱାସ କରୁଛି, ଶ୍ରୀଯୁକ୍ତ ଦାସ ତାଙ୍କର ଦେଶବାସୀଙ୍କ ମଧ୍ୟରେ ଏହି ଆଧ୍ୟାତ୍ମିକ ଭ୍ରାତୃତ୍ୱ ସ୍ଥାପନ କରିବାକୁ ବ୍ରତୀ ହୋଇ ବାହାରିଛନ୍ତି । କାରଣ ଅନୁବାଦ କରିବାର ଅର୍ଥ ହେଉଛି ଅନ୍ୟମାନଙ୍କ ସହିତ ବିଚାରସୂତ୍ର ସ୍ଥାପନ କରିବା ଏବଂ ଆପଣାର ସ୍ୱତନ୍ତ୍ର ଓ ସ୍ୱକୀୟ ପରିଚୟକୁ ବଜାୟ ରଖିବା ସଙ୍ଗେ ସଙ୍ଗେ ତଥାପି ଅନ୍ୟମାନଙ୍କ ସହିତ ସମ୍ମିଳିତ ହେବା ।

ସ୍ୱା/ ଆଁଦ୍ରେ ଚାମ୍‌ସଁ
ସଭ୍ୟ, ଫରାସୀ ଏକାଡେମୀ,
ଆନ୍ତର୍ଜାତିକ ସଭାପତି, ପି.ଇ.ଏନ୍.

ପାରିସ୍
ସେପ୍ଟେମ୍ବର ୨୨, ୧୯୫୮

Paris, le 16 December 1957

M. Prafulla Chandra Das
Manhoman House
Cuttach - 2
Orissa
Inde

Cher Monsieur,

Comme on me demande des prefaces chaque jour, j'ai pris le parti de n'en ecrire aucune. En ce qui concerne CAMUS; il vaudrait mieux vous adresser a quelqu'un de sa generation et pour GALIGAI, j'ignore trop le public auquel je m'adr sse en Inde pour pouvoir faire ce travail utilement. Vous etes beaucoup mieux place que moi certainment pour expliquer ce petit roman a des lecteurs qui auraient tant de peine sans doute a' y entrer.

Veuillez trouver ici, cher Monsieur l'expression de mes sentiments les meilleures

**Francios Mauriac**

Paris, 16 December 1957
M. Prafulla Chandra Das
Manhoman House
Cuttach - 2 (Orissa) India

Dear Sir,

As I am being continually asked almost everyday to write one Preface or another, I have been unwillingly forced to decide not to write any such thing. In so far a CAMUS is concerned it would be better if you please address to someone of his generation and for GALIGAI, I do not know much about the public in India whom I have to address, so that I can really do this work usefully. You are far better in a position, certainly better than me, to explain this short novel to the readers who, undoubtedly will have some difficulty to enter into the spirit of it.

Kindly accept dear Sir, the expression of my best sentiments.

**Sd/ Francios Mauriac**

ପାରିସ୍, ଡିସେମ୍ବର ୧୬, ୧୯୫୭

ପ୍ରିୟ ମହାଶୟ,

ଗୋଟାଏ ନା ଗୋଟାଏ ବହିର ଭୂମିକା ଲେଖିବା ପାଇଁ ମୁଁ ପ୍ରାୟ ପ୍ରତ୍ୟେକ ଦିନ ଅନୁରୁଦ୍ଧ ହୋଇଥାଏ । ଅନିଚ୍ଛା ସତ୍ତ୍ୱେପି ଏପରି ଭୂମିକା ନ ଲେଖିବା ପାଇଁ ସିଦ୍ଧାନ୍ତ କରିଛି । ଆଲବାର୍ଟ କାମସ୍‌ଙ୍କ ସଂକ୍ରାନ୍ତରେ ଆପଣ ଅନୁଗ୍ରହ କରି ତାଙ୍କର କୌଣସି ସମସାମୟିକ ବ୍ୟକ୍ତିଙ୍କ ଦ୍ୱାରା ଭୂମିକା ଲେଖାଇଲେ ଭଲ ହେବ । 'ଗାଲିଗାଇ' ସମ୍ବନ୍ଧରେ ଲେଖିବା ଯଥାର୍ଥ ହେବ ନାହିଁ ଯେହେତୁ ଭାରତୀୟ ଜନସାଧାରଣଙ୍କ ବିଷୟରେ ମୁଁ ଅଧିକ କିଛି ଜାଣେ ନାହିଁ । ତେଣୁ ମୋ ଭୂମିକା ଦ୍ୱାରା କିଛି ଲାଭ ହେବ ନାହିଁ । ଆପଣଙ୍କର ପାଠକମାନେ ଏହି କ୍ଷୁଦ୍ର ଉପନ୍ୟାସର ମର୍ମ ସହଜରେ ଉପଲବ୍ଧି କରିବେ ନାହିଁ ଏହା ମୁଁ ବୁଝୁଛି ତଥାପି ମୋ ଅପେକ୍ଷା ଆପଣ ନିଜେ ଭଲ ଭାବରେ ସେମାନଙ୍କୁ ଲେଖକର ମାର୍ମିକ ତଥ୍ୟ ବୁଝାଇ ପାରିବେ ବୋଲି ମୁଁ ବିଶ୍ୱାସ କରେଁ ।

ଅନୁଗ୍ରହ କରି ମୋର ଶୁଭେଚ୍ଛା ଗ୍ରହଣ କରିବେ ।

ବଶମ୍ବଦ

ସ୍ୱା/ଫ୍ରାଁସୋୟା ମୋରିୟାକ୍

କାଳ-ସ୍ରୋତରେ ପ୍ରବହମାନ ଘଟଣା ପୁଞ୍ଜି ହିଁ ଇତିହାସର ସାମଗ୍ରୀ। ୨୬ ଜାନୁୟାରୀ ଭାରତବର୍ଷର ସାଧାରଣତନ୍ତ୍ର ଦିବସ, ସାଧାରଣତନ୍ତ୍ର ପ୍ରତିଷ୍ଠାର ସ୍ମରଣ ଓ ଉତ୍ସବ। ଗୋଟିଏ ସମଗ୍ର ଜାତିର ସ୍ୱାର୍ଥ ଓ ପ୍ରତିଜ୍ଞା ରକ୍ଷାର ଦୃଷ୍ଟାନ୍ତରେ ଏହି ଦିବସ ମହୀୟାନ ଏବଂ ସାଧନାର ଇତିହାସ।

ଆଜି ଏହି ପରମ ପୁଣ୍ୟ ଲଗ୍ନରେ ୧୯୫୨ ଖ୍ରୀଷ୍ଟାବ୍ଦର ନୋବେଲ୍ ପୁରସ୍କାର ପ୍ରାପ୍ତ ବିଶ୍ୱବିଖ୍ୟାତ ଫରାସୀ ଔପନ୍ୟାସିକ ଫ୍ରାଁସୋୟା ମୋରିୟାକ୍‌ଙ୍କ କ୍ଷୁଦ୍ର ଉପନ୍ୟାସ ଅନ୍ତର୍ଭୁକ୍ତ "ଗାଲିଗାଇ"ର ଓଡ଼ିଆ ଅନୁବାଦ "ସମ୍ମୋହିନୀ" ଓଡ଼ିଆ ସାହିତ୍ୟ ରସ-ପିପାସୁମାନଙ୍କୁ ପରିବେଷଣ କରି ଗୌରବ ଅନୁଭବ କରୁଅଛି।

୧୯୫୩ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୬ ତାରିଖରେ ଗ୍ରନ୍ଥକାରଙ୍କ ଇଂରେଜୀ ପ୍ରକାଶକ ଆଇରି ଆଣ୍ଡ ସ୍ପଟିସ୍‌ଉଡ୍ ଲି: ଏବଂ ତିନିଜଣ ଫରାସୀ ପ୍ରକାଶକ ଆର୍ଣ୍ଣେଷ୍ଟା ଫ୍ଲାମାରିୟନ୍, ବାର୍ଣ୍ଣାର୍ଡ଼ ଗ୍ରାସେଟ୍, ଲାଇବ୍ରେରୀ ପ୍ଲୋଁନ୍ ଏବଂ ମୋରିୟାକ୍‌ଙ୍କ ସଙ୍ଗେ ବହୁ ପତ୍ର ବିନିମୟ ପରେ ୧୯୫୬ ଖ୍ରୀଷ୍ଟାବ୍ଦ ମଇ ୨୯ ତାରିଖରେ ଆର୍ଣ୍ଣେଷ୍ଟ ଫ୍ଲାମାରିୟନ୍‌ଙ୍କ ସଙ୍ଗେ ଓଡ଼ିଆ ଅନୁବାଦ ପାଇଁ ଚୁକ୍ତି ପତ୍ର ସ୍ୱାକ୍ଷର କରିଥିଲି।

ଫରାସୀ ଏକାଡ଼େମିର ସଭ୍ୟ ଏବଂ ଆନ୍ତର୍ଜାତିକ ପି.ଇ. ଏନ୍.ର ଆନ୍ତର୍ଜାତିକ-ସଭାପତି ମାନ୍ୟବର ଶ୍ରୀଯୁକ୍ତ ଆଁନ୍ଦ୍ରେ ଚାମ୍‌ଶଁ ଏହି ଓଡ଼ିଆ ସଂସ୍କରଣ ପାଇଁ ସ୍ୱତନ୍ତ୍ର ମୁଖବନ୍ଧ ପଠାଇବା ସଙ୍ଗେ ସଙ୍ଗେ ଲେଖି ଥିଲେ "ପ୍ରିୟବନ୍ଧୁ, ଆପଣ ମୋତେ ଯେଉଁ ମୁଖବନ୍ଧଟି ଲେଖିଦେବାକୁ ଅନୁରୋଧ କରିଥିଲେ, ସେହି ମୁଖବନ୍ଧଟି ପାଇଁ ଯେଉଁ କେତୋଟି ଧାଡ଼ି ଲେଖି ଦେଇଛି ସେଥିରେ ପ୍ରକାଶିତ ହୋଇଥିବା ମୋର ଭ୍ରାତୃତ୍ୱ ପ୍ରଣୋଦିତ ଭାବଗୁଡ଼ିକ ଉପରେ ଆପଣ ବିଶ୍ୱାସ କରିବେ ବୋଲି ମୋର ଅନୁରୋଧ।"

ମାନ୍ୟବର ଆଁନ୍ଦ୍ରେ ଚାମଶଁଙ୍କ ଏହି ମହାନୁଭବତାରେ ମୁଁ ସପ୍ରଣତ ଆନ୍ତରୀକ ଧନ୍ୟବାଦ ଜଣାଉଛି ଏବଂ ଚିରକୃତଜ୍ଞ।

ଇତିମଧ୍ୟରେ ଇଂରାଜୀ ନବ ବର୍ଷ ଦିବସରେ ଓଡ଼ିଶାର ନୂଆ ରାଜଧାନୀ ଭୁବନେଶ୍ୱରରେ ନିଖିଳ ଭାରତୀୟ ପି.ଇ.ଏନ.ର ପଞ୍ଚମ ଅଧିବେଶନ ଅନୁଷ୍ଠିତ ହୋଇ ଯାଇଛି।

"ପୃଥିବୀର ବର୍ତ୍ତମାନ ପରିସ୍ଥିତିରେ ଭାରତର ସାଂସ୍କୃତିକ ସଂହତି ତଥା ଆନ୍ତର୍ଜାତିକ ଐକ୍ୟ ଆନୟନ କରିବା ପାଇଁ ପି.ଇ.ଏନ୍.ର ଭୂମିକା ଅତୀବ ମହାନ୍" ବୋଲି ଡ଼କ୍ଟର ରାଧାକୃଷ୍ଣନ୍ ମନ୍ତବ୍ୟ କରିଛନ୍ତି।

ଏହି ଓଡ଼ିଆ ସଂସ୍କରଣକୁ ସାଫଲ୍ୟ ମଣ୍ଡିତ କରିବା ପାଇଁ ଆଲବାର୍ଟ କାମସ୍ ଏବଂ ଫ୍ରାଁସୋୟା ମୋରିୟାକ୍‌ଙ୍କୁ ଭୂମିକା ଲେଖିବା ପାଇଁ ଅନୁରୋଧ କରାଯାଇଥିଲା । କିନ୍ତୁ ସେମାନେ ଅନିଚ୍ଛା ପ୍ରକାଶ କରିବାରୁ ସ୍ୱୀଡ଼ିଶ୍ ଏକାଡ଼େମିର ସ୍ଥାୟୀ ସମ୍ପାଦକ ଏବଂ ନୋବେଲ ପୁରସ୍କାର କମିଟିର ସାହିତ୍ୟ ବିଭାଗର ସଭାପତି ଡ଼କ୍ଟର ଆଣ୍ଡରସ୍ ଉଇଷ୍ଟରଲିଙ୍ଗ ମୋର ଅନୁରୋଧ ରକ୍ଷା କରି ତାଙ୍କର ଏବଂ ଶ୍ରୀଯୁକ୍ତ ମୋରିୟାକ୍‌ଙ୍କ ନୋବେଲ ପୁରସ୍କାର ସଭାରେ ପ୍ରଦତ୍ତ ଅଭିଭାଷଣ ସଂଗ୍ରହ କରି ପଠାଇ ଦେଇ ଥିବାରୁ ତାଙ୍କୁ ସକୃତଜ୍ଞ ଧନ୍ୟବାଦ ଜଣାଉଅଛି ।

ସାହିତ୍ୟରେ ୧୯୪୨ର ଷ୍ଟାଲିନ୍ ପୁରସ୍କାର ପ୍ରାପ୍ତ ମାନ୍ୟବର ଇଲିୟା ଏରେନ୍‌ବୁର୍ଗ ଏହି ଗ୍ରନ୍ଥ ତାଙ୍କ ନାମରେ ଉତ୍ସର୍ଗ କରିବା ପାଇଁ ସମ୍ମତି ଓ ଅନୁମତି ପ୍ରଦାନ କରିଥିବାରୁ ଏବଂ ବନ୍ଧୁ ଭାଷାବିଦ୍ ଅଧ୍ୟାପକ ପ୍ରଣବେଶ ଚନ୍ଦ୍ର ସିହ୍ନା ରାୟ ଫରାସୀ ଭାଷାର ଅଭିଭାଷଣ ଗୁଡ଼ିକ ଇଂରାଜୀ ଅନୁବାଦ କରି ଦେଇ ଥିବାରୁ ମୁଁ ସବିଶେଷ ଧନ୍ୟବାଦ ଜଣାଉ ଅଛି ।

"ସମ୍ମୋହିନୀ"ର ପ୍ରଚାର ଓ ପ୍ରସାର ଉପରେ ଆନାତୋଲ ଫ୍ରାନ୍‌ସଙ୍କ "ଥେଇସ୍"ଏବଂ ରୋଜାର ମାଟିନ୍-ଡୁଗାର୍ଡ଼ଙ୍କ "ପୋଷ୍ଟମ୍ୟାନ୍"ର ଓଡ଼ିଆ ଅନୁବାଦମାନ ପ୍ରକାଶ ନିର୍ଭର କରେ ।

ଜାନୁୟାରୀ ୨୬, ୧୯୫୯ ପ୍ରକାଶକ

# ସାହିତ୍ୟରେ ନୋବେଲ ପୁରସ୍କାର - ୧୯୫୨

ସୁଇଡ଼ିଶ୍ ଏକାଡ଼େମୀର ସ୍ଥାୟୀ ସମ୍ପାଦକ ଡ଼କ୍ଟର ଆଣ୍ଡରସ୍ ଉଇଷ୍ଟରଲିଙ୍ଗ୍ ପ୍ରଥମେ ନିମ୍ନଲିଖିତ ପ୍ରକାରେ ଭାଷଣ ଦେଲେ :

କୌଣସି ଏକ ନିର୍ଦ୍ଦିଷ୍ଟ ପରିବେଶ, ଫ୍ରାନ୍ସର ମାନଚିତ୍ର ଉପରେ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଇ ପାରିବା ଭଳି ଏକ ସ୍ଥାନର ବର୍ଣ୍ଣନା କରିବା ଲାଗି ଫ୍ରାଁସୋୟା ମୋରିୟାକ୍ ଯେଉଁ ନିଷ୍ଠା ଓ ଐକାନ୍ତିକତା ପ୍ରଦର୍ଶନ କରିଥାନ୍ତି, ତାଙ୍କର ରଚନାବଳୀ ଅଧ୍ୟୟନ କଲାବେଳେ ପ୍ରଥମେ ଆମ ଆଗରେ ତାହାହିଁ ସ୍ପଷ୍ଟ ହୋଇଉଠେ। ଦ୍ରାକ୍ଷାଖେତ ପରିପୂର୍ଣ୍ଣ ପ୍ରାଚୀନ ବୋର୍ଦୋ ଅଞ୍ଚଳ, - ଚାରିଆଡ଼େ ଦୁର୍ଗ ଓ ଦୁର୍ଗଶାଳାମାନ ବିକ୍ଷିପ୍ତ ହୋଇ ରହିଛି, - ଯେଉଁଆଡ଼କୁ ଆଖି ପକାଇବ, କେବଳ ପାଇନ ଜଙ୍ଗଲ ଓ ମେଷଚାରଣ ଭୂମି ବିସ୍ତୀର୍ଣ୍ଣ ହୋଇ ରହିଚି ନିଛାଟିଆ ଜାଗାମାନ ଝିଙ୍କାରିର ଝିଂ ଝିଂ ଶବ୍ଦରେ ମୁଖରିତ ହୋଇ ଉଠୁଛି, ଅତି ଦୂରରୁ ଆଟଲାଣ୍ଟିକ ମହାସାଗରର ଦୂର ବିକ୍ଷୋଭଧ୍ୱନି ବଡ଼ ଅସ୍ପଷ୍ଟ ଭାବରେ ଭାସିଭାସି ଆସୁଚି,ଏହିପରି ଏକ ଅଞ୍ଚଳରେ ଅବସ୍ଥିତ ଜିରୋନ୍ଦଠାରେ ହିଁ ମୋରିୟାକ୍‌ଙ୍କର ପ୍ରାୟ ପ୍ରତ୍ୟେକ ଉପନ୍ୟାସର ଘଟଣାବଳୀ ଘଟିଛି, ମୋରିୟାକ୍‌ଙ୍କର ଜନ୍ମଭୂମିର ପ୍ରାକୃତିକ ପରିବେଶ ଏହିପରି। ଏହି ଗୋଟିଏ ଅଞ୍ଚଳ ଓ ତାହାର ଅଧିବାସୀମାନଙ୍କର ଜୀବନକୁ ସେ ଅତି ନିଷ୍ଠାସହକାରେ ବର୍ଣ୍ଣନା କରିଚନ୍ତି। ବିଶେଷତଃ ଏହି ଅଞ୍ଚଳର ଜମି ମାଲିକମାନେ ତାଙ୍କର ବର୍ଣ୍ଣନାରେ ପ୍ରଧାନ ସ୍ଥାନ ପାଇଚନ୍ତି। ଦ୍ରାକ୍ଷାଲତାର ଶାଖାପ୍ରଶାଖା ଭିତରେ ସଞ୍ଚରଣ କରୁଥିବା ଜୀବନୀଶକ୍ତି ଓ ଶୁଷ୍କ ଆକାଶରୁ ବିଞ୍ଚି ହୋଇ ପଡୁଥିବା ନିର୍ମମ ଓ ସ୍ପଷ୍ଟ ସୂର୍ଯ୍ୟାଲୋକ ସହିତ ମୋରିୟାକ୍‌ଙ୍କର ବ୍ୟକ୍ତିଗତ ରଚନାଶୈଳୀର ଆତ୍ମୀୟତା ରହିଚି ବୋଲି କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ।

ଆଜି ପୃଥିବୀ ବ୍ୟାପୀ ସବୁଆଡ଼େ ଲୋକେ ମୋରିୟାକ୍‌ଙ୍କର ରଚନା ପାଠ କରୁଚନ୍ତି, ତଥାପି ତାଙ୍କୁ ଅତି ଅନସ୍ୱୀକାର୍ଯ୍ୟ ଭାବରେ ଜଣେ ସ୍ଥାନୀୟ ବା ପ୍ରଦେଶୀୟ ବ୍ୟକ୍ତି ବୋଲି କୁହାଯାଇ ପାରେ। କିନ୍ତୁ ତାଙ୍କର ପ୍ରଦେଶୀୟତା ସମଗ୍ର ବିଶ୍ୱର ମୌଳିକ ଓ ମାନବିକ ସମସ୍ୟାଗୁଡ଼ିକରୁ ଆପଣାକୁ କଦାପି ବିଚ୍ଛିନ୍ନ କରି ରଖିନାହିଁ। କାରଣ ଯିଏ ଗଭୀରତା ଭିତରକୁ ଅନୁସନ୍ଧାନ କରିବାକୁ ଇଚ୍ଛା କରେ, ସର୍ବପ୍ରଥମେ ଓ ସର୍ବଦା ତାକୁ ଆପଣାର ଖଣତି ଚଳାଇବା ଲାଗି ଖଣ୍ଡେ ଭୂଇଁ ବାଛିନେବାକୁ ହିଁ ପଡ଼େ। ଆମେ ସମସ୍ତେ ଜାଣୁ ଯେ ମୋରିୟାକ୍ ତାଙ୍କର ଯୌବନକାଳ ଆପଣା ଲୋକମାନଙ୍କର ମେଳରେ କଟାଇଥିଲେ। ଯେଉଁ ବାତାବରଣର ଆଶ୍ରୟ ତଳେ ସେ ବଢୁଥିଲେ, ସେଥିରେ ମାଆଙ୍କର ପ୍ରଭାବ ଅଧିକ ଶକ୍ତିଶାଳୀ ଥିଲା। ତାଙ୍କର କିଶୋରବସ୍ଥାର ସମସ୍ତ ଅନୁଭୂତି ଉପରେ ଏହି ପ୍ରଭାବ ସର୍ବଦା ଆପଣାର ଶକ୍ତି ବିସ୍ତାର କରି ରହିଥିଲା। ଏପରି ଏକ ବିଶ୍ୱାସ ପୋଷଣ କରିବାଲାଗି ଯଥେଷ୍ଟ କାରଣ ଅଛି

ଯେ ବୃହତ୍ତର ଜଗତର ସମ୍ପର୍କରେ ଆସି ତାଙ୍କୁ ଅନେକ ବ୍ୟଥାଦାୟକ ବିସ୍ମୟର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେତେବେଳଯାଏ ସେ କେବଳ ଧର୍ମୋପଯୋଚିତ ଉପଦେଶମାନ ଶୁଣି ଆସିଥିଲେ; ସଂସାରର ସମସ୍ତ ସତ୍ୟ ପାପର ଗ୍ରାସରେ ପଡ଼ିଯାଇଚି ବୋଲି ସେ ପୂରାପୂରି ବିଶ୍ୱାସ କରୁଥିଲେ, ପ୍ରାତ୍ୟହିତ ଜୀବନର ସମସ୍ତ ଅବିଚିତ୍ରତା ଓ ନୀରସତାକୁ ସେ ଏହି ଭୂମି ଉପରେ ହିଁ ଗ୍ରହଣ କରୁଥିଲେ । ସେ କାଥୋଲିକ୍ ପରିବାରରେ ଜନ୍ମଗ୍ରହଣ କରିଥିଲେ, କାଥୋଲିକ୍ ପରିବେଶରେ ପ୍ରତିପାଳିତ ହୋଇଥିଲେ, ଏହି ପରିବେଶକୁ ତାଙ୍କର ଆଧ୍ୟାତ୍ମିକ ମାତୃଭୂମି ବୋଲି କୁହାଯାଇପାରେ । କୌଣସି ଧର୍ମ ବିଶ୍ୱାସର ପକ୍ଷ ବା ବିପକ୍ଷରେ ଯିବାର କୌଣସି ଅବସର ସେ ପାଇ ନଥିଲେ, ଅବଶ୍ୟ ଜଣେ ଖ୍ରୀଷ୍ଟୀୟାନ୍ ହିସାବରେ ତାଙ୍କର ସ୍ଥାନକୁ ସେ ଅନେକଥର ପରୀକ୍ଷାକରି ଦେଖୁଥିଲେ ଏବଂ ଆପଣା ମତକୁ ସର୍ବସାଧାରଣରେ ପ୍ରକଟ କରୁଥିଲେ । ସାହିତ୍ୟ ରଚନାର ବାସ୍ତବତା ଜଣେ ସାହିତ୍ୟିକଠାରୁ ଯାହା ଦାବୀ କରେ ଏବଂ ଗୀର୍ଜା ଓ ଧର୍ମସଂସ୍କାର ଆଜ୍ଞା ଓ ଅନୁଶାସନମାନ ପ୍ରତ୍ୟେକ ମଣିଷଠାରୁ ଯାହା ଦାବୀ କରେ, ଏହି ଉଭୟ ମଧ୍ୟରେ କେତେଦୂର ଏକ ସମନ୍ୱୟ ସମ୍ଭବ ହୋଇପାରିବ, ବିଶେଷକରି ସେ ତାହାରି ଅନୁସନ୍ଧାନ କରୁଥିଲେ । କିନ୍ତୁ ଏହି ଅବଶ୍ୟମ୍ଭାବୀ ଓ ଅସମାହିତ ପରସ୍ପରବିରୋଧି ସତ୍ତ୍ୱେ ତଥାପି କୁହାଯାଇ ପାରିବ ଯେ ଜଣେ ଲେଖକ ହିସାବରେ ମୋରିୟାକ୍ ତାଙ୍କର ଉପନ୍ୟାସ ମଧ୍ୟଦେଇ ମନୁଷ୍ୟ-ଜୀବନର ଏକ ବିଶେଷ ଦିଗର ଚିତ୍ରଣ କରିବାର ପ୍ରୟାସ କରିଚନ୍ତି, ତାଙ୍କର ସମସ୍ତ ଚିତ୍ରଣରେ କାଥୋଲିକ୍ ବିଚାର ଓ ମନ, ସାଧାରଣ ଭୂମି ଓ ସାଧାରଣ ପ୍ରବେଶ - ପଥ ହୋଇ ରହିଚି । ତାଙ୍କର ଅଣ-କାଥୋଲିକ ପାଠକମାନଙ୍କୁ ଏହା କେତେକ ପରିମାଣରେ ଅସୁଖ ଲାଗିପାରେ, କିନ୍ତୁ ମୋରିଆକ୍‌ଙ୍କୁ ବୁଝିବାକୁ ହେଲେ ଆମକୁ ମନେ ରଖିବାକୁ ହେବ ଯେ, କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମରେ ଦୀକ୍ଷିତ ହୋଇ ଥିବା ଲେଖକମାନଙ୍କର ଗୋଷ୍ଠୀରେ ଆମେ ମୋରିୟାକ୍‌ଙ୍କୁ ଅନ୍ତର୍ଭୁକ୍ତ କରିପାରିବା ନାହିଁ; - ମୋରିୟାକଙ୍କୁ ଠିକ୍ କରି ବୁଝିବାପାଇଁ ଆମକୁ ଏକଥା ଅବଶ୍ୟ ଜାଣିରଖିବାକୁ ହେବ । ଭୁଲ ଓ ଭ୍ରମର ଗୁରୁଭାବରେ ପରିପୀଡ଼ିତ ହୋଇ ରହିଥିବା ମନୁଷ୍ୟାତ୍ମା ଗୁଡ଼ିକର ଆବିଷ୍କାର ଓ ସେମାନଙ୍କର ଗୋପନ ମନୋବୃତ୍ତ ଗୁଡ଼ିକର ବିଶ୍ଳେଷଣ କଲାବେଳେ ମଧ୍ୟ ମୋରିୟାକ୍ କାଥୋଲିକ୍ ଧର୍ମପ୍ରତି ତାଙ୍କର ଏହି ଅନୁରକ୍ତି ବିଷୟରେ ସର୍ବଦା ସଚେତ ରହି ଆସିଛନ୍ତି ।

ଆଧୁନିକ ସାହିତ୍ୟରେ ମୋରିୟାକ୍‌ଙ୍କର ସ୍ଥାନ ଏତେ ପୂର୍ବସିଦ୍ଧ ଯେ, କୌଣସିପ୍ରକାର ଧର୍ମାନୁରକ୍ତି ସେଥିରେ କୌଣସି ପ୍ରତିବନ୍ଧକ ସୃଷ୍ଟି କରିପାରିବ ନାହିଁ । ତାଙ୍କର ସମସାମୟିକ ଅନେକ ପ୍ରତିଭାଶାଳୀ ଲେଖକ ବର୍ତ୍ତମାନ ପ୍ରାୟ ବିସ୍ମୃତ ହୋଇ ଗଲେଣି, କିନ୍ତୁ ମୋରିୟାକ୍‌ଙ୍କର ଖ୍ୟାତି ଓ ପ୍ରଭା ଅଧିକରୁ ଅଧିକ ବୃଦ୍ଧି ପାଉଚି । ତାଙ୍କର ସୁଦୃଢ଼ ସାହିତ୍ୟିକ ଦୃଷ୍ଟିକୁ ସେ ତାଙ୍କର ସମସାମୟିକମାନଙ୍କୁ ସନ୍ତୁଷ୍ଟ କରିବା ଲାଗି କଦାପି ବ୍ୟବହାର କରିନାହାନ୍ତି, କାହାରି ସହିତ କୌଣସି ସାଲିସ୍ କରି ସେ ଆପଣାର ଖ୍ୟାତି କିଣିନାହାନ୍ତି । ତାଙ୍କର ଉଦ୍ଦେଶ୍ୟ

ସବୁବେଳେ ଉଚ୍ଚ ରହିଚି। ପାସ୍କାଲ, ଲା ବୃଇରେ, ରସୁଇଟ୍ ପ୍ରଭୃତି ନୀତିବାଦୀ ଯୁଗର ଫରାସୀ ଲେଖକମାନଙ୍କର ପରମ୍ପରାକୁ ସେ ତାଙ୍କର ବାସ୍ତବବାଦୀ ଗଳ୍ପଗୁଡ଼ିକ ଦ୍ୱାରା ଅକ୍ଷୁର୍ଣ୍ଣ ରଖି ପାରିଚନ୍ତି। ଅଧିକନ୍ତୁ ତାଙ୍କର ସାହିତ୍ୟରେ ଏକ ଆଧ୍ୟାତ୍ମିକ ପ୍ରେରଣାର ଏହା ଏକ ବଳିଷ୍ଠ ଉପାଦାନ ରୂପେ କାର୍ଯ୍ୟ କରିଚି। ଦୈନନ୍ଦିନ ଜୀବନର ଘଟଣା ଉପରେ ତାଙ୍କର ମନ୍ତବ୍ୟଗୁଡ଼ିକ ଫ୍ରାନସ ଓ ବୃହତ୍ତର ପୃଥିବୀର ସମ୍ମାନିତ ଦୃଷ୍ଟି ଆକର୍ଷଣ କରିପାରିଚି। ଇଉରୋପୀୟ ବିଚାରଧାରକୁ ଏହା ସର୍ବଦା ଖାଦ୍ୟ ଯୋଗାଇ ଆସିଚି।

କିନ୍ତୁ ବିଶେଷତଃ ତାଙ୍କର ପ୍ରଶଂସନୀୟ ଉପନ୍ୟାସଗୁଡ଼ିକ ପାଇଁ ହିଁ ସେ ନୋବେଲ ପୁରସ୍କାର ପାଇବାର ଅଧିକାର ଅର୍ଜନ କରିଚନ୍ତି। ଏକଥା କହିବା ବାହୁଲ୍ୟ ଯେ ସାହିତ୍ୟିକ କଳା ଓ ଶୈଳୀ ଦୃଷ୍ଟିରୁ ଶ୍ରୀଯୁକ୍ତ ମୋରିୟାକ୍‌ଙ୍କର ଉପନ୍ୟାସଗୁଡ଼ିକ ଏକ ସ୍ୱତନ୍ତ୍ର ଶ୍ରେଣୀଭୁକ୍ତ ହୋଇ ରହିବ। ତାଙ୍କର ଚିତ୍ରଣ ଅବିସ୍ମରଣୀୟ, ସଂଳାପ ଓ ପରିବେଶଗୁଡ଼ିକ ଅତି ରହସ୍ୟପୂର୍ଣ୍ଣ ଏବଂ ନିର୍ମମ ସତ୍ୟର ପ୍ରଦ୍ୟୋତକ। ଏକ ବିଷୟର ପୁନରାବୃତ୍ତ ହୁଏତ ବେଳେବେଳେ ନୀରସ ଲାଗିପାରେ, କିନ୍ତୁ ତାଙ୍କର ବିଶ୍ଳେଷଣର ଗଭୀରତା ଓ ଦୃଢ଼ ନିଷ୍ଠୟତା ଆମକୁ ତାଙ୍କର ରଚନାର ପଦେପଦେ ଅଭିଭୂତ କରି ଦେଇଥାଏ। ପରିମିତତା ଓ ପ୍ରକାଶଶକ୍ତି ଦୃଷ୍ଟିରୁ ମୋରିୟାକ୍ ଅତୁଳନୀୟ। ମାତ୍ର କେତୋଟି ବ୍ୟଞ୍ଜନାପୂର୍ଣ୍ଣ ବାକ୍ୟ ଦ୍ୱାରା ତାଙ୍କର ଗଦ୍ୟ ଅତି ଜଟିଳଭାବକୁ ପ୍ରକାଶ କରିଦେଇ ପାରେ।

ଯୌବନର ନିର୍ବୋଧ ଏବଂ ବିବେକଶୂନ୍ୟ ଅସ୍ଥିରତା ଓ ଉଦ୍‌ବେଗ ପାପର ଭୟାବହତାର ଉତ୍ପୀଡ଼ନ, ଦେହର ପ୍ରବଞ୍ଚନାକାରୀ ପ୍ରଲୋଭନ, ଭୌତିକ ସମ୍ପଦ ଜନିତ ମୋହ, ଆତ୍ମ-ସନ୍ତୋଷ ଏବଂ ସଂସ୍କାରବାଦୀ ଜୀବନର କୁପରିଣାମ-ମୋରିୟାକ୍‌ଙ୍କର ରଚନା ଗୁଡ଼ିକରେ ପ୍ରଧାନତଃ ଏହି ସବୁର ଆଲୋଚନା ହୋଇଛି। ମନୁଷ୍ୟକୁ ଘୃଣା କରୁଥିବା ଏକ ଲେଖକ ପରି ସେ ସବୁ କଥାକୁ ଆପଣାର ଖୁସୀ ଅନୁସାରେ ଅଧିକ କଳା କରି ବର୍ଣ୍ଣନା କରିଚନ୍ତି, ଅନେକେ ତାଙ୍କୁ ଏହିପରି ଏକ ଦୋଷ ଦେଇଥାନ୍ତି। ଏହି ଦୋଷାରୋପର ଉତ୍ତର ଦେବାକୁ ଯାଇ ସେ ବାରମ୍ବାର କହିଚନ୍ତି ଯେ ଯେଉଁ ଲେଖକ ସଂସାରର ସମସ୍ତ ବିଚାରକୁ କରୁଣା ଓ କ୍ଷମା ଉପରେ ପର୍ଯ୍ୟବେସିତ କରିବ, ଭଗବତ୍ ପ୍ରେମକୁ ଯିଏ ଜୀବନର ଚରମ ଆଶ୍ରୟ ଓ ନିର୍ଭର ବୋଲି ମାନିନେବ, ତାହାକୁ ସର୍ବଦା ଆଶା ଓ ବିଶ୍ୱାସର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ହିଁ ସାହିତ୍ୟ ରଚନା କରିବାକୁ ପଡ଼ିବ। ତାଙ୍କର ଏହି ଘୋଷଣାରେ ଆମେ କୌଣସି ସଂଶୟ ପ୍ରକାଶ କରିବା ନାହିଁ। କିନ୍ତୁ ତାଙ୍କର ରଚନାରୁ ଏହା ସ୍ପଷ୍ଟ ସୂଚିତ ହୁଏ ଯେ ନିଷ୍ପାପତା ଅପେକ୍ଷା ପାପ ହିଁ ମୋରିୟାକ୍‌ଙ୍କ ପାଇଁ ଅଧିକ ଆକର୍ଷଣର ପାତ୍ର ହୋଇ ରହିଚି। ....

ମୋରିୟାକ୍ ଥରେ ଏକଥା କହିଚନ୍ତି ଯେ ଜୀବନକୁ ଖାଲି ସୁନ୍ଦର କରି ଦେଖାଉଥିବା ଓ ତଦ୍ୱାରା ବାସ୍ତବ ସତ୍ୟରୁ ଦୂରକୁ ପଳାଇ ଯିବା ଲାଗି ଆମକୁ ସାହାଯ୍ୟ କରୁଥିବା ସାହିତ୍ୟ ପଢ଼ି ସନ୍ତୋଷ ଅନ୍ୱେଷଣ କରିବାର ସ୍ୱାଧୀନତା ପ୍ରତ୍ୟେକ ମଣିଷର ରହିଚି। ଅଧିକାଂଶ

ଲୋକ ହୁଏତ ଏପରି ସାହିତ୍ୟ ପଢ଼ିବାରେ ଆଗ୍ରହୀ ହୋଇପାରନ୍ତି, କିନ୍ତୁ ମଣିଷ ଠିକ୍ ଯେମିତି, ତାକୁ ସେମିତି କରି ଜାଣିବାକୁ ଉଦ୍ୟମ କରୁଥିବା ଲେଖକମାନଙ୍କ ପ୍ରତି ମଧ୍ୟ ଆମକୁ ନ୍ୟାୟ ବିଚାର କରିବାକୁ ହେବ। "ଆମେ ଜୀବନକୁ ଘୃଣା କରୁନାହିଁ, ଜୀବନର ସତ୍ୟକୁ ସହ୍ୟ କରି ନପାରି ଯେଉଁମାନେ ଏହାକୁ ନାନା ମିଥ୍ୟାରେ ରଙ୍ଗାଇ ଦିଅନ୍ତି, ସେହିମାନେ ହିଁ ଜୀବନକୁ ଘୃଣା କରନ୍ତି। ଅନବଗୁଣ୍ଠିତ ଜୀବନକୁ ଯେଉଁମାନେ ଭଲ ପାଆନ୍ତି, ସେହିମାନେ ହିଁ ଜୀବନକୁ ଭଲ ପାଆନ୍ତି। ଗୋଟି ଗୋଟି କରି ସେମାନେ ଜୀବନ ଉପରୁ ସମସ୍ତ ମୁଖା କାଢ଼ି ନିଅନ୍ତି ଓ ଶେଷରେ ଏହି ମୁଖାଭରଣହୀନ ନଗ୍ନ ରାକ୍ଷସ ପାଖରେ ହିଁ ଆପଣାର ହୃଦୟକୁ ନିବେଦନ କରି ଦିଅନ୍ତି।" ଆଁଦ୍ରେଜିଦଙ୍କ ସହିତ ଏକ ବିବାଦ ପ୍ରସଙ୍ଗରେ ମଧ୍ୟ ସେ ଏହି କଥା କହିଥିଲେ ଯେ ଚରିତ୍ର ଚିତ୍ରଣରେ ପରିପୂର୍ଣ୍ଣ ନିଷ୍ଠା ହିଁ ଲେଖକର ଲକ୍ଷ୍ୟ ହୋଇ ରହିବା ଉଚିତ। .....

ସବୁ ପ୍ରକାର ନୀତିକୁ ହସରେ ଉଡ଼ାଇ ଦେଇ ସହଜ ସଫଳତା ଅର୍ଜନ କରାଯାଇ ପାରେ। କିନ୍ତୁ ତଥାପି ଯେଉଁ ନୀତି ସମସ୍ତ ବିଦ୍ରୂପ ସତ୍ତ୍ୱେ ଆପଣାକୁ ବଳବତ୍ତର ରଖିପାରେ, ତାହା ହେଉଚି, "ପ୍ରତ୍ୟେକ ଲୋକ ଯେତିକି ଦୁଷ୍ଟ, ତାହାଠାରୁ ଯେ, ସେ ଆହୁରି କମ୍ ଦୁଷ୍ଟ ହୋଇ ପାରିବ, ଏକଥା ଆମେ ସମସ୍ତେ ଜାଣିଚୁ।" ଏହି ଛୋଟିଆ ବାକ୍ୟଟି ଠିକ୍ ଗୋଟିଏ ଚାବିପରି ଆମକୁ ମୋରିୟାକ୍‌ଙ୍କର ରଚନାରେ ଅନେକ ନିଗୂଢ଼ ସମ୍ପଦ ପାଇଁ ବାଟ ଫିଟାଇ ଦିଏ। ଆପଣାକୁ ଧର୍ମପରାୟଣ ମନେ କରିବାର କୌଣସି ପ୍ରକାର ରୁଗ୍‌ଣ ଆଗ୍ରହର ବଶବର୍ତ୍ତୀ ହୋଇ ମୋରିୟାକ୍ ମଣିଷ ଜୀବନର ବିଫଳତା, ଦୁର୍ବଳତା ଓ ପାପାସକ୍ତତାର ଗଭୀରକୁ ଭେଦ କରିବାକୁ ଉତ୍ସାହୀ ହୋଇ ନାହାନ୍ତି। ଅତି ନିର୍ମମ ଭାବରେ ସତ୍ୟର ବିଶ୍ଳେଷଣ କଲାବେଳେ ମଧ୍ୟ ସେ ଏହିପରି ଏକ ଚରମ ସତ୍ୟରେ ବିଶ୍ୱାସ ରଖିଚନ୍ତି ଯେ ସବୁ ପ୍ରକାରର ଜ୍ଞାନ, ବୁଦ୍ଧି ଓ ବିଚାରକୁ ଅତିକ୍ରମ କରି ଏକ ସହାନୁଭବତା ବଳବତ୍ତର ରହିଚି। ମୋରିୟାକ୍ କୌଣସି ଭଗବାନ୍ ବା ଚରମ-ସତ୍ୟର ଦାବୀ କରି ନାହାନ୍ତି। ଯେଉଁମାନେ ଆପଣାକୁ ଧାର୍ମିକ ବୋଲି ଜାହିର କରନ୍ତି, ସେମାନଙ୍କର କଥା ଉପରେ ସେ ଖୁବ୍ ଗୁରୁତ୍ୱ ଦିଅନ୍ତି ନାହିଁ। ଆପଣା ଜୀବନରେ ସେ ଯେତିକି ସତ୍ୟର ଅନୁଭବ କରିଚନ୍ତି, ତାହାରି ପ୍ରତି ନିଷ୍ଠାପର ରହି ସେ ଆପଣାର ସାହିତ୍ୟିକ ଚରିତ୍ର ଗୁଡ଼ିକର ଚିତ୍ରଣ କରିଛନ୍ତି। ଏହି ଚରିତ୍ର ଗୁଡ଼ିକ ଆପଣାର ନଗ୍ନ ସତ୍ୟରୂପ ଉପଲବ୍ଧି କରି ଅନୁତାପରେ ଅଭିଭୂତ ହୋଇ ପଡ଼ିଚନ୍ତି ଏବଂ ଅଧିକ ଭଲ ହୋଇ ନ ପାରିଲେ ମଧ୍ୟ କମ୍ ମନ୍ଦ ହେବାକୁ ଚେଷ୍ଟା କରିଚନ୍ତି। ତାଙ୍କର ଉପନ୍ୟାସ ଗୁଡ଼ିକୁ ଆମେ ଛୋଟ, ଅଣଓସାରିଆ ଅଥଚ ଗଭୀର କୂପଗୁଡ଼ିକ ସହିତ ତୁଳନା କରିପାରିବା, ଯେଉଁ ଗୁଡ଼ିକର ନିମ୍ନଦେଶ ଯେତେ ଅନ୍ଧାରରେ ବୁଡ଼ି ରହିଥିଲେ ମଧ୍ୟ ସେଠାରେ ଥିବା ରହସ୍ୟମୟ ଜଳରାଶିର ଉସ୍ସ ଆମ ଆଖିରେ ବେଶ୍ ପ୍ରତିଫଳିତ ହେଉଥାଏ।

ଏବଂ ଆପଣ, ଶ୍ରୀଯୁକ୍ତ ମୋରିୟାକ୍ ଆପଣଙ୍କର ରଚନା ମଧ୍ୟ ଦେଇ ମଣିଷର ହୃଦୟ

ଭିତରକୁ ପ୍ରବେଶ କରି ପାରିଚନ୍ତି। ମଣିଷର ହୃଦୟକୁ ଆପଣ ଠିକ୍ ଯେଉଁପରି ଦେଖିଛନ୍ତି, ଠିକ୍ ସେହିପରି ମନୁଷ୍ୟଚିତ, ଅତି ମନୁଷ୍ୟଚିତ ଓ କେବଳ ମନୁଷ୍ୟଚିତ ଭାବରେ ତାହାର ପରିବେଷଣ କରିଛନ୍ତି। ଯଥା - ଘନକୃଷ୍ଣ ରଙ୍ଗର ବ୍ୟବହାର କରିବାକୁ ଆପଣ ଆଦୌ ସଙ୍କୋଚବୋଧ କରି ନାହାନ୍ତି, ସତ୍ୟର ପ୍ରକାଶ କରିବାକୁ ଆପଣ ସବୁଠାରୁ ନିଦାରୁଣ ଓ ଦୁଃଖଦ ରଙ୍ଗର ମଧ୍ୟ ସାହାଯ୍ୟ ନେଇଛନ୍ତି। ତଥାପି ଆପଣ ଆପଣଙ୍କର ରଚିତ ଏକ ଚରିତ୍ରର କଥାରେ ଯାହା କହିଛନ୍ତି: "ନିମ୍ନତମ ଓ ଘୃଣ୍ୟତମର ମଧ୍ୟଦେଇ ହିଁ ଉଚ୍ଚତମରେ ପ୍ରବେଶ କରିବା ସମ୍ଭବ ହୋଇପାରିବ।" ମନୁଷ୍ୟ ଜୀବନରେ ଦୁଃଖଦ ଓ ନୈରାଶ୍ୟମୟ ଚିତ୍ରମାନ ଯଦି ଆପଣ ନିର୍ମାଣ କରିଥାନ୍ତି, ତଥାପି ଅନ୍ୟପକ୍ଷରେ ବିଶ୍ୱାସ, ଭଗବତ୍‌କରୁଣା ଓ କ୍ଷମାର ଆଲୋକ ମଧ୍ୟ ଆପଣ ଦେଖାଇ ଦେଇଛନ୍ତି - ସେହି ଆଲୋକ ନିଦାରୁଣତମ ଅନ୍ଧକାରର ଗର୍ଭଭେଦ କରି ରହଚି। ଆମେ ଆପଣଙ୍କ ଲାଗି ଆମର ହାର୍ଦ୍ଦିକ ଅଜସ୍ର ଶ୍ରଦ୍ଧା ଜ୍ଞାପନ କରୁଚୁ।

X X X X

ତା'ପରେ ଶ୍ରୀଯୁକ୍ତ ଫ୍ରାସୋୟା ମୋରିୟାକ୍ ନିମ୍ନପ୍ରକାରେ ଭାଷଣ ଦେଲେ: ମୋର ମନେ ହେଉଚି ଯେ, ଯେଉଁ ଲେଖକକୁ ଆପଣମାନେ ଏତେ ଗୌରବରେ ମଣ୍ଡିତ କରି ଅଛନ୍ତି, ସେହି ଲେଖକ ସହଜରେ ଆପଣାର ଓ ଆପଣାର ରଚନାଗୁଡ଼ିକର ବିଚାର କରିବାକୁ ସାଧାରଣତଃ ସମ୍ମତ ହୁଅନ୍ତା ନାହିଁ। କିନ୍ତୁ ଆଜି ଯେଉଁ ଲେଖକକୁ ସୁଇଡ଼ିଶ୍ ଏକାଡ଼େମୀ ପ୍ରଭୂତ ସମ୍ମାନରେ ଭୂଷିତ ଓ ଅଭିଭୂତ କରିଚି, ସେହି ସରଳ ଫରାସୀ ଲେଖକ ଓ ତାହାର ରଚନାଗୁଡ଼ିକ ଉପରେ ବିଚାର ନ କରି ରହି ପାରିବା ମୋ' ପକ୍ଷରେ ଆଦୌ ସମ୍ଭବ ହୋଇ ପାରିବ ନାହିଁ। ତଥାପି ମୁଁ କହିବି ଯେ ମୋର ବିସ୍ମୃତପ୍ରାୟ ଶୈଶବକାଳରୁ ଆଜି ପର୍ଯ୍ୟନ୍ତ ମୁଁ ଯେଉଁ ପଥ ଅତିକ୍ରମ କରି ଆସିଚି, ଆଜି ଆପଣମାନଙ୍କର ସମ୍ମୁଖରେ ସେହି ପଥର ପର୍ଯ୍ୟାଲୋଚନା କଲାବେଳେ ମୁଁ କୌଣସି ପ୍ରକାରର ଦାମ୍ଭିକତା ଅନୁଭବ କରୁନାହିଁ।

ମୋର ରଚନା ଭିତରେ ବିଗତ ଅତୀତର ଯେଉଁ କ୍ଷୁଦ୍ର ପୃଥିବୀଟିକୁ ଚିତ୍ରଣ କରିବାକୁ ମୁଁ ଚେଷ୍ଟା କରିଚି, ଫ୍ରାନସ୍‌ର ଯେଉଁ ଛୋଟ ଅଞ୍ଚଳଟି ବିଷୟରେ ଫରାସୀ ଲୋକମାନଙ୍କର ମଧ୍ୟ ଯଥେଷ୍ଟ ଜ୍ଞାନ ନାହିଁ, ଯେଉଁ ଅଞ୍ଚଳରେ ମୁଁ ମୋର ଛାତ୍ରାବସ୍ଥାର ଛୁଟି ଦିନଗୁଡ଼ିକ ଅତିବାହିତ କରିଚି, ସେହି ଅପ୍ରଖ୍ୟାତ ଅଞ୍ଚଳ ଯେ କୌଣସି ଦିନ ବିଦେଶୀ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିବ, ଏକଥା ମୁଁ ସେତେବେଳେ ଆଦୌ କଳ୍ପନା କରି ନଥିଲି। ସ୍ୱାଭବତଃ ଆମେ ନିଜ ନିଜକୁ ବଡ଼ ସ୍ୱତନ୍ତ୍ର ବୋଲି ମନେ କରିଥାଉ, ଅନ୍ୟମାନଙ୍କଠାରୁ ଆମର ବିଭିନ୍ନତା ବିଷୟରେ ଆମେ ଭାରି ସଚେତ ରହିଥାଉ। ଆମେ ଭୁଲିଯାଉ ଯେ ଯେଉଁ ଗ୍ରନ୍ଥମାନ ପାଠ କରି ଆମେ ମୁଗ୍ଧ ହୋଇ ଯାଉ - ଜର୍ଜ ଇଲିଅଟ୍ ବା ଡ଼ିକେନ୍‌ସ, ଟଲଷ୍ଟୟ ବା ଡ଼ଷ୍ଟୋଭସ୍କି ବା

ସେଲ୍‌ମା ଲାଗେରଲଫ୍‌ଙ୍କର ଗ୍ରନ୍ଥମାନ, ଆମେ ଭୁଲିଯାଉ ଯେ ସେହି ସବୁ ଗ୍ରନ୍ଥରେ ଭିନ୍ନ ଭିନ୍ନ ଦେଶ ଓ ଭିନ୍ନ ଜାତି ଓ ଭିନ୍ନ ଧର୍ମର ମଣିଷମାନଙ୍କର ବର୍ଣ୍ଣନା ରହିଚି। ତଥାପି ଆମେ ସେହି ସବୁ ଗ୍ରନ୍ଥ ପଢ଼ି ମୁଗ୍ଧ ହୋଇ ଯାଇଚୁ, ସେହି ସବୁ ଗ୍ରନ୍ଥକୁ ଆମେ ଭଲ ପାଇଚୁ। ତାହାର କାରଣ ହେଉଚି ଯେ ସେହିସବୁ ଗ୍ରନ୍ଥ ଭିତରେ ଆମେ ଆମ ନିଜର ମଧ୍ୟ ପରିଚୟ ପାଇଚୁ। ଆମ ଦେଶର କୃଷକ ସମାଜରେ ସମସ୍ତ ମନୁଷ୍ୟ ସମାଜର ଆତ୍ମା ଅନ୍ତର୍ନିହିତ ହୋଇ ରହିଚି, ଆମ ପିଲାଦିନେ ଆମର ପରିଚିତ ଦିଗ୍‌ବଳୟ ଉପରେ ଯେଉଁ ପରିଚିତ ପ୍ରାକୃତିକ ଦୃଶ୍ୟ ଆମକୁ ମୁଗ୍ଧ କରି ଦେଇଥିଲା, ତାହା ଭିତରେ ସମସ୍ତ ପୃଥିବୀର ପାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ଗୁପ୍ତ ହୋଇ ରହିଚି। ଏହି ବିଶ୍ୱଜନୀନତାର ଆବିଷ୍କାର ଓ ସ୍ପଷ୍ଟୀକରଣ କରିବା ଦ୍ୱାରା ହିଁ ଉପନ୍ୟାସକାର ତା'ର ଦକ୍ଷତା ଓ ପ୍ରତିଭାର ପରିଚୟ ଦେଇଥାଏ। ଯେଉଁ ସଂକୀର୍ଣ୍ଣ ଓ ସୀମାବଦ୍ଧ ପୃଥିବୀରେ ଆମେ ଜନ୍ମ ହୋଇଚୁ ଓ ଯେଉଁଠି ଆମେ ଭଲ ପାଇ ଓ ଦୁଃଖ ଭୋଗି ଶିଖିଚୁ, ସେହି ପୃଥିବୀର ବିଶ୍ୱଜନୀନତାକୁ ପ୍ରକଟ କରି ଉପନ୍ୟାସକାରର ଉପନ୍ୟାସ ସାର୍ଥକ ହୁଏ।

ଫ୍ରାନସ୍‌ର ଓ ଫ୍ରାନସ ବାହାରେ ପାଠକମାନଙ୍କୁ ମୋର ବର୍ଣ୍ଣନାମାନ ଏପରି ତମସାଚ୍ଛନ୍ନ ଓ ନିଦାରୁଣବୋଧ ହୋଇଚି, ଏକଥା ଶୁଣି ମୁଁ ସବୁବେଳେ ବଡ଼ ବିସ୍ମିତ ହୋଇ ପଡ଼େ। ମରଣଶୀଳ ପ୍ରାଣୀ ମରଣକୁ ପ୍ରାଣେ ପ୍ରାଣେ ଭୟ କରେ, କାରଣ ସେ ମରଣଶୀଳ। ଯେଉଁମାନେ ନିଜେ କେବେହେଲେ ଭଲ ପାଇ ନାହାନ୍ତି ବା କାହାରିଠାରୁ ଭଲ ପାଇବା ପାଇ ନାହାନ୍ତି, ଯେଉଁମାନେ ବଞ୍ଚିତ ଓ ପ୍ରବଞ୍ଚିତ ହୋଇ ରହିଚନ୍ତି, ସେମାନେ ମଧ୍ୟ ପ୍ରେମର ସରୋବରରେ ପ୍ରେମତୃଷାର୍ତ୍ତ ଏକାକୀ ମଣିଷର କଥା ଶୁଣି ବିସ୍ମିତ ହୁଅନ୍ତି ଏବଂ ଅପମାନିତ ମନେ କରନ୍ତି। "ଆମକୁ ଭଲ ଲାଗିବା କଥା କିଛି କୁହ, ଭଲଲାଗିବା ଭଳି କୌଣସି ଭୁଲ କଥା କହି ଆମକୁ ଭୁଲାଇ ରଖ," - ସନ୍ଥ ଏସାୟାଙ୍କୁ ଇହୁଦୀମାନେ ଏହି ଅନୁରୋଧ କରିଥିଲେ।

ହଁ ଆମେ ପାଠକକୁ ଏହିପରି ଭଲ ଲାଗିବା ଭଳି ଭୁଲ କଥା କହି ଭୁଲାଇ ରଖୁ, ପାଠକ ଆମଠାରୁ ଠିକ୍ ଏହି ଦାବୀ କରିଥାଏ। କିନ୍ତୁ ଯେଉଁ ସାହିତ୍ୟକୃତି ମନୁଷ୍ୟ ଜୀବନର ପରିପୂର୍ଣ୍ଣ ନାଟକର ଅବତାରଣା କରାଇବାର ପ୍ରୟାସ କରିଚି, ମରି ସଢ଼ିଯିବା ପର୍ଯ୍ୟନ୍ତ ଆପଣାର ଭାଗ୍ୟକୁ ସାନ୍ତ୍ୱନା ଦେବା ଲାଗି ଯେଉଁ ଗ୍ରନ୍ଥ ଆମଲାଗି କୌଣସି ଅବକାଶ ଛାଡ଼ି ଯାଇ ନାହିଁ, ସେହିପରି କୃତି ଓ ସେହିପରି ଗ୍ରନ୍ଥ ମଣିଷର ସ୍ମୃତିରେ ଜୀବନ୍ତ ହୋଇ ରହିଛି।

କୌଣସି ପ୍ରକାରର କାମନା ରହିତ ପ୍ରତ୍ୟେକ ଉପନ୍ୟାସକାର ଏହିପରି ଏକ ପୃଥିବୀର ଚିତ୍ରଣ କରେ। ଷ୍ଟିଣ୍ଡବର୍ଗ ଏହିପରି ଏକ ନିଦାରୁଣ ଅଥଚ ସତ୍ୟମୟ ପୃଥିବୀର ପରିଚୟ ଆମକୁ ଦେଇଛନ୍ତି। ମୋର ପୃଥିବୀ ମଧ୍ୟ ଠିକ୍ ଏହିପରି ଏକ ପୃଥିବୀ ହୋଇ ଥାଆନ୍ତା,

ଯଦି ଗୋଟାଏ ବଳବତୀ ଆଶା ବା କାମନା ମୋତେ ତା'ର କବଳରେ ପକାଇ ଦେଇ ନ ଥାନ୍ତା। ଆଲୋକର ଏକ ରେଖା ଓ ଅଗ୍ନିର ଏକ ଉଦ୍‌ଭାସ ପରି ଏହି ଆଶା ମୋର ବର୍ଣ୍ଣିତ ସମସ୍ତେ ଅନ୍ଧାର ଓ ତମିସ୍ରାକୁ ଭେଦ କରିବାକୁ ବସିଛି। କଳା ରଙ୍ଗ ଦେଇ ମୁଁ ମୋର ସମସ୍ତ ଚିତ୍ରର ଚିତ୍ରଣ କରିଚି ଏବଂ ଏହି କଳା ପାଖଟାରୁ ହିଁ ସମସ୍ତେ ମୋର ବିଚାର କରିଚନ୍ତି। କିନ୍ତୁ ଏହି କଳା ଓ ଅନ୍ଧାର ଭିତରେ ଯେଉଁ ଆଲୋକ ରେଖା ଭେଦ କରି କରି ଯାଇଚି, ଅତିଗୋପନ ଏବଂ ଅସ୍ପଷ୍ଟ ଭାବରେ ଯେଉଁ ଅଗ୍ନି ଏହି କଳାର ଗର୍ଭ ଭିତରେ ଜଳୁଛି, ତାହା କାହାରି ଆଖିରେ ପଡ଼ି ନାହିଁ। ଫ୍ରାନସ୍ ଦେଶରେ ଯେତେଥର କୌଣସି ରମଣୀ ତାହାର ସ୍ୱାମୀକୁ ବିଷ ଦେଇ ମାରିଦେବାକୁ ପ୍ରବୃତ୍ତ ହୁଏ, ସେତେଥର ଲୋକେ ମୋତେ କହନ୍ତି, "ନିଅ, ତୁମଲାଗି ଗୋଟାଏ ବଢ଼ିଆ ସରଞ୍ଜାମ ମିଳିଗଲା।"...ଲୋକେ ଭାବନ୍ତି ମୋ' ପାଖରେ ଯେପରି ତ୍ରାସ ଓ ଭୟାବହତାର ଗୋଟାଏ ସଂଗ୍ରହାଳୟ ମହଜୁଦ୍ ରହିଚି। ତଥାପି ଏ ଯୁଗର ରୋମାଣ୍ଟିକ୍ ଗ୍ରନ୍ଥମାନଙ୍କରେ ଭର୍ତ୍ତି ହୋଇଥିବା ଚରିତ୍ରମାନଙ୍କ ଠାରୁ ମୋ'ଦ୍ୱାରା ବର୍ଣ୍ଣିତ ଚରିତ୍ରମାନଙ୍କର ଏକ ମୂଳଗତ ପାର୍ଥକ୍ୟ ରହିଚି। ସେମାନଙ୍କ ଭିତରେ ଏକ ଆତ୍ମା ରହିଚି। ନିତ୍‌ସେ ତାଙ୍କର ଏକ ଗ୍ରନ୍ଥରେ ଭଗବାନ ମରି ଗଲେଣି ବୋଲି କହିଥିଲେ। ମୋର ବର୍ଣ୍ଣିତ ପ୍ରତ୍ୟେକ ଚରିତ୍ର ଅବଶ୍ୟ ଭଗବାନ ବଞ୍ଚିଛନ୍ତି ବୋଲି ବିଶ୍ୱାସ କରନ୍ତି ନାହିଁ, କିନ୍ତୁ ସେମାନେ ଏକଥା ବେଶ୍ ଭଲ କରି ଜାଣିଚନ୍ତି ଯେ ସେମାନଙ୍କର ଅସ୍ତିତ୍ୱର ଗୋଟାଏ ଅଂଶ ପାପକୁ ଜାଣିଚି ଓ ପାପ କରିବାକୁ ଚାହୁଁ ନାହିଁ। ସେମାନେ ପାପକୁ ଜାଣିଚନ୍ତି। ସେମାନଙ୍କର ପ୍ରତ୍ୟେକଙ୍କର ଭିତରେ ଏହିପରି ଏକ ପ୍ରଚ୍ଛନ୍ନ ଅନୁଭୂତି ରହିଚି ଯେ ସେମାନଙ୍କର କର୍ମ ସେମାନଙ୍କୁ ବାନ୍ଧି ରଖିଚି ଏବଂ ଅନ୍ୟାନ୍ୟ ଜୀବନ ଉପରେ ସେମାନଙ୍କର କ୍ରିୟାର ପ୍ରକ୍ରିୟା ମଧ୍ୟ ଅନୁଭୂତ ହେଉଚି।

ମୋର ନାୟକମାନେ ଜାଣନ୍ତି ଯେ, ଯେତେ ଦୁର୍ଗତ ଭାବରେ ହେଲେ ସୁଦ୍ଧା ବଞ୍ଚିବାର ଅର୍ଥ ହେଉଛି ଏକ ଅବିରାମଗତିର ଅନୁଭବ କରିବା, ଆପଣାକୁ ଏକ ଅନିର୍ଦ୍ଦିଷ୍ଟ ଓ ଅସମାପ୍ତ ପଥରେ ଉତ୍ତୋଳିତ କରି ନେବା। ଜୀବନର ଏକ ଗତି ଓ ଏକ ଦିଗ ରହିଚି ବୋଲି ନିଃସନ୍ଦେହ ଭାବରେ ବିଶ୍ୱାସ କରୁଥିବା ମଣିଷ ଜାତି କଦାପି ନିରାଶ ଓ ଆଶାଶୂନ୍ୟ ହୋଇ ନପାରେ। ଆଧୁନିକ ମଣିଷର ନୈରାଶ୍ୟ, ପୃଥିବୀ ଓ ମଣିଷ ଜୀବନର ନିଷ୍ଫଳତା ଓ ଉଦ୍ଦେଶ୍ୟହୀନତାରୁ ଜାତ ହୋଇଚି। ନାନାପ୍ରକାର କଳ୍ପିତ ବିନ୍ୟାସ ଓ ଅନୁନ୍ୟାସ ପାଖରେ ଆତ୍ମସମର୍ପଣ କରିବା ଦ୍ୱାରା ତା'ର ନୈରାଶ୍ୟ ବଢ଼ି ଚାଲିଚି। ନିତ୍‌ସେ ଯେତେବେଳେ ଭଗବାନ ମରିଗଲେଣି ବୋଲି ଘୋଷଣା କଲେ, ସେତେବେଳେ ଆମେ ଅତୀତରେ ବଞ୍ଚିଥିବା ଓ ଭବିଷ୍ୟତରେ ବଞ୍ଚିବାକୁ ଯାଉଥିବା ଜୀବନର ସତ୍ୟକୁ ହିଁ ସେ ଘୋଷଣା କରିଥିଲେ। ଆପଣାର ଭାଗ୍ୟ ଦ୍ୱାରା ହତାଶ ଓ ପରାଭୂତ ହୋଇ ମଣିଷ ଆଜି ବୋଝବୁହା ପଶୁଙ୍କଠାରୁ ଅଧିକ ନିର୍ମମ ଭାବରେ ବ୍ୟବହୃତ ହେଉଛି। ନାତ୍‌ସିମାନେ ଓ ନାତ୍‌ସିମାନଙ୍କର ଉପାୟ

ଅବଲମ୍ବନ କରୁଥିବା ଅନ୍ୟମାନେ ମଣିଷକୁ ଏହିପରି ନିର୍ମମ ଭାବରେ ବ୍ୟବହାର କରୁଚନ୍ତି । ଘୋଡ଼ା କହ, ଖଚର କହ ବା ବଳଦ କହ, ଏମାନଙ୍କର କେବଳ ପଣ୍ୟ ହିସାବରେ କୌଣସି ମୂଲ୍ୟ ରହିଚି । କିନ୍ତୁ ମଣିଷ ପଶୁକୁ କୌଣସି ପଇସା ଦେଇ କିଣିବାକୁ ପଡୁନାହିଁ । କେବଳ ଏକ ସଭ୍ୟତାର ସୁନିୟନ୍ତ୍ରିତ ପଦ୍ଧତି, ତାକୁ ମଣ କରି ଦିଆଯାଉଛି, ଯାହା ଫଳରେ କି ମରିବା ପର୍ଯ୍ୟନ୍ତ କେବଳ ଆତ୍ମସମର୍ପଣ କରିବା ବ୍ୟତୀତ ମଣିଷ ପାଇଁ କୌଣସି ଗତ୍ୟନ୍ତର ରହୁ ନାହିଁ । କିନ୍ତୁ ମୋ'ଭଳି ଯେଉଁ ଲେଖକ ଆପଣା ରଚନାର ମର୍ମେ ମର୍ମେ ମଣିଷକୁ ଜଗତ୍‌ପିତା କଲ୍ୟାଣ ସ୍ୱରୂପ ଭାଗବାନଙ୍କର ଅନୁକୃତି ବୋଲି ଘୋଷଣା କରୁଚି, ମଣିଷ ଭିତରେ ଆତ୍ମାର ଉଦ୍‌ଭାସକୁ ଯିଏ ସ୍ୱୀକାର କରୁଚି, ତା'ର ରଚନା ବାହାରକୁ ଯେତେ ଆଶାଶୂନ୍ୟ ଓ ଅନ୍ଧକାରମୟ ଦେଖାଗଲେ ମଧ୍ୟ, ସେହି ଲେଖକ ନୈରାଶ୍ୟର ସ୍ତୁତିଗାନ କରୁଣ ବୋଲି କଦାପି କୁହାଯାଇ ପାରିବ ନାହିଁ ।

ତା'ର ବର୍ଣ୍ଣନା ସ୍ଥାୟୀ, ତେଣୁ ତାହା ଅନ୍ଧକାରମୟ ବୋଲି ପ୍ରତୀତ ହୁଏ । ସେ ଜାଣିଚି ଯେ ମନୁଷ୍ୟ ପ୍ରକୃତି ଆଜି ଅପମାନିତ, ଆକ୍ରାନ୍ତ ଓ ଦୂଷିତ ହୋଇ ରହିଚି । କୌଣସି ଖ୍ରୀଷ୍ଟୀୟାନ ଉପନ୍ୟାସକାର ଯେ ମଣିଷର ଇତିହାସକୁ କେବଳ ପ୍ରଶଂସା କରି ପାରିବ ନାହିଁ, ଏହା ଅତ୍ୟନ୍ତ ସ୍ୱାଭାବିକ କଥା । କାରଣ ପାପର ରହସ୍ୟ ଭେଦ ନକରି ତାକୁ କେବଳ ଏଡ଼ିଦେଇ ତାହାଠାରୁ ଲୁଚି ପଳାଇଯିବାକୁ ସେ ଏକ ନିଷେଧ ବୋଲି ମନେ କରେ ।

ପାପକୁ ଏତେ ପ୍ରାଧାନ୍ୟ ଦେବାର ଅର୍ଥ ହେଉଚି ଶୁଦ୍ଧତାକୁ ପ୍ରାଧାନ୍ୟ ଦେବା, ଶିଶୁ ଓ ଶିଶୁ -ସୁଲଭତାକୁ ପ୍ରାଧାନ୍ୟ ଦେବା । ମୋର କାହାଣୀଗୁଡ଼ିକରେ ଏହି ଶିଶୁ ଏକ ପ୍ରଧାନ ସ୍ଥାନ ଅଧିକାର କରିଚି, ମୋତେ ଭାରି ଦୁଃଖ ଲାଗୁଚି ଯେ, ମୋର ସମାଲୋଚକମାନେ ଅସ୍ଥିର ହୋଇ ଏହାକୁ ହୃଦୟଙ୍ଗମ କରି ପାରି ନାହାନ୍ତି । ଶିଶୁର ସ୍ୱପ୍ନ ହେଉଚି ମୋର ସମସ୍ତ ରଚନାର ସବୁଠାରୁ ପ୍ରଧାନ କଥା । ଲୋକେ ମୋର ଉପନ୍ୟାସରେ କେବଳ ବିଷଧର ସର୍ପଗୁଡ଼ାକୁ ଦେଖିଚନ୍ତି, କିନ୍ତୁ ଏକାଧିକ ସ୍ଥାନରେ ସେଥିରେ ଯେଉଁ କପୋତମାନେ ବସାବାନ୍ଧି ରହିଛନ୍ତି, ସେଗୁଡ଼ିକ ଉପରେ କାହାରି ଆଖି ପଡ଼ିନାହିଁ । ଶୈଶବ କାଳକୁ ମୁଁ ଆମ ଜୀବନର ହୃତ ସ୍ୱର୍ଗ ବୋଲି ବିଶ୍ୱାସ କରେ, ଏହି ଶୈଶବ ହିଁ ଆମକୁ ସବୁ ଭ୍ରମ ଓ ଦୁଃଖର ରହସ୍ୟ ଏବଂ ଗୂଢ଼ସତ୍ୟ ଭିତରକୁ ପ୍ରବେଶ କରାଇ ଦିଏ ।

ଏହା ଦୁଷ୍ଟତା ଓ ପାପର ରହସ୍ୟ - ଏହାର ଉଦ୍‌ଘାଟନ କରିବା ଲାଗି ଆଉ ଦ୍ୱିତୀୟ ପନ୍ଥା ନାହିଁ । ହୁଏତ ଆମେ ପାପକୁ ଏକାବେଳକେ ଅସ୍ୱୀକାର କରିଦେଇ ପାରିବା ବା ଆମ ଭିତରେ ଓ ଆମ ବାହାରେ ଅର୍ଥାତ୍ ଆମର ଇତିହାସରେ ପାପ ଠିକ୍ ଯେଉଁ ରୂପରେ ପ୍ରକାଶିତ ହୁଏ, ଠିକ୍ ସେହି ରୂପରେ ଆମେ ପାପକୁ ସ୍ୱୀକାର କରିନେବା । ଆମ ଭିତରେ ଆମର କାମନା ରୂପରେ ଏହି ପାପ ପ୍ରକାଶିତ ହୁଏ, ପୁଣି ଆମର ବାହାରେ ଆମର ଇତିହାସ ଭିତର

ଦେଇ ଏହା ପ୍ରକଟିତ ହୁଏ। କେତେ କେତେ ସାମ୍ରାଜ୍ୟର କ୍ଷମତା ଲୋଲୁପତା ମଣିଷର ଲହୁ ଦେଇ ଏହି ଇତିହାସ ଲେଖି ଲେଖି ଚାଲିଚି ଓ ପାପକୁ ପ୍ରକାଶିତ କରି ଚାଲିଚି। ବ୍ୟକ୍ତିଗତ ଓ ସାମୂହିକ ଅପରାଧ ମଧ୍ୟରେ ଯେ ଏକ ନିକଟ ସମ୍ପର୍କ ରହିଚି, ଏହା ମୁଁ ସର୍ବଦା ବିଶ୍ୱାସ କରିଆସିଚି। ଏବଂ ଜଣେ ସାମ୍ବାଦିକ ହିସାବରେ ରାଜନୀତିକ ଇତିହାସର ଦୈନନ୍ଦିନ ଘୃଣା ଓ ଦ୍ୱେଷର ବର୍ଣ୍ଣନା କରି ମନୁଷ୍ୟର ହୃଦୟ ଭିତରେ, ଗୋପନରେ ବିକଶିତ ହୋଇ ଚାଲିଥିବା ଅଦୃଶ୍ୟ ଇତିହାସର ଦୃଶ୍ୟମାନ ପରିଣତିଗୁଡ଼ିକୁ ମୁଁ ଲୋକ ସମକ୍ଷକୁ ଆଣିବାକୁ ଚେଷ୍ଟା କରିଚି। ପାପକୁ ପାପ ବୋଲି ଜାଣିବା ପାଇଁ ଆମେ କେତେ ଯାତନା ଭୋଗ କରିଚୁ। ଆଜି ମଧ୍ୟ ଆମ ସଂସାରର ଆକାଶରେ ଅନେକ ଶ୍ମଶାନର ଧୂଆଁ ଆବର୍ତ୍ତିତ ହୋଇ ରହିଚି। ତଥାପି ଆମର ଆଖି ଆଗରେ ଲକ୍ଷ ଲକ୍ଷ ନିରୀହ ମଣିଷ, ଏପରିକି ଶିଶୁ ମଧ୍ୟ ସେହି ଶ୍ମଶାନର କବଳରେ ପଡ଼ିଚନ୍ତି। ଆଜି ମଧ୍ୟ ସେହି ଇତିହାସ ଉଦାସୀନ ଗତିରେ ଚାଲିଚି। ଯେଉଁସବୁ ପ୍ରାଚୀନ ଦେଶରେ ଲୋକେ ଯୀଶୁଙ୍କୁ ଭଲପାଉଥିଲେ ଗୌରବ ଦେଉଥିଲେ ଏବଂ ଶତାବ୍ଦୀ ଶତାବ୍ଦୀ ଧରି ପୂଜା କରୁଥିଲେ, ସେହିସବୁ ଦେଶରେ ଏହି ଅତ୍ୟାଚାର ଓ ଉତ୍ପୀଡ଼ନର ଚେର ସବୁଠାରୁ ଅଧିକ ଗଭୀରକୁ ଭେଦି ରହିଚି। .....

ଭଗବାନଙ୍କ ଉପରେ ବିଶ୍ୱାସ କରୁଥିବା ଜଣେ ମଣିଷ ହିସାବରେ ମୁଁ ଭଗବଦ୍ ବିଶ୍ୱାସର ପଥରେ ପ୍ରତିବନ୍ଧକ ହୋଇ ଠିଆ ହୋଇଥିବା ପାପକୁ ନ ଦେଖିବା ପରି ଛଳନା କରୁଚି ବୋଲି ଆପଣମାନେ ଯେପରି ବିଶ୍ୱାସ ନ କରନ୍ତି। ପ୍ରତ୍ୟେକ ଖ୍ରୀଷ୍ଟୀୟାନ ପାଖରେ ଏହି ପାପ ହିଁ ଆଜି ମଧ୍ୟ ସବୁଠାରୁ ଅଧିକ ଯନ୍ତ୍ରଣାଦାୟକ ରହସ୍ୟ ହୋଇ ରହିଚି। ଇତିହାସର ଯାବତୀୟ ଅପରାଧ ଭିତରେ ରହି ମଧ୍ୟ ଯିଏ ଆଜି ଆପଣାର ବିଶ୍ୱାସରେ ଅଟଳ ରହିଚି, ତାହାକୁ ଏକ ଚିରନ୍ତନ ଲୋକାପବାଦର ଆଘାତ ସହିବାକୁହିଁ ପଡ଼ିବ। ବୁଦ୍ଧିବାଦୀ ଧର୍ମତତ୍ୱବିତ୍‌ମାନେ ପାପ ବିଷୟରେ ଯେଉଁସବୁ କୈଫିୟତ ଦେଇଚନ୍ତି, ତଦ୍ୱାରା ମୋର ଆଦୌ ହୃଦ୍‌ବୋଧ ହୋଇ ନାହିଁ। ସେମାନେ ବୁଦ୍ଧି ଦେଇ ସବୁ ପ୍ରମାଣ କରିବାକୁ ଚାହାନ୍ତି ବୋଲି ବୋଧହୁଏ ସେମାନେ ମୋତେ ସନ୍ତୁଷ୍ଟ କରି ପାରନ୍ତି ନାହିଁ। କାରଣ ଯେଉଁ ରହସ୍ୟକୁ ଆମେ ସମସ୍ତେ ବୁଝିବାକୁ ଚାହୁଁଚୁ, ତାହା କଦାପି ବୁଦ୍ଧି ରାଜ୍ୟର ଅନ୍ତର୍ଗତ ନୁହେଁ, ଏକା କରୁଣା ଓ କଲ୍ୟାଣରାଜ୍ୟର ଅନ୍ତର୍ଗତ। "ଭଗବାନ ହେଉଚନ୍ତି ପ୍ରେମ" - ଜନ୍‌ଙ୍କର ଏହି ଉକ୍ତିରେ ଏହା ସମ୍ପୂର୍ଣ୍ଣ ପରିସ୍ଫୁଟ ହୋଇ ପାରିଚି। ଜୀବନ୍ତ ପ୍ରେମ ପାଇଁ କିଛି ଅସମ୍ଭବ ନୁହେଁ, କିଛି ଅପ୍ରାପ୍ୟ ନୁହେଁ।

କାଳେ କାଳେ ଅନେକ ସମାଲୋଚନା ବିବାଦ, ଧର୍ମଦ୍ରୋହ, ଅତ୍ୟାଚାର ଓ ଜୀବନହାନୀର ସଂଘଟନେ କରାଇଥିବା ଗୋଟିଏ ସମସ୍ୟାର ଏଠାରେ ଉତ୍‌ଥାପନ କରିଥିବାରୁ ମୁଁ ଆପଣମାନଙ୍କ ପାଖରେ କ୍ଷମାଭିକ୍ଷା କରୁଚି। କିନ୍ତୁ ଆପଣମାନଙ୍କର ସମ୍ମୁଖରେ ଜଣେ

ଉପନ୍ୟାସକାର ଏହି ସମସ୍ୟାର ଉତଥାପନ କରିଚି, ଯେଉଁ ଉପନ୍ୟାସକାରଙ୍କୁ କି ଆପଣମାନେ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ପରି ଚିହ୍ନାଇ ଦେଇଛନ୍ତି। ତା'ର ଜୀବନକୁ ଯୋଗାଇଥିବା ପ୍ରେରଣାକୁ ଆପଣମାନେ ସ୍ୱତନ୍ତ୍ର ମୂଲ୍ୟ ଦେଇଚନ୍ତି ବୋଲି ଏଥିରୁ ସ୍ପଷ୍ଟ ସୂଚିତ ହେଉଚି। ଏହାଦ୍ୱାରା ପ୍ରମାଣିତ ହେଉଚି ଯେ ତା'ର ବିଶ୍ୱାସ ଓ ଆଶା ସହିତ ତା'ଠାରୁ ଅନ୍ୟ ବିଶ୍ୱାସ ଓ ଆଶା ପୋଷଣ କରିଥିବା ପାଠକମାନଙ୍କର ଅନୁଭୂତିର କୌଣସି ପରସ୍ପର - ବିରୋଧ ନାହିଁ। ...

ଆଜି ଆମେ ସମସ୍ତେ ଏକମତ ଯେ, ଏ ଯୁଗର ଧର୍ମଚ୍ୟୁତ ଓ ଖ୍ରୀଷ୍ଟଚ୍ୟୁତ ମନୁଷ୍ୟ ସମାଜକୁ ଏକ କ୍ରୁଶବିଦ୍ଧ ମନୁଷ୍ୟ ସମାଜ ବୋଲି କହିବାକୁ ହେବ। କ୍ରୁଶ ଯୁଗେ - ଯୁଗେ ମନୁଷ୍ୟର ଦୁଃଖର ପ୍ରତୀକରୂପେ ରହି ଆସିଚି। ପୃଥିବୀର କୌଣସି ଶକ୍ତି ଏହାକୁ ଧ୍ୱଂସ କରି ପାରିବ ନାହିଁ। ଏପରିକି ହୃଦୟର ଗଭୀରତମ ପ୍ରଦେଶକୁ ଭେଦ କରି ପାରିଥିବା ଷ୍ଟ୍ରିଣ୍ଡବର୍ଗ ମଧ୍ୟ ତାଙ୍କର ସମାଧି ଉପରେ ସେହି ଗୋଟିଏ ବାକ୍ୟ ଲିଖିତ ହୋଇ ରହିବାର ଇଚ୍ଛା ପ୍ରକାଶ କରି ଯାଇଛନ୍ତି:- "ଜଗତର ସବୁ ଦୁଃଖ ଭୋଗକରି ସାରିବା ପରେ, ସେ ମଧ୍ୟ ସେହି ଆଶା ଓ ସେହି ପ୍ରେମର ଛାୟାଶ୍ରୟରେ ବିଶ୍ରାମ ନେଇଛନ୍ତି।" ତାଙ୍କରି ନାମରେ ଆଜିର ଏହି ପୁରସ୍କୃତ ଲେଖକ ଆପଣମାନଙ୍କଠାରୁ କ୍ଷମାଭିକ୍ଷା କରି ନେଉଚି। ତା'ର ବ୍ୟକ୍ତିଗତ କଥାଗୁଡ଼ାକ କହି ଆଜିର ଏହି ଅତି ଗମ୍ଭୀର ବାତାବରଣ ସୃଷ୍ଟି କରିଥିବାରୁ ସେ କ୍ଷମା ମାଗି ନେଉଚି। କିନ୍ତୁ ଆପଣମାନେ ତା' ଉପରେ ଯେଉଁ ପୁରସ୍କାର ଲଦିଦେଇ ତାକୁ ଅଭିଭୂତ କରି ପକାଇଛନ୍ତି, ଆଉ କି'ପ୍ରକାରେ ସେ ତାହାର ପ୍ରତ୍ୟୁତ୍ତର ଦେଇ ପାରିଥାନ୍ତା ? ଆପଣାର ହୃଦୟର ଅନ୍ତରଙ୍ଗ ତଳ ଖୋଲି ନଦେଇ, ତା'ର ଆତ୍ମାକୁ ପ୍ରସାରି ନଦେଇ, କିପରି ସେ ଆପଣାର କର୍ତ୍ତବ୍ୟ କରି ପାରିଥାନ୍ତା ? ତ'ାର ଚରିତ୍ର ଗୁଡ଼ିକର ମଧ୍ୟଦେଇ ସେ ଆପଣମାନଙ୍କୁ ତା'ର ଅନ୍ତର ଭିତରର ସବୁ ପୀଡ଼ା ଓ ଅଶ୍ୱସ୍ତି ପରିବେଷଣ କରି ଦେଇଥିଲା। ତେଣୁ ଆଜି ସନ୍ଧ୍ୟାରେ ଆପଣା ଶାନ୍ତିର ଗୋପନ ଦ୍ୱାରଦେଶରେ ଆପଣମାନଙ୍କୁ ପ୍ରବେଶ କରାଇ ଦେଇ ସେ ଆପଣାର ବିହିତ କର୍ତ୍ତବ୍ୟ ସମ୍ପାଦନ କରିଚି।



# 'କ୍ରୁଶ' ବନ୍ଦୀ ଫ୍ରାଁସୋୟା ମୋରିୟାକ୍

ଫରାସୀ ସାହିତ୍ୟ, ଦର୍ଶନ ଓ ଚିନ୍ତାଧାରା ବିଶ୍ୱ ସାହିତ୍ୟ ରାଜ୍ୟରେ ସାଂସ୍କୃତିକ ରାଜଧାନୀ କହିଲେ ଅତ୍ୟୁକ୍ତି ହେବ ନାହିଁ। ପ୍ୟାରିସ୍‌ର ସାହିତ୍ୟ ଏକାଡ଼େମୀ ଓ ବିଶ୍ୱବିଦ୍ୟାଳୟ ବିଶ୍ୱର ଆଦର୍ଶ।

ଇଂଲଣ୍ଡ ଓ ଫ୍ରାନ୍‌ସ୍ ମଝିରେ ଇଂଲିଶ ପ୍ରଣାଳୀ ପ୍ରବାହିତ। ମାତ୍ର କେତେକ ମାଇଲ ବ୍ୟବଧାନ କିନ୍ତୁ ଉଭୟ ଦେଶ ମଧ୍ୟରେ ବହୁତ ପାର୍ଥକ୍ୟ ଦେଖିବାକୁ ମିଳେ।

ଫରାସୀ ଚିନ୍ତାଧାରା ଓ ସାହିତ୍ୟ ସଂଗେ ଭାରତବାସୀଙ୍କର ପରିଚୟ ଘଟେ ଇଂରେଜୀ ଅନୁବାଦ ମାର୍ଫତ; ସେଥିଯୋଗୁଁ ଫ୍ରାନସ୍‌ର ବହୁ ବିଚିତ୍ର ପୂର୍ଣ୍ଣାଙ୍ଗ ପରିଚୟ ବର୍ତ୍ତମାନ ମଧ୍ୟ ଭାରତବାସୀଙ୍କ ମଧ୍ୟରେ ଘନିଷ୍ଠ ହୋଇ ଉଠି ନାହିଁ।

ଆଜିସୁଦ୍ଧା ନଅ ଜଣ ଫରାସୀ ସାହିତ୍ୟିକ ନୋବେଲ୍ ପୁରସ୍କାର ଦ୍ୱାରା ସମ୍ମାନିତ ହୋଇଛନ୍ତି। ସର୍ବପ୍ରଥମ କବି ସଲି ପ୍ରୁଧୋମ୍ ଏବଂ ସର୍ବାଧୁନିକ ହେଉଛନ୍ତି ଆଲବାର୍ଟ କାମସ୍। ୧ ୯ ୫ ୨ ସାଲରେ "ଗାଲିଗାଇ (ସମ୍ମୋହିନୀ)" ପ୍ରକାଶ ପାଇବା ପରେ ସେହି ବର୍ଷ ଫ୍ରାଁସୋୟା ମୋରିୟାକ୍ ନୋବେଲ ପୁରସ୍କାର ଦ୍ୱାରା ସମ୍ମାନିତ ହୋଇଥିଲେ।

ପୌରାଣିକ ସାହିତ୍ୟରେ ପାପ ଓ ପୁଣ୍ୟ ମଧ୍ୟରେ ବହୁତ ସଂଘର୍ଷର ଚିତ୍ର ଦେଖିବାକୁ ମିଳେ। ଏହି ଚିରନ୍ତନ ସଂଗ୍ରାମ 'ଦେବତା' ଓ 'ଅସୁର' ସଂଗ୍ରାମ ଆଖ୍ୟା ଲାଭ କରି ତାହା ଧର୍ମଗ୍ରନ୍ଥ ହିସାବରେ ମର୍ଯ୍ୟାଦାଲାଭ କରିଛି। ନିଜଠାରୁ ବଳୀୟାନ୍ ଶକ୍ତିଗୁଡ଼ିକୁ ସନ୍ତୁଷ୍ଟ କରିବା ହେଉଛି ମଣିଷର ସହଜାତ ପ୍ରବୃତ୍ତି, କିନ୍ତୁ ମନସ୍ତତ୍ୱ ଦୃଷ୍ଟି କୋଣରୁ ଏହି ସଂଗ୍ରାମ ହେଉଛି ମଣିଷ ମନ ମଧ୍ୟରେ ଲାଗି ରହିଥିବା ଅବିଚ୍ଛିନ୍ନ ଅନ୍ତର୍ଦ୍ୱନ୍ଦ୍ୱ।

ଶ୍ରୀଯୁକ୍ତ ମୋରିୟାକ୍ ଏହି ଅପରାଧ ପ୍ରବଣତାକୁ ନିଜ ଉପନ୍ୟାସମାନଙ୍କ ଚରିତ୍ର ଭାବରେ ଗ୍ରହଣ କରିଛନ୍ତି। ଅପରାଧୀ ସମାଜରୁ ଗ୍ରହଣ କରିଥିବା ଚରିତ୍ରଗୁଡ଼ିକ ଆମ୍ଭଭଳି ପ୍ରତ୍ୟେକ ମଣିଷ ଏବଂ ମୋରିୟାକ୍ କହିଛନ୍ତି ଯେ, ଅପରାଧ ସମାଜର ଏକ ବ୍ୟାଧି। ତାହା ମଧ୍ୟ ଆରୋଗ୍ୟ କରାଯାଇ ପାରେ, କାରଣ ଭଲ ଓ ମନ୍ଦ, ପାପ ଓ ପୁଣ୍ୟ ଗୋଟିଏ ବୃନ୍ତରେ ଦିଓଟି ପୁଷ୍ପ ଭଳି ବିକଶିତ। ଏହାର ପ୍ରକୃତ ସ୍ୱରୂପ ଉପଲବ୍ଧି କରିବା ପାଇଁ ଆବଶ୍ୟକ ପୋଥିଗତ ବିଚାର ଓ ଶାସ୍ତ୍ରର ଗଣ୍ଡି ବହିର୍ଭୁତ ବୁଦ୍ଧି ଏବଂ ଉଚ୍ଚ ଚିନ୍ତାଧାରା।

୭୪ବର୍ଷ ତଳେ ଦକ୍ଷିଣ ଫ୍ରାନ୍‌ସର ଅନ୍ତର୍ଗତ ବୋର୍ଦୋ ନାମକ ସ୍ଥାନରେ ୧୮୮୫ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୧ ତାରିଖରେ ଫ୍ରାଁସୋୟା ମୋରିୟାକ୍ ଜନ୍ମଗ୍ରହଣ କରିଥିଲେ। ସମ୍ଭ୍ରାନ୍ତ ବିତ୍ତବାନ୍ ପରିବାରରେ ଚାରି ଭାଇ ଓ ଜଣେ ଭଉଣୀ ମା'ଙ୍କର ସତର୍କ ତତ୍ତ୍ୱାବଧାନରେ

ଗତାନୁଗତିକ ଭାବରେ ରୋମାନ୍ କାଥୋଲିକ୍ ଧର୍ମାନୁଯାୟୀ ବଢ଼ିବାକୁ ଲାଗିଲେ । ପାଞ୍ଚୋଟି ଶିଶୁମାନଙ୍କ ମଧ୍ୟରେ ମୋରିୟାକ୍ ହେଉଛନ୍ତି ସର୍ବକନିଷ୍ଠ ଏବଂ ଅନ୍ୟ ତିନି ଭାଇମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ବୋର୍ଦ୍ଦୋ ବିଶ୍ୱବିଦ୍ୟାଳୟର ଭେଷଜବିଦ୍, ଅନ୍ୟ ଜଣେ ବାରିଷ୍ଟର, ଆଉ ଜଣେ ପୁରୋହିତ ।

ମୋରିୟାକ୍‌ଙ୍କୁ ଯେତେବେଳେ ମାତ୍ର ୨୦ ମାସ ବୟସ ସେତେବେଳେ ସେ ହଠାତ୍ ପିତୃହରା ହୁଅନ୍ତି । ତାଙ୍କର ପିତା ସେଦିନ ନିଜର ସମ୍ପତ୍ତିବାଡ଼ି ଦେଖାଶୁଣା କରି ସନ୍ଧ୍ୟାବେଳେ ଘରକୁ ଫେରି କହିଲେ ଯେ ଭୀଷଣ ମୁଣ୍ଡ ବିନ୍ଧୁଛି ଏବଂ ତା'ପରଦିନ ଆକସ୍ମିକ ଭାବରେ ତାଙ୍କର ମୃତ୍ୟୁ ଘଟିଲା । ମୋରିୟାକ୍ ୫ବର୍ଷ ବୟସରେ ପିତାମହଙ୍କୁ ମଧ୍ୟ ହରାଇଥିଲେ ଏବଂ ପିତାଙ୍କ ଭଳି ପିତାମହଙ୍କ ମଧ୍ୟ ମୃତ୍ୟୁ ଘଟିଥିଲା । କିଛିଦିନ ପରେ ସେ ବିଦ୍ୟାଳୟରେ ପ୍ରବେଶ କଲେ । ପିଲାଟିଦିନୁ ପ୍ରତ୍ୟେକ ବିଷୟ ଓ ତାଙ୍କ ଭାବନା ନିଜର ଟିପା ଖାତାରେ ଲେଖି ରଖିବାରେ ଅଭ୍ୟସ୍ତ । ବିଦ୍ୟାଳୟରେ ସେ ଜଣେ ମେଧାବୀ ଓ ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ ଛାତ୍ର ହିସାବରେ ପରିଚିତ । ଚଉଦ ବର୍ଷ ବୟସରୁ ଶ୍ରେଷ୍ଠ ପୁସ୍ତକମାନ ପଢ଼ିବାରେ ମନୋନିବେଶ କଲେ । ଏତିକିବେଳେ ଜଣେ ବେନାମୀ ଲେଖିକାଙ୍କର ରଚନା 'ଫିଟ୍ ଅଫ୍ କ୍ଲେ' ପ୍ରତି ବିଶେଷ ଭାବରେ ଆକୃଷ୍ଟ ହେଲେ । ୧୯୦୬ରେ ପ୍ୟାରିସ୍‌କୁ ଉଚ୍ଚ ଶିକ୍ଷା ଲାଭ କରିବା ପାଇଁ ଗଲା ଉତ୍ତାରୁ ପାସ୍କାଲ, ରାବୋଁ ଏବଂ ରେସାଇନ୍ ଇତ୍ୟାଦିଙ୍କ ରଚନାମାନଙ୍କ ଦ୍ୱାରା ସେ ବିଶେଷ ଭାବରେ ପ୍ରଭାବାନ୍ୱିତ ହେବାକୁ ଲାଗିଲେ । ୧୯୦୯ରେ ତାଙ୍କର ସର୍ବପ୍ରଥମ ରଚନା କବିତାଗୁଚ୍ଛ "ଦି ଜଏନ୍ ହ୍ୟାଣ୍ଡସ୍" ପ୍ରକାଶିତ ହେଲା, ତା'ପରେ "ଫେୟାର ୱେଲ୍ ଟୁ ଆଡୋଲସେନ୍" ଏବଂ "ଦି ଚାଇଲଡ୍ ବର୍ଡ଼େନ୍ ଉଇଥ୍ ଚେନସ୍" ପ୍ରକାଶ ପାଇଲା ବେଳକୁ ମୋରିୟାକ୍‌ଙ୍କୁ ୨୪ ବର୍ଷ ବୟସ ହୋଇଥିଲା । ଏତିକିବେଳେ ସେ ଫରାସୀ ସରକାରଙ୍କ ରେଭିନ୍ୟୁ ବିଭାଗର ଜଣେ ଉଚ୍ଚ କର୍ମକର୍ତ୍ତାଙ୍କ ଝିଅ ଜାଁନେ ଲାଫୋଁଙ୍କୁ ବିବାହ କଲେ । ମୋରିୟାକ୍ ଚାରୋଟି ଶିଶୁର ଜନକ, ଯୋଡ଼ିଏ ପୁଅ ଏବଂ ଯୋଡ଼ିଏ ଝିଅ । ବଡ଼ ପୁଅ କ୍ଲୋଦେଁ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ଓ ସମାଲୋଚକ । "ଆନ୍ଦ୍ରେ ଜିଦ୍‌ଙ୍କ ସଙ୍ଗେ କଥାବାର୍ତ୍ତା" ନାମକ ଗ୍ରନ୍ଥ ରଚନା କରି ସେ ବିଶେଷ ପ୍ରସିଦ୍ଧି ଲାଭ କରିଛନ୍ତି ।

ଯୁଦ୍ଧ ଆରମ୍ଭ ହେବା ପରେ ଫ୍ରାଁସୋୟା ମୋରିୟାକ୍ ସାଲୋନିକା ଆନ୍ଦୋଳନରେ ଯୋଗଦାନ କରି ସୈନ୍ୟ ବିଭାଗରେ ସେବା ଶୁଶ୍ରୂଷା କାର୍ଯ୍ୟରେ ନିଯୁକ୍ତ ହେଲେ । ଯୁଦ୍ଧର ଅଭିଜ୍ଞତା ଘେନି ସେ ଫେରି ଆସି ଲେଖକ ଭାବରେ ଜୀବିକା ନିର୍ବାହ ଆରମ୍ଭ କଲେ । ୧୯୨୦ରେ "ଫେସ ଏଣ୍ଡ ବ୍ଲଡ୍" ଏବଂ "ପ୍ରିସିଡ଼େନ୍‌ସ", ୧୯୨୧ରେ "ଏ କିସ୍ ଫର ଦି ଲେପର", ୧୯୨୩ରେ "ଜେନିଟ୍ରିକ୍‌ସ", ୧୯୨୪ରେ "ଦି ଏନିମି", ୧୯୨୫ରେ "ଦି ଡ଼େଜାର୍ଟ ଅଫ୍ ଲଭ", ୧୯୨୬ରେ "ଥେରେସେ ଡ଼େକୋରେ" ଓ "ଭାଇପରସ

ଟାଙ୍ଗ୍‌ଲ", ୧୯୨୭ରେ "ଦ୍ୟାଟ୍ ହୁଇଚ୍ ଓ୍ୟାଜ ଲଷ୍ଟ" ଓ "ଡ଼େଷ୍ଟିନ୍‌ସ", ୧୯୨୮ରେ "ଲାଇଫ ଅଫ୍ ଜାଁ ରେସାଇନ୍", ୧୯୩୧ରେ "ପାସ୍କାଲ୍‌ଙ୍କ ଜୀବନୀ", ୧୯୩୩ରେ "ଦି ଫ୍ରଣ୍ଟେନାକ୍ ମିଷ୍ଟ୍ରି", ୧୯୩୫ରେ "ଦି ଏଣ୍ଡ ଅଫ୍ ଦି ନାଇଟ୍", ୧୯୩୬ରେ "ଲାଇଫ ଅଫ୍ ଯିଶୁସ", ୧୯୩୯ରେ "ଦି ହାଇ ଉଏଜ୍ ଅଫ ଦି ସି", ୧୯୪୦ରେ "ଓମ୍ୟାନ୍ ଅଫ୍ ଦି ଫାରିସିସ୍", ୧୯୪୫ରେ "ସେଣ୍ଟ ମାର୍ଗାରିଟା ଦି କର୍ଟୋନ୍", ୧୯୪୮ରେ "ଦି ଷ୍ଟମ୍‌ବ୍‌ଲିଙ୍ଗ ବ୍ଲକ୍", ୧୯୫୧ରେ "ଦି ଲିଟ୍‌ଲ ମିଜରି", ୧୯୫୨ରେ "ଗାଲିଗାଇ", ୧୯୫୪ରେ "ଦି ଲ୍ୟାମ୍ବ", ଗଡ୍ ଏଣ୍ଡ୍ ମାମନ୍ ଏବଂ ତିନି ଖଣ୍ଡ "ଜର୍ଣ୍ଣାଲ" ଇତ୍ୟାଦି ଗ୍ରନ୍ଥମାନ ପ୍ରକାଶିତ ହୋଇଥିଲା।

"ଦି ସ୍କୋଭେନ୍‌ଲି" ପ୍ରକାଶ ପାଇବା ଉତ୍ତାରୁ ତାଙ୍କର ଗ୍ରନ୍ଥାବଳୀ ପ୍ରକାଶ ପାଇଅଛି।

ନାଜିମାନଙ୍କ ଆକ୍ରମଣ ବେଳେ ମୋରିୟାକ୍ ଜାତୀୟ ଲେଖକ ସଂଘରେ ଯୋଗଦାନ କରି ଓ "ଫୋରେଜ୍" ନାମ ଧାରଣ କରି ଗୁପ୍ତଭାବରେ ରହି ଲେଖା ଲେଖି କରୁଥିଲେ। ତାହା ମିଡ୍‌ନାଇଟ୍ ପ୍ରକାଶନୀ ଦ୍ୱାରା "ଦି ବ୍ଲାକ୍ ବୁକ୍" ନାମରେ ପ୍ରକାଶିତ ହୋଇଅଛି। ୧୯୪୪ଖ୍ରୀଷ୍ଟାବ୍ଦ ଅଗଷ୍ଟ ୨୫ ତାରିଖରେ ମୋରିୟାକ୍ ସାମ୍ବାଦିକ ଭାବରେ ତାଙ୍କର ସମ୍ପାଦକୀୟ ବିଖ୍ୟାତ ସାହିତ୍ୟ ପତ୍ରିକା "ଲା ଫିଗାରୋ"ରେ ପ୍ରକାଶ କଲେ ଏବଂ ବଳୀୟାନ୍ ସାମ୍ବାଦିକ ହିସାବରେ ପରିଚିତ ହେଲେ।

"ଦି ଡ଼େଜାର୍ଟ ଅଫ୍ ଲଭ୍" ପୁସ୍ତକ ପାଇଁ ୧୯୩୨ରେ ଫରାସୀ ସାହିତ୍ୟ ଏକାଡ଼େମୀର ଶ୍ରେଷ୍ଠ ପୁରସ୍କାର ଏବଂ ୧୯୩୩ରେ ଫରାସୀ ଏକାଡ଼େମୀର ସଭାପତିର ଆସନ ଲାଭ କରିଥିଲେ।

୧୯୩୮ରେ ସେ ତାଙ୍କର ଯୁଦ୍ଧର ପୂର୍ବବର୍ତ୍ତୀ ପ୍ରଥମ ନାଟକ ରଚନା "ଆସ୍‌ମୋଦି" ପ୍ରକାଶ କରିଥିଲେ ଏବଂ ଯୁଦ୍ଧ ପରେ ଅନ୍ୟାନ୍ୟ ନାଟକ "ଆଇ ଉଇଲ ଲଭଡ୍ ଏଣ୍ଡ ଲିଭଡ୍ ଉଇଥ ଫ୍ରେଞ୍ଚ", "ଦି ଟାନଜିସନ୍ ଅଫ୍ ଦି ରୋଗ୍" ଏବଂ "ଦି ଫାୟାର ଅନ୍ ଦି ଲାଣ୍ଡ" ପ୍ରକାଶିତ ହୋଇଥିଲା।

ମୋରିୟାକ୍‌ଙ୍କ ସ୍ରୋତସ୍ୱିନୀ ଲେଖନୀରୁ ପ୍ରତ୍ୟେକ ବର୍ଷ ଗୋଟାଏ ନା ଗୋଟାଏ କବିତା ଗୁଚ୍ଛ କିମ୍ବା ଉପନ୍ୟାସଟିଏ ଅଥବା ପ୍ରବନ୍ଧମାଳା ପ୍ରକାଶ ଲାଭ କରେ।

୧୯୫୨ଖ୍ରୀଷ୍ଟାବ୍ଦ ନଭେମ୍ବର ୬ତାରିଖରେ ନିମ୍ନଲିଖିତ କାରଣ ଦର୍ଶାଇ ତାଙ୍କୁ ନୋବେଲ ପୁରସ୍କାର ଦିଆଯିବ ବୋଲି ଘୋଷଣା କରାଗଲା।

"ମର୍ମସ୍ପର୍ଶୀ ଆଧ୍ୟାତ୍ମିକ ଅନ୍ତର୍ଦୃଷ୍ଟି ଏବଂ ସୁସଂହତ ଲେଖନୀ ଦ୍ୱାରା ସେ ମାନବର ଜୀବନ ନାଟିକାକୁ ଉପନ୍ୟାସର ରୂପରେଖ ଦେଇ ଅଛନ୍ତି।"

ଏହି ଘୋଷଣା ଉଦ୍ଦେଶ୍ୟରେ ଫ୍ରାଁସୋୟା ମୋରିୟାକ୍ ସାମ୍ବାଦିକମାନଙ୍କୁ କ୍ଷୁଦ୍ର ବିବୃତିଟିଏ ଲେଖିଦେଲେ "ଏହି ପୁରସ୍କାର ପାଇଁ ବନ୍ଧୁ ଗ୍ରାହାମ୍ ଗ୍ରୀନ୍ ଏବଂ ପ୍ରସିଦ୍ଧ ଇଂରାଜୀ ଅନୁବାଦକ ଜିରାରଡ୍ ହପକିନସ୍‌ଙ୍କ ନିକଟରେ କୃତଜ୍ଞତା ଜଣାଉଛି।"

ଇଂରାଜୀ ନବବର୍ଷ<br>
୧୯୫୯

ସୁଭଦ୍ରା - ନନ୍ଦନ



# ନାମକରଣ

'ଗାଲିଗାଇ' ଉପନ୍ୟାସର ଓଡ଼ିଆ ନାମକରଣ କିପରି ହେବ, ଏହା ଚିନ୍ତା କଲା ବେଳକୁ ଆଈମାଆ କାହାଣୀରୁ ଶୁଣିଥିବା ଜ୍ଞାନଦେଈ ମାଲ୍ୟାଣୀ କଥା ମୋର ମନେ ପଡ଼ିଗଲା। ଜ୍ଞାନଦେଈ ମାଲ୍ୟାଣୀ ଓଡ଼ିଶାର କାହାଣୀ ରାଜ୍ୟରେ ଏକ ବିଚିତ୍ର ସୃଷ୍ଟି। ତା' ପାଖରେ ଧନ ନଥାଏ, ରାଜ୍ୟ ନଥାଏ, ବା ବିଦ୍ୟା ମଧ୍ୟ ନଥାଏ। କେବଳ ଦୁଇଗୋଟି ଫୁଲ ଥାଏ, ଯାହା ସାହାଯ୍ୟରେ କି ସେ ରାଜାପୁଅ ଓ ରାଜା ଝିଅ ପରି ଚରିତ୍ରମାନଙ୍କୁ ଆପଣାର ବଶକୁ ନେଇଆସିପାରେ। ଗୋଟିଏ ଫୁଲ ଶୁଘାଂଇ ପୁରୁଷକୁ ସେ ଦିନରେ ମେଣ୍ଢା କରେ ଓ ଆଉ ଗୋଟିଏ ଫୁଲ ଶୁଘାଂଇ ରାତିରେ ପୁଣି ଭେଣ୍ଡା କରି ରଖେ। ହୃଦୟର ସଂଚରଣ-ଭୂମିରେ ଯେଉଁଠି ମଣିଷ ପାଖରେ ମଣିଷ ଧରାଦିଏ, ସେହିଠାରେ ହିଁ ପ୍ରେମ ସମ୍ଭବ ହୁଏ। ଫୁଲ ଶୁଘାଂଇ ମଣିଷକୁ ଇଚ୍ଛାନୁସାରେ ମେଣ୍ଢା ଓ ଭେଣ୍ଡା କରିବାର ଉତ୍ସାହ ଭିତରେ ପ୍ରେମାନୁଭୂତିର କୌଣସି ଗନ୍ଧ ନଥାଏ। ସେଠାରେ ପ୍ରେମ ରାଜ୍ୟରେ ଆଧିପତ୍ୟ ଓ ଉତ୍ପାତ କରିବାଲାଗି ଅନ୍ୟ ବଳର ଆଶ୍ରୟ ନିଆଯାଏ, ଅନ୍ୟ ବଳ ଉପରେ ବିଶ୍ୱାସ କରାଯାଏ।

ଗ୍ରୀସ୍ ଦେଶର ପୁରାଣ-କାହାଣୀରେ ଏହିପରି ଦୃଷ୍ଟାନ୍ତ ମଧ୍ୟ ଶୁଣିବାକୁ ମିଳେ। ଇଉଲିସିସ୍‌ର ସମୁଦ୍ର ଭ୍ରମଣ ସମୟରେ ହଠାତ୍ ଗୋଟାଏ ସ୍ଥାନରେ ସେ ଓ ତା'ର ସହଯାତ୍ରୀମାନେ ସମୁଦ୍ର ଉପରେ ସଙ୍ଗୀତ ଶୁଣିବାକୁ ପାଇଲେ। ସେହି ସଙ୍ଗୀତ ସେମାନଙ୍କର ଇଚ୍ଛା ବିରୁଦ୍ଧରେ ମଧ୍ୟ ସେମାନଙ୍କୁ ବଶ କରି ଗୋଟିଏ ଦ୍ୱୀପ ପାଖକୁ ଟାଣି ନେଲା। ସେଠାରେ ଥିବା ରମଣୀ ଏହିପରି ସଙ୍ଗୀତ ଓ ବାଦ୍ୟର ଏକ କୁହୁକ ସୃଷ୍ଟିକରି ସମୁଦ୍ର ଯାତ୍ରୀମାନଙ୍କୁ ଟାଣି ଆଣେ ଓ ସେମାନଙ୍କର ପ୍ରଣୟ ଉପଭୋଗ କରେ। ଅନେକ କୌଶଳରେ ଇଉଲିସିସ୍ ଆପଣାକୁ ଏହି କବଳରୁ ମୁକ୍ତ କରି ପାରିଥିଲା।

ସବୁ ଯୁଗ ଓ ଦେଶର ପ୍ରେମ କାହାଣୀରେ ପ୍ରେମ ସହିତ ପ୍ରେମ ଲାଳସାର ଏକ ବିକୃତ କାହାଣୀ ମଧ୍ୟ ସଂଯୁକ୍ତ ହୋଇ ରହିଚି। ପ୍ରେମର ସଂଚାରପଥ ହେଉଚି ହୃଦୟର ନିବେଦନ-କ୍ଷେତ୍ରରେ, ହୃଦୟର ଆବିଷ୍କାରରେ। କିନ୍ତୁ ଏହି ପଥରେ ଅବତୀର୍ଣ୍ଣ ହେବାକୁ ଯେଉଁ ଧୈର୍ଯ୍ୟ ଦରକାର, ଅନେକ ସମୟରେ ସେହି ଧୈର୍ଯ୍ୟ ପ୍ରେମାତୁର ମଣିଷଠାରେ ନଥାଏ। ସେତିକିବେଳେ ତରତର ହୋଇ ସେ ପ୍ରେମକୁ ଏକ ଶିକାରଖେଦା ବୋଲି ଭ୍ରମ କରେ, ନାନା ପ୍ରକାର ସବଳ ରଜ୍ଜୁ ନେଇ ସେ ସଦର୍ପେ ଶିକାର କରି ବାହାରେ ଓ ତା'ର ଆଖି ପଡ଼ିଥିବା ଜଣକୁ ବାନ୍ଧିଆଣି ତାହାକୁ ହିଁ ପ୍ରେମ କରିବ ବୋଲି ମନସ୍ଥ କରେ। ମଣିଷ ଭିତରେ ଥିବା ଏହି ପ୍ରବୃତ୍ତିକୁ ପ୍ରଶ୍ରୟ ଦେଇ ପ୍ରେମ ବିଦ୍ୟାର କେଡ଼େକେଡ଼େ ସମ୍ମୋହନ, ମାରଣ ଓ ଉଚ୍ଚାଟନ ପ୍ରଭୃତି ବିଦ୍ୟାର ଭିଆଣ ହୋଇଚି। ଏ ଯୁଗରେ ମଧ୍ୟ ମନ୍ତ୍ର ପଢ଼ି ବା

ଗୁଣିଗାରେଡ଼ୀ କରି ଜଣକୁ ପ୍ରେମିକ ବା ପ୍ରେମିକା ରୂପରେ ବାନ୍ଧି ଅଣାଯାଇ ପାରିବ ବୋଲି ଅନେକ ବିଶ୍ୱାସ କରନ୍ତି ।

ଅନୁରକ୍ତିର ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ପ୍ରେମ-ମାର୍ଗର ସମାନ୍ତର ଭାବରେ ମୋହ ଓ ବଳର ମାର୍ଗ ରହିଚି । ସାମାଜିକ କ୍ଷେତ୍ରରେ ରହିଚି, ରାଜନୀତିରେ ରହିଚି, ତଥାକଥିତ ସେବାଦର୍ଶର ସଂସାରରେ ମଧ୍ୟ ରହିଚି । ଅଧିକରୁ ଅଧିକ ମଣିଷ ମୋର ଅଙ୍ଗୁଳି ନିର୍ଦ୍ଦେଶରେ ବା ଅଧୀନରେ ରହିବେ, ମୋହରି ଅନୁଗ୍ରହର ହାଣ୍ଡିରେ ସେମାନଙ୍କର ଦାନା ପାଣିର ଯୋଗାଡ଼ ହେବ, - ମୋ'ର କଥାରେ, ମୋ'ର ଆଦେଶରେ ଓ ମୋର ଆଦର୍ଶରେ ସେମାନେ ଠିକ୍ କଣ୍ଢେଇ ପରି ନାଚିବେ, ଏହିପରି ଏକ କ୍ଷୁଧା ତଥାକଥିତ ଯୌନ କ୍ଷୁଧାଠାରୁ ମଣିଷକୁ କମ୍ ପାଗଳ କରେ ନାହିଁ । ଏହି କ୍ଷୁଧାର ଆବହରେ ପଡ଼ି ସାମାଜିକ କ୍ଷେତ୍ରରେ ମଣିଷ ସମ୍ପତ୍ତି ବଢ଼ାଏ, ଅପର ଅନେକଙ୍କର ତୁଳନାରେ ଆପଣାକୁ ଅଧିକ ବିଜ୍ଞ ଓ ଅଧିକ ସମ୍ପନ୍ନ ବୋଲି ଦେଖାଇବାକୁ ଚେଷ୍ଟା କରେ । ରାଜନୀତି କ୍ଷେତ୍ରରେ ଏହି କ୍ଷୁଧା ମଣିଷକୁ କ୍ଷମତାର ନିଶାରେ ପକାଇଦିଏ । କ୍ଷମତା ପାଇଁ ସେ ହୀନ ଭାବରେ ଅନେକ ଅପକର୍ମ କରେ । ଏକ ମିଛ ସମ୍ମାନସଚେତନତାର ବିକାର ଦ୍ୱାରା ଚାଳିତ ହୋଇ ସେ ସବୁପ୍ରକାର ରକ୍ତ ନଦୀର ସନ୍ତରଣ କରିବାକୁ ରାଜି ହୋଇଯାଏ । ସେବା ଓ ଆଦର୍ଶର କ୍ଷେତ୍ରରେ ପ୍ରେମ ମାର୍ଗକୁ ଭୁଲିଗଲେ ମଣିଷ କମ୍ ଦୁରାତ୍ମତାର ପରିଚୟ ଦିଏ ନାହିଁ । ସେବାର ଅହଙ୍କାର ତାକୁ ଅସହିଷ୍ଣୁ କରିପକାଏ, ସେବା ଓ ଉପକାରର ଫାଶ ପକାଇ ସେ ମଣିଷ ଧରିବାର ଏକ ବ୍ୟସ୍ତ ବ୍ୟବସାୟ ଆରମ୍ଭ କରେ । ହୃଦୟ ଖୋଲିବାରେ ହିଁ ପ୍ରେମ ଆନନ୍ଦ ପାଏ । ଫାଶରେ ଧରି ଆଣିଥିବା ମଣିଷର ମୁଣ୍ଡ ଗଣତି କରି ସେବା ଓ ଆଦର୍ଶ କ୍ଷେତ୍ରରେ ଦାମ୍ଭିକ ଆତ୍ମପ୍ରସାଦ ଲାଭ କରେ ।

କିନ୍ତୁ ମାଡ଼ାମ୍ ଆଗାଥେ ତାଙ୍କର ରଜ୍ଜୁ ବନ୍ଧନରେ ବିଫଳ ହେଲା ପରି ମଣିଷକୁ ବାନ୍ଧିଆଣି ହାତମୁଠାରେ ରଖିବାର ସମସ୍ତ ପ୍ରୟାସ ସବୁଦିନେ ବିଫଳ ହୁଏ ।

ଉପନ୍ୟାସର ମାଡ଼ାମ ଆଗାଥେ କୌଣସି ମନ୍ତ୍ର ବା ଗୁଣିଗାରେଡ଼ି ଜାଣି ନଥିଲେ । କିନ୍ତୁ ତଥାପି ତାଙ୍କର ବଳବାନ ମନର ଫାଶ ବସାଇ ସେ ହୃଦୟ ଧରିବାର ଦୁଃସାହସ ବାନ୍ଧିଥିଲେ । ଅଜଗର ସାପର ବଳବାନ୍ ଆଖି କୁଆଡ଼େ ଏହିପରି ଦୁର୍ବଳ ପଶୁକୁ ସମ୍ମୋହିତ କରି ଆପଣା ପାଖକୁ ଟାଣି ନେଇ ଆସେ । ଆପଣାର ଅସୁନ୍ଦର ରୂପ ବିଷୟରେ ତାଙ୍କ ନିଜର ମନ ଭିତରେ ଯେଉଁ ଗ୍ଲାନି ବା ହୀନଭାବ ଥିଲା, ହୁଏତ ତାହାରି ଦ୍ୱାରା ପୀଡ଼ିତ ହୋଇ ପଡ଼ି ଆଗାଥେ ପ୍ରେମର ରାସ୍ତା ଭୁଲି ସମ୍ମୋହନର ରାସ୍ତା ଧରିଥିଲେ । ଖାସ୍ ଏଇଥି ପାଇଁ ସେ କିଛି ପାଇ ପାରିଲେ ନାହିଁ । ପ୍ରେମ ସୂତ୍ର ଅନୁସାରେ ଆପଣାକୁ ନିର୍ମଳ କରି ଦେଇ ପାରିଲେ ହିଁ ମଣିଷ ନିର୍ମଳ କରି ପାଏ । ପ୍ରଥମେ ଜଣକୁ ଫାଶ ଭିତରେ ଧରି ତା'ପରେ ତାହାରି ପାଖରେ ଆପଣାକୁ ଦେବାର ଦୁରାଶାରେ ହିଁ ରହିଯାଏ । ଯିଏ ଯେତିକି ହରାଏ, ସେ ସେତିକି ପାଏ, ଯିଏ ଯେତିକି ପାଇବ ବୋଲି ବା ସାଉଁଟି ଧରିବ ବୋଲି ଲୋଭ କରି

ବାହାରେ ସେ ସେତିକି ହରାଏ; ପ୍ରେମର ପାରମାର୍ଥିକ ଶାସ୍ତ୍ର ବାଇବେଲ୍‌ରେ ଘୋଷଣା କରାଯାଇଥିବା ଏହି ଉକ୍ତିଟି ଜୀବନର ସବୁ କ୍ଷେତ୍ରରେ ସ୍ୱୀକାର କରିବାକୁ ପଡ଼େ ।

ମଧ୍ୟଯୁଗୀୟ ଫ୍ରାନସ୍‌ର ଲେଓନୋରା ଡ଼ୋରି ନାମକ ଜଣେ ମହିଳାଙ୍କୁ ୧୬୧୭ ଖ୍ରୀଷ୍ଟାବ୍ଦରେ ଡ଼ାହାଣୀ ବୋଲି ପୋଡ଼ି ମାରି ଦିଆ ହୋଇଥିଲା । ଆଉ ଜଣେ ପୁରୁଷଙ୍କୁ ଆପଣାର ବଶ କରି ସତୀତ୍ୱ ହୀନତାର ଆଚରଣ କରିଥିବାରୁ ତାଙ୍କୁ ଏହିପରି ଶାସ୍ତି ଦିଆଯାଇଥିଲା । କେଉଁ ସମ୍ମୋହନ-ଶକ୍ତି ଦ୍ୱାରା ଲେଓନାରା ଅପର ପୁରୁଷଙ୍କୁ ବଶ କରି ପାରିଲେ ବିଚାରପତିଙ୍କର ଏହି ପ୍ରଶ୍ନ ଉତ୍ତରରେ ଲେଓନାରା ଉତ୍ତର ଦେଲେ "ଦୁର୍ବଳର ମନ ଉପରେ ସବଳ ମନର ଇଚ୍ଛାଶକ୍ତି ଯେଉଁ କ୍ଷମତା ବିସ୍ତାର କରେ, ତାହାହିଁ ହେଉଚି ମୋର ଏକମାତ୍ର ସମ୍ମୋହନ-ଶକ୍ତି ।" ଏହି ଲେଓନାରାଙ୍କର ଅଧିକ ଲୋକ ପ୍ରଚଳିତ ନାମ ହେଉଚି ଗାଲିଗାଇ - ଏବଂ ତାହାରି ଅନୁସରଣରେ ମୂଳ ପୁସ୍ତକଟିର ନାମ 'ଗାଲିଗାଇ' ଦିଆ ହୋଇଚି ।

ଇଂରାଜୀ ଅନୁବାଦଟିର ନାମ ହେଉଚି The Loved and the Unloved । କହିବା ବାହୁଲ୍ୟ ଯେ ଏଥିରୁ ମୂଳ ପୁସ୍ତକର ନାମ ବା ବିଷୟାଭାସ ଆଦୌ ସୂଚିତ ହେଉ ନାହିଁ । ବଙ୍ଗଭାଷାର ଅନୁବାଦଟିକୁ ଅନୁବାଦକ 'ମାୟାବତୀ' ନାମ ଦେଇଚନ୍ତି । ଇଂରାଜୀ ନାମଟି ଅପେକ୍ଷା ଏହା ମୂଳ ପୁସ୍ତକର ନାମଟିର ଅଧିକ ନିକଟବର୍ତ୍ତୀ ହୋଇଥିଲେ ହେଁ ଗାଲିଗାଇ ଚରିତ୍ରର ବିଶେଷ ଧର୍ମଟି ଏଥିରୁ ଆଦୌ ଧରା ପଡ଼ି ପାରୁନାହିଁ । 'ଦୁର୍ବଳ ଉପରେ ବଳବାନ୍‌ର ପ୍ରଭାବ ବିସ୍ତାର' ହେଉଚି 'ଗାଲିଗାଇ' ଚରିତ୍ରର ଧର୍ମ । ଏବଂ ସମ୍ମୋହନ ହେଉଚି ଏହି ଧର୍ମର ପ୍ରଧାନ ସାଧନ । ପ୍ରଧାନତଃ ଏହାକୁ ଯଥା-ସମ୍ଭବ ସୂଚିତ କରାଇବା ଉଦ୍ଦେଶ୍ୟରେ ସମସ୍ତ ଅପରିପୂର୍ଣ୍ଣତା ସତ୍ତ୍ୱେ ଓଡ଼ିଆ ଅନୁବାଦଟିର ନାମ 'ସମ୍ମୋହନୀ' ରଖାଯାଇଛି ।

ମୂଳ ପୁସ୍ତକର ଇଂରାଜୀ ଅନୁବାଦରୁ ଓଡ଼ିଆ ଅନୁବାଦ ପ୍ରସ୍ତୁତ ହୋଇଚି । ତିନି ତୁଣ୍ଡରେ ଛେଳି ଛେଳି ହୋଇ ରହେ ନାହିଁ ବୋଲି ଲୋକାପବାଦ ରହିଚି । ଭାଷା ବିଷୟରେ ଯାହାର ଯେତେ ବ୍ୟୁତ୍ପତ୍ତି ଥାଉ ନା କାହିଁକି, ତଥାପି ଆମକୁ ଏହି ଅପବାଦ ସ୍ୱୀକାର କରିବାକୁ ପଡ଼ିବ । ତେଣୁ ଓଡ଼ିଆ ଅନୁବାଦଟି ମୂଳ ରଚନାଟିର ଭାବ ଓ ରଚନା ସୌନ୍ଦର୍ଯ୍ୟକୁ କେତେ ବେଶୀ ବ୍ୟାହତ କରି ପକାଇବ, ଆମ ପକ୍ଷରେ ତାହା ନିର୍ଦ୍ଧାରଣ କରିବା ଆଦୌ ସମ୍ଭବ ନୁହେଁ । ଫରାସୀ ଭାଷା ନ ଜାଣିଥିବା ହେତୁ ଅନୁବାଦକ ପାଠକମାନଙ୍କର କ୍ଷମାର ପାତ୍ର । ଏହି ସବୁ ସୀମାବଦ୍ଧ ପରିଧି ଭିତରେ ତଥାପି ପାଠକ ବର୍ଗ ଅନୁବାଦଟିରୁ କିଞ୍ଚିତ ଆନନ୍ଦ ପାଇ ପାରିଲେ ଅନୁବାଦକର ଦୁଃସାହସ ସମ୍ପୂର୍ଣ୍ଣ ବିଫଳ ହୋଇ ନାହିଁ ବୋଲି ପ୍ରତ୍ୟାଶା କରାଯାଇ ପାରିବ ।

ବାଗଲପୁର — ଚିତ୍ତରଞ୍ଜନ ଦାସ

୦୧ । ୦୯ । ୧୯୫୮

# ଏକ

"ଆଜି ତୁ ଦୁଇଥର ପଛକୁ ମୁହଁ ବୁଲାଇ ଅନାଇଥିଲୁ।"

ଗାତ୍ର କୁଞ୍ଚନ କରି ମେରି ଗୋଟିଏ ପାଖ କାନ୍ଧକୁ ଉପରକୁ କରିଦେଲା।

"କହିଲ ମାଡ଼ାମ୍ ଆଗାଥେ, ସେ ପଛକୁ ଅନାଇଥିଲା କି ନାହିଁ, ମୁଁ କଣ ମିଛ କହୁଚି ?"

ଗୃହଧାତ୍ରୀ ମାଡ଼ାମ୍ ଆଗାଥେ ହୁଏତ କ'ଣ ଉତ୍ତର ଦେଇଥାନ୍ତେ - ଏତିକିବେଳେ ଗୀର୍ଜାରୁ ଠଣ୍ ଠଣ୍ ଘଣ୍ଟା ଶବ୍ଦ ଆସି କାନରେ ବାଜିଲା। ତେଣୁ ସେ ଉତ୍ତର ଦେବାରୁ ନିଷ୍କୃତି ପାଇଲେ। ସମସ୍ତଙ୍କର ଅତି ଆତ୍ମୀୟ ଲୋକ ପରି ଡୁବେର୍ନେଟ୍ ଦମ୍ପତି ଏଣେ ତେଣେ ବୁଲି ନାନା ଲୋକଙ୍କ ସହିତ କଥାବାର୍ତ୍ତା ହେଉଥାନ୍ତି, କିନ୍ତୁ କାହାରି ସହିତ କୌଣସି ପ୍ରକାର ବାନ୍ଧି ହୋଇ ଯାଉନଥାନ୍ତି। ପ୍ରାର୍ଥନା ପରେ ସମସ୍ତେ ଗୀର୍ଜା ଭିତରୁ ବାହାରି ଆସିଲାବେଳେ ମନେ ହେଉଥିଲା ଯେପରି ଜୁଲିଆ ଡୁବେର୍ନେଟ୍‌ଙ୍କ ଉପରେ ସମସ୍ତଙ୍କର ଆଖି ପଡ଼ିଯାଉଥିଲା। ତାଙ୍କ ପରି ଆଉ କେହି ଲୋକମାନଙ୍କର ଏପରି ଦୃଷ୍ଟି ଆକର୍ଷଣ କରୁ ନ ଥିଲେ। ପ୍ରତ୍ୟେକ ମଣିଷ ସହିତ ଠିକ୍ ଯେତିକି ମିଶିବା କଥା, ଯେତିକି ଆତ୍ମୀୟତା ସହିତ କଥାବାର୍ତ୍ତା କରିବା କଥା, ଜୁଲିଆ ଡୁବେର୍ନେଟ ତାହା ନିପୁଣ ଭାବରେ ଜାଣିଥିଲେ। ତାଙ୍କର ଆଚରଣ ବା ବାର୍ତ୍ତାଳାପରେ କଦାପି କୌଣସିଠାରେ କମ୍ ବେଶୀ ହୋଇଯାଉ ନଥିଲା। ବାହାରୁ ଦେଖିବାକୁ ତାଙ୍କର ଚେହେରାଟି ବେଶ୍ ପତଳା ଥିଲା, କିନ୍ତୁ ଉଚ୍ଚ ହୋଇ ବାହାରି ପଡ଼ିଥିବା ତାଙ୍କର ତଳିପେଟଟା ହେତୁ ତାଙ୍କୁ ଦେଖିଲେ କୌଣସି ଏକ ରାଜବଂଶ ରମଣୀ ପରି ମନେ ହେଉଥିଲା। ତାଙ୍କୁ ଦେଖି ଅନେକ ସମୟରେ ଲୋକମାନେ ମତାମତ ବି ପ୍ରକାଶ କରୁଥିଲେ --କହୁଥିଲେ, ଉଦର ଭିତରେ ଗୋଟାଏ କିଛି ବୃଦ୍ଧି ପାଉଚି ବୋଧହୁଏ।

"ମାଡ଼ାମ୍ ମଙ୍ଗି ଆମ ଆଡ଼କୁ ଅନାଇ ହାତ ହଲାଉଛନ୍ତି" - ମେରି କହିଲା।

"ନାଇଁ ଥାଉ, ଆଉ ଅଟକିବା ଦରକାର ନାହିଁ" - ଦାନ୍ତ ଚିପି ଚିପି ମାଆ ତା'ର କାନ ପାଖରେ ଫୁସ୍‌ଫୁସ୍ କରି କହିଲେ, "ସେମାନେ ଆର୍‌ବିବାଟ୍ ଘରର ଲୋକଗୁଡ଼ାଙ୍କ ସାଙ୍ଗରେ କଥାବାର୍ତ୍ତା ହେଉଛନ୍ତି। ସେ ଆର୍‌ବିବାଟ୍‌ମାନଙ୍କ ସହିତ ପରିଚିତ ହେବାକୁ ବା ଗପ କରିବାକୁ ମୋର ଆଦୌ ଇଚ୍ଛା ନାହିଁ। "

ଡୁବେର୍ନେଟ୍ ଘରର ରମଣୀମାନେ ଗୋଲ ବଜାର ଅତିକ୍ରମ କରି ତରତର ହୋଇ ଚାଲିଯିବାକୁ ଲାଗିଲେ। ସେଦିନ ଟାଣ ଖରାରେ ଦେହ ସିଝିଗଲା ପରି ଲାଗୁଥାଏ। ଗୋଲ ବଜାରଟା ଗୋଟାଏ ଧନୁ ପରି ପଦାକୁ ବାହାରି ପଡ଼ିଥାଏ, ଶତାବ୍ଦୀ ପରେ ଶତାବ୍ଦୀର ଦୁର୍ବହ

ଓଜନରେ ସତେ ଯେପରି ଝୁଲି ପଡ଼ିଥିବା ପରି ଦେଖାଯାଉଥାଏ। ଧୂଳି ପାଖରେ ଥିବା ଘରଗୁଡ଼ାକ ପରସ୍ପରକୁ ଠେଁସ ଦେଇ ରହିଲା ପରି ଠିଆ ହୋଇଥାନ୍ତି। ଏହିପରି ଭାବରେ ପରସ୍ପର ପରସ୍ପରକୁ ଅଟକାଇ ନଧରିଲେ ସେମାନେ ଯେ କେତେବେଳେ ତଳେ ଭୁସୁଡ଼ି ପଡ଼ନ୍ତେ, ତାହା କିଏ କହି ପାରିବ ! ସବୁ ଘରର ସବୁ ଝରକା ବନ୍ଦ ଥାଏ। ଯେକୌଣସି ମୁହୂର୍ତ୍ତରେ ଯେପରି ସେହିବାଟ ଦେଇ ଶତ୍ରୁମାନେ ପ୍ରବେଶ କରିବାର ଆଶଙ୍କା ରହିଚି, ଝରକାଗୁଡ଼ିକୁ ଚାହିଁଲାବେଳକୁ ଏହିପରି ମନେ ହେଉଥାଏ। ଏଣେତେଣେ ପଡ଼ିଥିବା ଅନ୍ତପୁଟା ଉପରେ ମାଛିଗୁଡ଼ାକ ଭଣଭଣ ହେଉଥାନ୍ତି। ଠିକ୍ ମଝିରେ ସମସ୍ତଙ୍କର ଦୃଷ୍ଟି ପଡ଼ିବା ଭଳି ଜାଗାରେ ତିନିଟା କୁକୁର ମରି ପଡ଼ିଥିବା ଗୋଟାଏ ମାଈ କୁକୁର ଦେହରେ ନାକ ମାରି କ'ଣ ଶୁଙ୍ଘିବାରେ ଲାଗିଥାନ୍ତି।

ସେମାନେ ଶେଷକୁ ଉପରେ ଖିଲାଣ ଦିଆ ହୋଇଥିବା ରାସ୍ତା ଉପରେ ଆସି ପହଞ୍ଚିଲେ। ହୁତୁହୁତୁ ହୋଇ ଜଳୁଥିବା ଖରାର ଚୁଲୀରୁ ବାହାରିଆସି ଏଠି ଟିକିଏ ଛାଇରେ ଚାଲିଲାବେଳେ ଯେପରି କାହାର ଆଶୀର୍ବାଦ ପାଇଲା ପରି ମନେ ହେଉଥାଏ। ସବୁ ଦୋକାନ ବନ୍ଦ କେବଳ କାଲିଅଟଙ୍କର ମିଷ୍ଟାନ୍ନ ଭଣ୍ଡାରଟି ଖୋଲା ଥାଏ। ମେରିର ଆଖି ସିଧା ଯାଇ ତା'ର ଏକ ପ୍ରିୟ ମିଷ୍ଟାନ୍ନ ଉପରେ ପଡ଼ିଗଲା। ସେଇଟି ହେଉଚି ମେରିର ସବୁଠାରୁ ପ୍ରିୟ ମିଷ୍ଟାନ୍ନ। ସବୁ ରବିବାର ଦିନ ଗୀର୍ଜାରୁ ଫେରୁଥିବାବେଳେ ଠିକ୍ ଏହିପରି ଘଟଣା ଘଟେ, ଅର୍ଥାତ୍ ସେ ନିୟମିତ ଭାବରେ ତାର ପ୍ରିୟ ମିଷ୍ଟାନ୍ନଟି କିଣି ଖାଇବାର ଅନୁମତି ପାଏ। ସେହି ମିଷ୍ଟାନ୍ନକୁ ଦେଖିଲେ ସେ ଭାବେ ସତେ ଯେପରି ମଧ୍ୟାହ୍ନ ଭୋଜନ ତା'ପାଇଁ ଅତି ସଯତ୍ନରେ ବଢ଼ାହୋଇ ଟେବୁଲ୍ ଉପରେ ଥୁଆ ହୋଇଚି। ପ୍ରତ୍ୟେକ ଥର ସେହି ମିଷ୍ଟାନ୍ନଟିକୁ କିଣିବାକୁ ମାଆ ସେଥିରେ ଆପତ୍ତି କରନ୍ତି, କିନ୍ତୁ ଆଜି ସେପରି କିଛି ଘଟିଲା ନାହିଁ।

"ଏଠାରେ ଅଟକିବାକୁ ଆଉ ଆମର ସମୟ ନାହିଁ, ବରଂ ମାଡ଼ାମ୍ ଆଗାଥେ ଓହ୍ଲାଇ ଯାଆନ୍ତୁ, ମିଷ୍ଟାନ୍ନଟା ନେଇ ପଛରେ ଯିବେ। ଆମେ କାଲିଅଟ୍ ଦୋକାନକୁ ଯାଉଥିବାବେଳେ ଯଦି ଆର୍‌ବିବାଟ୍ ଘରର ଲୋକମାନଙ୍କ ଆଖିରେ ସେହି ଦୃଶ୍ୟଟା ପଡ଼ିଯିବ ତେବେ କଥା ସରିଲା। ତାହାହେଲେ ତ ସେମାନେ ମହୁମାଛିଙ୍କ ପରି ଆସି ଆମ ଉପରେ ପଡ଼ିବେ। ମାଡ଼ାମ୍ ଆଗାଥେ, ତୁମେ ଟିକିଏ ଏହିଠାରେ ଓହ୍ଲାଇଯାଇ ମିଠେଇଟା ନେଇ ଘରକୁ ଯିବ। ଏଥିରେ ବୋଧହୁଏ ତୁମକୁ ବେଶୀକିଛି କଷ୍ଟ ହେବ ନାହିଁ। "

ସେତେବେଳକୁ ଗୃହଧାତ୍ରୀ ଓହ୍ଲାଇ ଗଲେଣି। କାମ୍‌ବ୍ଲେନେସ୍ ପରିବାରର ଲୋକ ହୋଇଥିଲେ ମଧ୍ୟ ସେ ଅନୁରୋଧ ରକ୍ଷା କରିବାରେ ସର୍ବଦା ଖୁବ୍ ତତ୍ପର ଥିଲେ। କାମ୍‌ବ୍ଲେନେସ୍ ପ୍ରଦେଶରେ ଗୃହଧାତ୍ରୀଙ୍କର ଜନ୍ମ ତାଙ୍କୁ କୌଣସି ଆଦେଶ ଦେଲାବେଳେ ବା ବୋଲ ବତାଇଲାବେଳେ ମାଡ଼ାମ୍ ତୁବେର୍ନେଟ୍ ଅବଶ୍ୟ ଏହି କଥାଟି ସ୍ମରଣ ରଖୁଥିଲେ। ମାଡ଼ାମ୍ ଆଗାଥେଙ୍କ ସମ୍ମୁଖରେ ସେ ଆପଣାକୁ ଟିକିଏ ବଡ଼ ବୋଲି ମନେ କରୁଥିଲେ, ତାଙ୍କୁ

ଟିକିଏ ଟିକିଏ ଅଡୁଆ ମଧ୍ୟ ଲାଗୁଥିଲା, ଗୋଟାଏ ପ୍ରକାରର କରୁଣା ଭାବ ମଧ୍ୟ ତାଙ୍କର ମନରେ ଜାତ ହେଉଥିଲା। ମାଡ଼ାମ୍ ଆଗାଥେ ଚାଲିଗଲାବେଳେ ସେ ପଛରୁ ଅନାଇ ଦେଖୁଥାନ୍ତି, ମୋଡ଼ି ମୋଡ଼ି ହୋଇଯାଉଥିବା ବ୍ଲାଉଜ୍ ଉପରୁ ତାଙ୍କର ଅପୃଥୁଳ ଗ୍ରୀବାଟା ବାହାରି ଯାଇଥାଏ, ପତଳା କଳାବାଳ କେରାକ ମୁଣ୍ଡପଛକୁ ପଡ଼ିଥାଏ, ସେ ପରିଧାନ କରିଥିବା ଗ୍ରୀଷ୍ମକାଳୀନ କୁର୍ତ୍ତାଟିର ତଳୁ ଦେହର ଗଢ଼ଣଟା ଅବିକଳ ଫୁଟି ଉଠୁଥାଏ, "ଠିକ୍ ଗୋଟିଏ ଚଢ଼େଇର ହାଡ଼ ପରି ହାଡ଼ଗୁଡ଼ିକ.....ଯେତେ ହେଲେ ଯାହାର ଯେମିତି ଜନ୍ମ ନା।....ତାକୁ କଦାପି କେହି ଏଡ଼ିଦେଇ ପାରିବ ନାହିଁ।"

ସେମାନେ ଗାଡ଼ିରୁ ଓହ୍ଲାଇ ସିଧା ଗୃହ କକ୍ଷରେ ପ୍ରବେଶ କଲେ। କାନ୍ଥଯାକ ସନ୍ତସନ୍ତିଆ ଦାଗ। ତଳ ମହଲାରେ ଥିବା ଅଫିସ ଘର ଧାଉଡ଼ିଟି ବର୍ତ୍ତମାନ ଆଉ କୌଣସି କାମରେ ଲାଗୁ ନାହିଁ, କାରଣ ଶ୍ରୀଯୁକ୍ତ ଆର୍‌ମାଣ୍ଡ ଡୁବେର୍ନେଟ ଏବେ ତାଙ୍କର ବ୍ୟାଙ୍କ୍ ବ୍ୟବସାୟ ଛାଡ଼ି ଦେଇଛନ୍ତି। କିଛି ଗୋଟାଏ କାମ ନକଲେ ଭଲ ଲାଗିବ ନାହିଁ ବୋଲି ସେ ଏହି ବ୍ୟବସାୟଟା ଆରମ୍ଭ କରିଥିଲେ -ମାଡ଼ାମ୍ ଡୁର୍ବେର୍ନେଟ ମନ୍ତବ୍ୟ ପ୍ରକାଶ କଲେ। ପୁଣି କହିଲେ, "କୌଣସି କାମ ନ କରି ମଧ୍ୟ ସୁଖରେ ଜୀବନ ନିର୍ବାହ କରିବାର ସମ୍ବଳ ଯାହା ହେଉ ଭଗବାନ ତାଙ୍କୁ ଦେଇଛନ୍ତି।" ଅଳ୍ପ ସଞ୍ଚୟଗୁଡ଼ିକୁ ସୁରୁଖୁରୁରେ ସଂଗ୍ରହ କରିବା ଉଦ୍ଦେଶ୍ୟରେ କରଜ ବ୍ୟାଙ୍କ୍ ରୂପକ ବଡ଼ ବଡ଼ ମାଛମାନେ ଯେତେବେଳେ ଥିରଜଳ ଭିତରେ ଆସି ପଶିଲେ ସେତିକିବେଳେ ସେ କାମରୁ ଅବସର ଗ୍ରହଣ କରିଛନ୍ତି। ଠିକ୍ ଏହି କାରଣଟି ପାଇଁ ସ୍ତ୍ରୀ ତାଙ୍କୁ ସବୁବେଳେ ଭାରି ପ୍ରଶଂସା କରନ୍ତି - ଯାହା ହେଉ ବଡ଼ ବଡ଼ କରଜ ବ୍ୟାଙ୍କ୍‌ର ଗ୍ରାସରେ ପଡ଼ିବାର ବିପତ୍ତିରୁ ସେ ଆପଣାକୁ ରକ୍ଷା କରି ପାରିଚନ୍ତି।

ସିଡ଼ି ବାଟଟା ବେଶ୍ ଅନ୍ଧାରୁଆ, ତଥାପି ଗାଡ଼ିରୁ ଓହ୍ଲାଇ ପ୍ରଥମ ମହଲାର ଘରକୁ ପଶିଗଲାବେଳକୁ ସତେ ଅବା ମଧ୍ୟାହ୍ନ ସମୟର ଆଖି ଝଲସାଇ ଦେଉଥିବା ଆଲୁଅରୁ ବାହାରକୁ ବାହାରି ଆସିଲା ପରି ମନେ ହେଲା। ଝରକା ଉପରେ ଦିଆ ଯାଇଥିବା ଢ଼ିଲା ଧଳା ପରଦାଗୁଡ଼ାକ ଯାହା ଟିକିଏ ଉଜ୍ଜ୍ୱଳ ଦେଖା ଯାଉଥାଏ। ବଡ଼ ପେଟୀ ଆଉ ସାନ ପେଟୀ ଉଭୟଙ୍କୁ ଏଇ ଝାପ୍‌ସା ଅନ୍ଧାରୁଆଟା ଭାରି ଆରେଇ ଯାଇଥାଏ। ଡ଼ୋର୍ଥେରେ ବାସ କରୁଥିବା ଲୋକମାନଙ୍କର ମାଛି ଆଉ ସୂର୍ଯ୍ୟାଲୋକ ହେଉଛି ସବୁଠାରୁ ବଡ଼ ବୈରୀ। ସେଥିପାଇଁ ବସନ୍ତ ପରେ ଗ୍ରୀଷ୍ମକାଳର ସମୟଟା ସେମାନେ ଏକ କୃତ୍ରିମ ସନ୍ଧ୍ୟାର ପରିବେଶ ସୃଷ୍ଟି କରି ବାସ କରନ୍ତି, ଆପଣାର ରୁଚିକୁ ଅନୁମୋଦନ କରନ୍ତି।

କକ୍ଷ ମଝିରେ ଥିବା ଟେବୁଲ ପାଖରେ ଆର୍‌ମାଣ୍ଡ ଡୁର୍ବେର୍ନେଟ୍ ଗୋଟିଏ ଚଉକି ଭିତରେ ଆପଣାର ଶରୀରଟାକୁ ନେଇ ଅଜାଡ଼ି ଦେଲେ। ପେନ୍‌ସିଲର ମୁନ ପରି ସରୁଆ ସୂର୍ଯ୍ୟକିରଣର ଗୋଟିଏ ଗାର ଛାତର କୋଉ ଫାଙ୍କବାଟେ ଆସି କୋଠରୀଟାଯାକ ଅତିକ୍ରମ

କରି ଠିକ୍ ତାଙ୍କର ମୁଣ୍ଡ ଉପରେ ଆସି ନାଚୁଥାଏ, ଚକ୍‌ଚକ୍ କରି ଆଖି ଝଲସାଇ ଦେଉଥାଏ। ସେହି କିରଣଗାର ଗୋଟାସୁଦ୍ଧା ଅଗଣିତ ଧୂଳିକଣା ନୃତ୍ୟ କରିବାରେ ଲାଗିଥାନ୍ତି।

"ଆଜି ଗୀର୍ଜା ପ୍ରାର୍ଥନାଟା ତ ଗୁଡ଼ାଏ ସମୟ ନେଇଗଲା।"

"ନିଜେ ଯାଇଥିଲେ ତୁମକୁ କଦାପି ଏପରି ମନେ ହୋଇ ନଥାନ୍ତା।"

ସେ ଗୋଟାଏ କାନ୍ଧକୁ କୁଞ୍ଚିତ କରି ଉପରକୁ ଟେକିଦେଲେ ଅଳ୍ପ କେତେ ମିନିଟ୍ ପୂର୍ବରୁ ତାଙ୍କର ଝିଅ ଠିକ୍ ଯେମିତି କରିଥିଲା। ତାଙ୍କୁ କିଛି କହିବାକୁ ହେବ -କ'ଣ କହିବାକୁ ହେବ ସେଇଟା ପ୍ରଧାନ କଥା ନୁହେଁ - କାରଣ ଏତିକିବେଳେ କିଛି ନ କହିଲେ ଜୁଲିଆ ତାଙ୍କର ଅତି ପ୍ରିୟ ବିଷୟଟି ସମ୍ବନ୍ଧରେ କଥାବାର୍ତ୍ତାର ପେଡ଼ି ଫିଟାଇଦେବେ। ସେତେବେଳେ ଆଉ ତାଙ୍କୁ ବନ୍ଦ କରିବାକୁ କାହାର ସାଧ୍ୟ ନଥିବ। ମଣିଷ କିପରି ହଠାତ୍ ମରିଯାଇ ପାରେ, ସେହି କଥା ସେ ଆରମ୍ଭ କରିଦେବେ। ଯାଜକଙ୍କୁ ଠିକ୍ ସମୟରେ ଡ଼ାକିବାକୁ କହି କିପରି ଲାରିଅର କଂସେଇ ସେହି ଅଖଣ୍ଡନୀୟ ପାପର ମୁହୂର୍ତ୍ତରେ ମୃତ୍ୟୁମୁଖରେ ପତିତ ହେଲା, ସେ ତାହାରି ଦୃଷ୍ଟାନ୍ତ ଆଣି ଥୋଇବେ। ..ଗୀର୍ଜାରେ ଆଜି ବେଶୀ ମଣିଷ ହୋଇଥିଲେ କି ନାହିଁ, ହଠାତ୍ ସେ ଏହି ପ୍ରଶ୍ନଟି ପଚାରିଲେ। ବାପାଙ୍କଠାରୁ ଯଥା ସମ୍ଭବ ଦୂରଛଡ଼ା ହୋଇ ମେରି ବସି ପଡ଼ିଥିଲା। ଚିମ୍‌ନି ଖୁଣ୍ଟର ଅଧା କାନ୍ଥ ଉପରେ ଥୁଆ ହୋଇଥିବା ଦର୍ପଣଟି ଆଗରେ ଠିଆ ହୋଇ ଶ୍ରୀମତୀ ଜୁଲିଆ ଡୁବେର୍ନେଟ ତାଙ୍କର ଟୋପିରୁ ଓ ବାଳରୁ ଦୁଇଟି ବଡ଼ ପିନ୍‌କଣ୍ଟା ବାହାର କରୁଥିଲେ।

"ଆଜି କ'ଣ ହେଲା ଜାଣିଚ ? ଆମେ ଠିକ୍ ବାହାରି ଆସିଲାବେଳେ ମଙ୍ଗି-ଘରର ମାଇପେ ଆରବିବାଟ୍ ଘରର ମାଇପିମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ। କେତେ ଅଡୁଆ କଥା କହିଲ ! ମଙ୍ଗି ପରିବାରକୁ ଲକ୍ଷ କରି ଅବଶ୍ୟ ମୋତେ ନମସ୍କାର ଜଣାଇବାକୁ ହେଲା, ତାଙ୍କ ପାଖରେ ଥିବା ଆର୍‌ବିବାଟ୍ ପରିବାର ମୁଁ ସେମାନଙ୍କୁ ମଧ୍ୟ ନମସ୍କାର କରୁଚି ବୋଲି ନିଶ୍ଚୟ ଅନୁମାନ କରି ନେଇଥିବେ।"

"କାଲିଅଟ୍ ଦୋକାନରୁ କିଛି ଭଲ ଜିନିଷ ପାଇଲ ?"

"ଆମେ ଭିତରକୁ ଯାଇନୁ, - ସେଇ ଆର୍‌ବିବାଟ୍‌ମାନଙ୍କର ଜାଲାରୁ। କିନ୍ତୁ ମାଡ଼ାମ୍ ଆଗାଥେ ମିଠେଇ ନେଇ ପଛରେ ଆସୁଛନ୍ତି।"

"କିନ୍ତୁ ଝିଅ, ତୋ'ର ଅତିପ୍ରିୟ ମିଷ୍ଟାନ୍ନଟି ଆଜି ଆସିବ ନା ନାହିଁ ? ତୋ'ର ସେହି ମିଷ୍ଟାନ୍ନଟି, ଯାହାକୁ ରଖିଦେଲେ ମଧ୍ୟାହ୍ନ ଭୋଜନ ଆସି ଟେବୁଲ ଉପରେ ବଢ଼ାହେଲା ବୋଲି ମନେହୁଏ।"

ଝିଅକୁ ଏତକ କହିଲାବେଳେ ତାଙ୍କର କଣ୍ଠସ୍ୱର ବଦଳି କ୍ରମେ କୋମଳ ହୋଇ ଆସିଲା।

"ତାହା ସହିତ କିଛି କଥାବାର୍ତ୍ତା କରନାହିଁ। ଜାଣିଚ, ଆଜି ଗୀର୍ଜାରେ ବସିଥିଲାବେଳେ ସେ ଦୁଇଥର ପଛକୁ ମୁହଁ ବୁଲାଇ ଅନାଇଚି।" ଝିଅଟିର ଆଖିରେ ସେତେବେଳକୁ ଲୁହ ବୁହେ କି ନବୁହେ। ସେ କହିଲା - "ତୋ' କଥା ଯିଏ ଶୁଣିବ ସେ ଭାବିବ ଗୀର୍ଜାରେ ମୁହଁ ବୁଲାଇ ପଛକୁ ଅନାଇବା ଗୋଟାଏ ମସ୍ତବଡ଼ ଅପରାଧ।"

"ଅତି ଜାଣି ଚତୁରୀ ହୋଇ ଆଉ କଥା କହନାହିଁ। ତୁ ଭଲକରି ଜାଣିଚୁ ଗୋଟାଏ ନିର୍ଦ୍ଦିଷ୍ଟ ଦିଗକୁ ମୁହଁ ବୁଲାଇବାର ଅର୍ଥ କ'ଣ। ବର୍ତ୍ତମାନ ଘରକୁ ଯାଇ ସମସ୍ତେ ସେହି ବିଷୟରେ କଥାବାର୍ତ୍ତା ହେଉଥିବେ। ଯାଆ ଦେଖିବୁ ମୋ' କଥା ସତ କି ମିଛ।"

ଶ୍ରୀଯୁକ୍ତ ଡୁବେର୍ନେଟ୍ ପଚାରିଲେ।

"ସେ ପୁଅଟି ସେଠାରେ ଥିଲା ନା କ'ଣ ?"

"ନଥିଲା ତ ଆଉ କ'ଣ ? ତା' ସାଙ୍ଗକୁ ପୁଣି ସେଇ ପ୍ଲାସାକ୍ ସିଏ ତ ତା'ର ସାଙ୍ଗ କେବେହେଲେ ଛାଡ଼ିବ ନାହିଁ।"

ଇତ୍ୟବସରରେ ଝିଅ ଝରକା ପାଖକୁ ଉଠିଯାଇ କାଚ ଉପରେ କପାଳଟିକୁ ମାଡ଼ିଦେଇ ବାହାରକୁ ଅନାଉଥିଲା। କଳା ପଡ଼ି ଯାଉଥିବା ତା'ର ନିଜର ମୁହଁଟି ଛଡ଼ା ଅବଶ୍ୟ ଦେଖିବା ପାଇଁ ଆଉ ସେପରି କିଛି ନଥିଲା। କାନ୍ଦ ସମ୍ଭାଳି ନପାରି ସେ ଦୁଆର ଆଡ଼କୁ ବାହାରିଲା।

"ସର୍ବନାଶ" -ଶ୍ରୀଯୁକ୍ତ ଡୁବେର୍ନେଟ୍ ଆପତ୍ତି କରି ଉଠିଲେ, "ଆଜି ମଧ୍ୟାହ୍ନ ଭୋଜନର ସବୁ ମଜା ଏଇଠି ନଷ୍ଟ ହୋଇଗଲା। ଆଜି ପୁଣି ଚୁଙ୍ଗୁଡ଼ିମାଛ ଖିଆ ଯିବାର କଥା ଥିଲା, ତୁମେ ତ ସେକଥା ଜାଣିଚ।"

"ଚୁଙ୍ଗୁଡ଼ିମାଛ। ତୁମର ମୂତ୍ରାଶୟକୁ ଭାରି ଖରାପ କରିବ।"

"ନାଇଁ, ମୁଁ ପିଲାଟି କଥା କହୁଥିଲି। ସବୁକଥାରେ ଖାଲି ତୁମେ ତିଳକୁ ତାଳ କରି ପକାଇବ।"

"ଏକଥାକୁ କ'ଣ ତୁମେ ତିଳ ବୋଲି ମନେ କରୁଚ ?"

"ଯେତେହେଲେ - ପିଲାଟା ସାଲୋନ୍‌ର ପୁଅ ତ। ତୁମେ ଶୁଣିଚ, ବର୍ତ୍ତମାନ ଡ଼ାକ୍ତର ସାଲୋନ୍ ତାଙ୍କ ସମ୍ପତ୍ତିର ଗୋଟାଏ ଲେଖାପଢ଼ା କରିବାକୁ ଯାଉଚନ୍ତି। ଫସଲ ଜମି ଏବଂ ଘରବାଡ଼ୀ ରହିଥିବା ପ୍ରାୟ ଛଅଶହ ଏକର ଜମି ସେ କେତେ ଶସ୍ତାରେ ପାଇବେ ଜାଣିଚ ?"

"ନା - ନା- ନା, ଆରମାଣ୍ଡ୍। ମୁଁ ବଞ୍ଚିଥିଲା ଯାଏ ତାହା କଦାପି ହୋଇ ପାରିବ ନାହିଁ।"

ହାତରେ ପୁଟୁଳାଟିଏ ଧରି ମାଡ଼ାମ୍ ଆଗାଥେ ଆସି ପହଞ୍ଚିଲେ। ପୁଟୁଳା ଭିତରେ ମିଷ୍ଟାନ୍ନ ବନ୍ଧା ହୋଇଥିଲା। ଅନ୍ଧାର ଘର ଭିତରେ ପେସ୍ତା ବାଦାମର ସୁଗନ୍ଧ ଖେଳିଗଲା। ଆର୍‌ମାଣ୍ଡ୍ ଉଠିଯାଇ ତାଙ୍କ ହାତରୁ ପୁଟୁଳାଟି ନେଲେ। ମେରି କୁଆଡ଼େ ଗଲା ବୋଲି

ମାଡ଼ାମ୍ ଆଗାଥେ ପଚାରିଲେ ।

"ତା'ରି ଘରେ ବସି କୁଁ କୁଁ ହେଉଥିବ । ଗୀର୍ଜାଭିତରେ ସେ ଦୁଇଥର ମୁହଁ ବୁଲାଇ ପଛକୁ ଅନାଇଥିଲା ବୋଲି ମୁଁ ବାପ ଆଗରେ କହିଦେଲି ଯେ ମୋର ପରା ଦୋଷ ହୋଇଗଲା । "

ମାଡ଼ାମ୍ ଆଗାଥେ ଯାଇକରି ତାକୁ ଆଣିବା ଲାଗି ଅନୁମତି ଚାହିଁଲେ, କିନ୍ତୁ ଆର୍‌ମାଣ୍ଡ ଡୁବେର୍ନେଟ୍ ମନା କରି କହିଲେ ଯେ ଏଥର ସମସ୍ତେ ମଧ୍ୟାହ୍ନଭୋଜନ ଆରମ୍ଭ କଲେ ଭଲ ହେବ । ଝିଅ ଯେମିତି, ତାକୁ ବୁଝାଇ ଶାନ୍ତ କରିବାକୁ ତ ଯୁଗେ ଚାଲିଯିବ ! ଆଉ ସେତେବେଳକୁ ମାଂସର ସୁଆଦ ଚାଲି ଯାଇଥିବ ।

"ଆଡ଼ିଲା ତା'ର ମୂର୍ତ୍ତି ଖୋଳିବା କାମ ଶେଷ କରୁକରୁ..."

"ହଉ, କିନ୍ତୁ ମନେ ରଖିଥା, ଆଜି ଆଗ ଚୁଙ୍ଗୁଡ଼ି ଲଗାଇବ ।"



# ଦୁଇ

ମେରିର କୋଠରୀ ଓ ଛାତ ମଝିରେ କେବଳ ଗୋଟିଏ ମହଲାର ବ୍ୟବଧାନ। ଗୀର୍ଜାକୁ ଯିବାପୂର୍ବରୁ ଝରକା ବନ୍ଦ କରିବାକୁ ସେ ଭୁଲି ଯାଇଥିଲା। ଆକାଶ-ଝରକା ଗୁଡ଼ାକ ମଧ୍ୟ ଅଧା ଖୋଲା ରହିଥିଲା। ଫିକା ପଡ଼ିଯାଇଥିବା ପୁରୁଣା ଟାଇଲ ଗୁଡ଼ାକର ସେ ପାଖରେ ଅନେକ ଦୂରରେ ପର୍ବତଟା ଏକ ନିଷ୍କଳ ଉଜ୍ଜ୍ୱଳତା ଭିତରେ ଘାଲେଇ ପଡ଼ିଥିଲା ପରି ବୋଧ ହେଉଥିଲା। ପିନ୍ଧିଥିବା ମସ୍‌ଲିନ୍‌କୁର୍ତ୍ତାଟାକୁ ସେ ଦେହରୁ କାଢ଼ି ପକାଇଲା। କେବଳ ଆପଣାର ଦୁଃଖଟାକୁ ଆବୋରି ଧରି ଅର୍ଦ୍ଧଉଲଗ୍ନ ହୋଇ ବିଛଣାରେ ପଡ଼ି ରହିବାକୁ ତା'ର ଇଚ୍ଛା ହେଉଥିଲା। ମୁହଁଟାକୁ ତକିଆ ଉପରେ ମାଡ଼ି ଦେଇ ଶୋଇଥିବାବେଳେ ହଠାତ୍ ତା'ର ଆଖିରୁ ଅସମ୍ଭାଳ ଲୁହ ବୋହିବାକୁ ଆରମ୍ଭ କଲା। ସେହି ଲୁହର ନିଶାରେ ସେ ଆପଣାକୁ ହଜାଇଦେଲା। କୁଆଡୁ ଗୋଟାଏ ଭଅଁର ଉଡ଼ିଆସି ଝରକାର କାଚ ଉପରେ କେତେଥର ମୁଣ୍ଡ ବାଡ଼େଇଲା, ତା'ପରେ ଅନନ୍ତ ନୀଳିମା ଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲା। ଏକ ନାରୀର ଶରୀର ରୂପେ କ୍ରମେ ପରିଣତ ହୋଇ ଆସୁଥିବା ସେହି ଶୈଶବଚପଳ ଶରୀରଟିକୁ ସାନ୍ତ୍ୱନା ଦେବାକୁ ବା ତା'ସହିତ ସମ-ଦୁଃଖୀ ହେବାକୁ ସେଠାରେ ଆଉ କେହି ନଥିଲେ। କାନ୍ଥରେ ମଡ଼ା ହୋଇଥିବା କାଗଜରେ ବାଇଗଣି ରଙ୍ଗର ଫୁଲ ପଡ଼ିଥାଏ। କୋଉ ଭଦ୍ରଙ୍କ ଅମଳରୁ ଯେ ସେଠାରେ ସେହି କାଗଜ ରହିଆସିଲାଣି, ସେକଥା ଆଉ କାହାରି ମନେ ନାହିଁ। ଯେଉଁ ଖଟଟି ଉପରେ ଝିଅଟିର ବିଛଣା ହୋଇଚି, ତାହାକୁ କୌଣସି ଜାହାଜର ଗୋଟିଏ ଖଟ ସହିତ ତୁଳନା କରାଯାଇ ପାରିବ। କେଉଁ ଶାଶ୍ୱତ ଅନାଦି କାଳରୁ ଯେପରି ଜାହାଜଟି ଏହି କ୍ଷୁଦ୍ର ଜୀବନହୀନ ଜଳସମତଳ ଉପରେ ଲଙ୍ଗର ପକାଇ ଠିଆ ହୋଇଚି। ଯେପରି ଏହି ସହରଟିରୁ ସମସ୍ତ ଯୌବନ କୁଆଡ଼େ ନିଷ୍କାଶିତ ହୋଇ ଚାଲିଯାଇଚି। ଡ଼ୋର୍ଥେ ସହରରେ ଯୌବନ ଲାଗି କୌଣସି ସ୍ଥାନ ନଥିଲା। ତକିଆ ଭିତରକୁ ମୁହଁଟାକୁ ସେହିପରି ମାଡ଼ି ଦେଇ ଝିଅଟି ବାଷ୍ପାରୁଦ୍ଧ କଣ୍ଠରେ କାହାର ନାମ ଉଚ୍ଚାରଣ କରିବାକୁ ଲାଗିଲା, ଗିଲେସ୍! ଗିଲେସ୍ ! ଗିଲେସ୍!....କେବଳ ତିନୋଟି ଥର ତା' ସହିତ ଦେଖା ହୋଇଚି। ଥରେ ମଙ୍ଗିକି ପରିବାର ତରଫରୁ ଆୟୋଜିତ ହୋଇଥିବା ବଣଭୋଜିରେ, ଆଉ ଦୁଇଟି ଥର ଲୋରୋଟ୍ ନଦୀର କୂଳରେ। ଶେଷ ଦୁଇଥରର ଦେଖାକୁ ହିଁ ପ୍ରକୃତରେ ଦେଖା ବୋଲି କୁହାଯାଇ ପାରିବ। ପୁଅଟି ନିକୋଲାସ୍ ପ୍ଲାସାକ୍ ସହିତ ନଦୀରେ ସ୍ନାନ କରୁଥିଲା। ତା'ର ସୁନାରଙ୍ଗର ଚମ ଉପରେ ବିନ୍ଦୁ ବିନ୍ଦୁ ହୋଇ ପାଣି ଚକଚକ କରୁଥିବାବେଳେ ତାକୁ ଦେଖି ଠିକ୍ ଗୋଟାଏ ଗଧିଆ ପରି ମନେ ହେଉଥିଲା। ପ୍ଲାସାକ୍ ଦେଖିବାକୁ ଭାରି ଅସୁନ୍ଦର। କେମିତି ଗୋଟାଏ ସିଠାସିଠା ରୂପ। ଗିଲେସ୍ ପାଟିକରି କହିଲା ଯେ ବର୍ତ୍ତମାନ ସେମାନେ

ଉପରକୁ ଉଠି ଲୁଗା ପଟା ପିନ୍ଧିବେ। ତେଣୁ ସେ ଯେପରି ସେମାନଙ୍କ ପାଇଁ ଅପେକ୍ଷା କରେ। ନିକୋଲାସ୍ ଖଣ୍ଡେ ଦୂରରେ ଠିଆ ହୋଇ ଅପେକ୍ଷା କରିଥିଲା। ଗିଲେସ୍ କହିଲା - "ସେ ଯାଉଚି ଦୁଆର ଜଗି ରହିବ"। ମାଡ଼ାମ୍ ଆଗାଥେ ଆସି ତା'ପାଖରେ ପହଞ୍ଚି ଯାଇଥିଲେ। କିନ୍ତୁ କଣ ଘଟୁଚି ନ ଘଟୁଚି ସବୁ ଦେଖି ଯେପରି ସେ କିଛି ଦେଖୁ ନଥିଲେ। ଆଉଥରେ ଏହିପରି ଭେଟ ହେବାପାଇଁ ସେଦିନ କଥା ହୋଇଥିଲା। ଓଃ, ସେଇ ଦିଓଟି ଘଣ୍ଟା ! ଆଉଥରେ ସେଇ ଅପୂର୍ବ ସମୟର ମାଧୁରୀ ଆସ୍ୱାଦନ କରିବାକୁ ହେବ, ଯାହା ହେଉ ପଛକେ ଆସ୍ୱାଦନ କରିବାକୁ ହିଁ ହେବ। ..କିନ୍ତୁ ସେ ? ..ସେ କଣ ଏମିତି କଷ୍ଟ ପାଉଚି ? ତିନିବର୍ଷ ହେଲା ଦିନେ ହେଲେ ସେ ରବିବାରର ଗୀର୍ଜା ପ୍ରାର୍ଥନାକୁ ଆସି ନଥିଲା। ତେବେ ବୁଝିବାକୁ ହେବ ଯେ ଏଥର ସେ କେବଳ ତାହାକୁ ଦେଖିବାକୁ ହିଁ ଗୀର୍ଜାକୁ ଆସିଥିଲା। ମାଡ଼ାମ୍ ଆଗାଥେ ସବୁ ବନ୍ଦୋବସ୍ତ କରିଦେବେ, ଶେଷରେ ସେ ଏତିକି କହିଗଲା। ସେତ କହିଲା ଯେ ମାଡ଼ାମ୍ ଆଗାଥେ ନିକୋଲାସ୍ ପ୍ଲାସାକ୍‌ର ପ୍ରେମରେ ପଡ଼ିଛି...ସତେ ଯେପରି ଯେ କୌଣସି ପୁରୁଷ ସହିତ ପ୍ରେମରେ ପଡ଼ିବାର ଶକ୍ତି ତାଙ୍କର ରହିଚି। ଆପଣାର ମନ ଭିତରେ ସେ କ'ଣ ସବୁ ଭାବୁଥିଲେ। ବର୍ତ୍ତମାନ ଗୋଟାଏ କଥା କହି ଠିକ୍ ପର ମୁହୂର୍ତ୍ତରେ କାହିଁକି ସେ ପୁଣି ତା'ର ଓଲଟା କଥା କହୁଥିଲେ, ତାଙ୍କର ମୁହଁର ଚାହାଣୀରୁ ଏକଥା କେହି ଜାଣି ପାରୁନଥିଲେ। ତାଙ୍କର ଖୁସୀ ହେଲେ ସେ ଗୋଟିସୁଦ୍ଧା ମିଠା ମଣିଷଟିଏ ହୋଇ ଯାଉଥିଲେ, ଠିକ୍ ଯେପରି ଅବିକଳ ମହୁ। କିନ୍ତୁ ପ୍ରକୃତରେ ଭିତରୁ ଦେଖିଲେ ତାଙ୍କୁ ଗୋଟିଏ ଅସଲ ବୁଢ଼ୀଆଣୀ ବୋଲି କହିବାକୁ ହବ। ଘାସ ଭିତରେ ଲୁଚି ରହିଥିବା ସାପ ସହିତ ତାଙ୍କର ତୁଳନା କରାଯାଇ ପାରିବ। ତାଙ୍କୁ ଦେଖିଲେ ମନେ ହେଉଥିଲା ଯେପରି ଭିତରୁ କ'ଣ ଗୋଟାଏ ତାଙ୍କୁ ଖାଇଖାଇ ଯାଉଛି। ତାଙ୍କର କ'ଣ ଆଉ କର୍କଟରୋଗ ହୋଇଚି କି ? ସେ ମରିଯାଆନ୍ତେ କି। ନାଇଁ -ନାଇଁ ସେପରି ପାପ ଚିନ୍ତାକୁ ମନରେ ସ୍ଥାନ ଦେବା ଉଚିତ ହେବନାହିଁ। ନା ସେ ମରି ଯାଆନ୍ତୁ ବୋଲି ମୁଁ କଦାପି ଚାହେଁ ନାହିଁ। ଖାଲି ରହସ୍ୟରେ ମୁଁ ସେକଥା ଭାବୁଥିଲି ନା...ହେ ଭଗବାନ, ତୁମେ ମାଡ଼ାମ୍ ଆଗାଥେକୁ ବଞ୍ଚାଇ ରଖିଥାଅ।



# ତିନି

ଠିକ୍ ସେତିକିବେଳେ, ଗୋଟିଏ ଯୁବତୀ ବାଳିକା ବିଛଣା ଉପରେ ଅର୍ଦ୍ଧ-ଉଲଗ୍ନ ଅବସ୍ଥାରେ ପଡ଼ିରହି ଯେତେବେଳେ ତା' ଲାଗି ତୀବ୍ର ସନ୍ତାପରେ ସନ୍ତାପିତ ହେଉଥିଲା, ଗିଲେସ୍ ସୋମ୍ ଫ୍ରିଫେକ୍ଟର୍ ରାସ୍ତାରେ ଅବସ୍ଥିତ ତା'ର ବନ୍ଧୁ ନିକୋଲାସ୍‌ଙ୍କ ଘରର ଗୋଟିଏ ଟେବୁଲ ପାଖରେ ବସିଥିଲା। ତା'ର ବୟସ ତେଇଶି ବର୍ଷ, ଏହି ବୟସର ଯେକୌଣସି ଯୁବକ ସହିତ ତା'ର ଚମତ୍କାର ତୁଳନା କରାଯାଇ ପାରିବ। କୁନିଝିଅ ମେରି ଓ ନିକୋଲାସ୍‌ର ଆଖିକୁ ଛାଡ଼ିଦେଲେ ଆଉ କାହାରି ଆଖିରେ ଅଦ୍ଭୁତ ବା ଅପୂର୍ବ ପରି ଲାଗିବା ଭଳି ତା'ଭିତରେ ସେପରି କିଛି ନଥିଲା। ନିକୋଲାସ୍‌ର ମାଆ ମାଡ଼ାମ୍ ପ୍ଲାସାକ୍ ଅବଶ୍ୟ ତାକୁ ଭଲ ପାଉଥିଲେ। କିନ୍ତୁ ତାଙ୍କର ମତରେ କୌଣସି ମୂଲ୍ୟ ନଥିଲା ବୋଲି କହିବାକୁ ହେବ। ସ୍ଥାନୀୟ ଭଦ୍ର ସମାଜର ଜଣେ ଯୁବକ ଭାବରେ ସେ ଗିଲେସକୁ ଜାଣିଥିଲେ। ଡ଼ାକ୍ତର ସାଲୋନ୍ ହେଉଛନ୍ତି ନଗର-ସଭାର ଜଣେ ସଦସ୍ୟ, ତେଣୁ ଏଡ଼େ ବଡ଼ ଜଣେ ଲୋକଙ୍କର ପୁଅ ଯେ ନିକୋଲାସ୍‌ର ବନ୍ଧୁ ହୋଇପାରିଚି, ଏଥିଲାଗି ସେ ଆପଣାର ଭାଗ୍ୟକୁ ଧନ୍ୟବାଦ ଦେଉଥାନ୍ତି। ସେ ପୁଣି ତାଙ୍କ ଘରେ ମଧ୍ୟାହ୍ନଭୋଜନ କରିବ ବୋଲି ଆଜି ରାଜି ହୋଇ ଆସିଚି। ଟେବୁଲ୍ ଉପରେ ବାଢ଼ୁଥିବା ପ୍ରତ୍ୟେକ ଖାଇବା ଦ୍ରବ୍ୟର ପ୍ରଶଂସା ସେ ଆଜି ତା'ର ମୁହଁରୁ ଶୁଣିବାକୁ ପାଇବେ, ଏପରି ସୁଆଦିଆ ମାଂସଭଜା ସେ ଆଗରୁ କେବେ ଖାଇ ନଥିଲା। ତେଣୁ ଆଉଥରେ ସେହି ଭଜାକୁ ତା'ର ଥାଳୀରେ ଆଣି ଦେବାକୁ ସେ ଅନୁରୋଧ କରିବ। ଏହିସବୁ କଥା ଭାବି ଭାବି ସେ କମ ସନ୍ତୋଷ ଲାଭ କରୁ ନଥିଲେ।

"ଶ୍ରୀମାନ୍ ଗିଲେସ୍, ତୁମେ ବୋଧ ହୁଏ ଖାଲି ବାହୁଲ୍ୟ କରି କହୁଚ।" ତୁମ ଘରେ ତ ତୁମକୁ କେତେକେତେ ବଢ଼ିଆ ଜିନିଷ ଖାଇବାକୁ ମିଳୁଥିବ। ଅବଶ୍ୟ ବେଳେ ବେଳେ ଖରାପ ବି ମିଳୁଥିବ। କାରଣ ମୋର ବୃଦ୍ଧ ସ୍ୱାମୀ ପରା ବେଳେବେଳେ କହୁଥିଲେ, ଧନୀମାନଙ୍କ ଘରେ ଯେ ସବୁଦିନେ ଆମଠାରୁ ଭଲ ଖାଆନ୍ତି, ସେକଥା କୁହାଯାଇ ପାରିବ ନାହିଁ।

ଗିଲେସ୍ ପ୍ରଥମେ ଭାବୁଥିଲା ଯେ ଏଭଳି କଥାମାନ ଶୁଣି ବୋଧହୁଏ ନିକୋଲାସ୍‌କୁ ଅଡୁଆ ଲାଗୁଥିବ। କିନ୍ତୁ ଆପଣାର ମାଆ ବିଷୟରେ ନିକୋଲାସ୍ ବିଲ୍‌କୁଲ ଅନ୍ଧ ଥିଲା ବୋଲି କୁହାଯାଇପାରେ। ତାଙ୍କର ଏହି ବଖରାଟି ଖାଇବା ଓ ରହିବା ଉଭୟ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିଲା। ସେଠାରେ ଦିନେ ଭୁଲରେ ମଧ୍ୟ ସୂର୍ଯ୍ୟକିରଣ ପଡୁନଥିଲା, ସବୁବେଳେ ଭାରି ଅନ୍ଧାରୁଆ ଓ ସନ୍ତସନ୍ତିଆ ଲାଗୁଥିଲା। ଘରର କାନ୍ଥରେ ଗୋଟିଏ ଘଣ୍ଟା ଟଙ୍ଗା ହୋଇଥିଲା,

ଘୁଣ ଖାଇଯାଇଥିବା କାଠର ଫ୍ରେମ୍ ଭିତରେ ରଙ୍ଗୀନ୍ ଲେଖା କେତେଟା ମଧ୍ୟ ଝୁଲୁଥିଲା। ଏହିସବୁ ବିବରଣୀ ଦେଇ ଆପଣାର କବିତା ଭିତରେ ନିକୋଲାସ୍ ତାଙ୍କ ଦରିଦ୍ର ଅଥଚ ପବିତ୍ର ଘରର ବର୍ଣ୍ଣନା ଅନେକ ସମୟରେ କରୁଥିଲା, ଯେଉଁ ଘରେ କି ପ୍ରତ୍ୟେକ ସାମଗ୍ରୀ ତା'ର ନିଜସ୍ୱ ଏକ ନିର୍ବାକ ଜୀବନ ସ୍ପନ୍ଦନରେ ସ୍ପନ୍ଦିତ ହୋଇ ଉଠୁଥିଲା। ଠିକ୍ ସେହିପରି ତା'ର ବୃଦ୍ଧା ମାଆ ମଧ୍ୟ ଏକ ସୌନ୍ଦର୍ଯ୍ୟସମୁଜ୍ଜ୍ୱଳ ବିନମ୍ରତାର ପ୍ରତିମୂର୍ତ୍ତିରେ ରୂପାନ୍ତରିତ ହୋଇ ଯାଇଥିବା ପରି ତାକୁ ବୋଧ ହେଉଥିଲା।

ନିକୋଲାସ୍ ଆଖିରେ ଗିଲେସ୍ ସବୁ ଯୌବନ, ସବୁ କମନୀୟତା ଓ ଜୀବନର ସମସ୍ତ ଭୟାବହ ଭଙ୍ଗୁରତାର ପ୍ରତୀକ ହୋଇ ରହିଥିଲା। .....ମନ ଭିତରେ କୌଣସି ପ୍ରକାରେ ବିବ୍ରତ ନ ହୋଇ ସେ ଜୀବନର ଏହି ପଳାୟମାନ ବିସ୍ମୟ ଉପରେ ଦୃଷ୍ଟିପାତ କରୁଥିଲା, ତା' ଉପରେ ସମୟର ହାତ ବାଜିବା ଆରମ୍ଭ ହୋଇ ଯାଇଥିଲା। ସେ ଗିଲେସ୍‌କୁ ଭାରି ଭଲ ପାଉଥିଲା। ସେ କ'ଣ ଖାଉଥିଲା, ସେହି ବିଷୟରେ ତା'ର କୌଣସି କାନ ନଥିଲା। ତା'ର ମାଆ କ'ଣ ସବୁ କହୁଥିଲେ ଓ ଗିଲେସ୍ କ'ଣ ସବୁ ଉତ୍ତର ଦେଉଥିଲା, ସେ ସବୁ ସେ ଆଦୌ ଶୁଣି ପାରୁ ନଥିଲା। ଗିଲେସ୍ ତାଙ୍କ ଘରେ ସେଇଠି ବସିଥିଲା, ଏତିକି ଜାଣିବା ତା' ପାଇଁ ଯଥେଷ୍ଟ ଥିଲା। ତେଣୁ ବର୍ତ୍ତମାନ ଗୋଟିଏ ବୋଲି ମୁହୂର୍ତ୍ତ ନଷ୍ଟ କରିବା ଉଚିତ ନୁହେଁ। ଯିଏ ଗିଲେସ୍‌କୁ ତାଙ୍କ ଘରକୁ ଆଣିଲେ, ତା'ର ହୃଦୟକୁ ଆଣିଲେ, ତା'ର ଜୀବନକୁ ଆଣିଲେ, ସେହିଠାରେ ତାକୁ ସବୁଦିନ ପାଇଁ ରଖିଲେ, ସେହି ଭଗବାନଙ୍କର ମଙ୍ଗଳ ହେଉ। ପାରିସ୍‌ରେ ଥିଲାବେଳେ ଦୁହିଁଙ୍କର କ୍ୱଚିତ ଭେଟ ହୁଏ, ସେହି ଭେଟରେ ଆଦୌ ମନବୋଧ ହୁଏ ନାହିଁ। ....ନିକୋଲାସ୍ ଯେଉଁ ସ୍କୁଲରେ ସହକାରୀ ଶିକ୍ଷକର କାର୍ଯ୍ୟ କରୁଥିଲା, ସେହି ସ୍କୁଲରେ ତାକୁ ରାତିରେ ମଧ୍ୟ ଶୋଇବାକୁ ପଡୁଥିଲା। ଦିନଯାକ ଅଧ୍ୟାପକମାନଙ୍କ କ୍ଲାସକୁ ଯିବାରେ ଗିଲେସ୍ ବ୍ୟସ୍ତ ରହୁଥିଲା। ତାହାଛଡ଼ା ଆହୁରି ଅନ୍ୟାନ୍ୟ ଲୋକଙ୍କ ଲାଗି ମଧ୍ୟ ତାଙ୍କୁ ସମୟ ଦେବାକୁ ପଡୁଥିଲା। ଅବଶ୍ୟ ତା' ସହିତ ଖୁବ୍ ବେଶୀ ସମୟ ନ କଟାଇବା ବରଂ ଭଲ ଥିଲା। ସଂସାରରେ ଯିଏ ଯାହାକୁ ସବୁଠାରୁ ଅଧିକ ଭଲ ପାଏ, ତାହାଠାରୁ ଟିକିଏ ବିଚ୍ଛିନ୍ନ ହୋଇ ରହିବା ଅବଶ୍ୟ ଭାରି ଭଲ କଥା। ବିଚ୍ଛିନ୍ନ ଓ ଏକାକୀ ରହି ମଧ୍ୟ ମଣିଷ ତଥାପି ଯାହାକୁ ଭଲ ପାଇପାରେ, କେବଳ ତାହାକୁହିଁ ସେ ପ୍ରକୃତରେ ଆପଣାର କରି ରଖି ପାରିବ। ନିକୋଲାସ୍ ଅନେକ ସମୟରେ ତା'ରି ଏହି ବିଶ୍ୱାସକୁ ଅନେକଙ୍କ ପାଖରେ ପ୍ରକଟ କରୁଥିଲା।

କିନ୍ତୁ ଛୁଟିରେ ଡ୍ରୋର୍ଥେକୁ ଆସିଲେ ତା'ର ବନ୍ଧୁ ପୂର୍ଣ୍ଣଭାବରେ ତା'ର ହୋଇ ପାରୁଥିଲା। ଅବଶ୍ୟ ମେରୀ ପ୍ରତି ତା'ର ପ୍ରେମ ବ୍ୟତୀତ ସେ ଆଉ କୌଣସି ବିଷୟରେ କେବେ କଥାବାର୍ତ୍ତା କରୁ ନଥିଲା। ମେରୀ ହିଁ ସେହି ବର୍ଷର ଉଜ୍ଜ୍ୱଳ ଓ ସ୍ୱତନ୍ତ୍ର ତାରକା ଥିଲା। ନିକୋଲାସ୍ ତା'ର କଥା ଶୁଣୁ, ଏତିକି ହେଲେ ଗିଲେସ୍ ସନ୍ତୁଷ୍ଟ। ନିକୋଲାସ୍‌ର ସାହଚର୍ଯ୍ୟ ତାକୁ

କେବେହେଲେ ନୀରସ ବା ବିରକ୍ତିକର ବୋଧ ହେଉ ନଥିଲା। କାରଣ କେବଳ ନିକୋଲାସ୍ ସହିତ ହିଁ ସେ ମେରୀ ବିଷୟରେ କଥାବାର୍ତ୍ତା ହୋଇ ପାରୁଥିଲା। ବର୍ତ୍ତମାନ ମଧ୍ୟ ସେ ସେହି ବିଷୟ ନପକାଇ ରହି ପାରିଲା ନାହିଁ। ମାଡ଼ାମ୍ ପ୍ଲାସାକ୍ ମଝିରେ ମଝିରେ ରୋଷେଇ ଘରୁ କାର୍ଯ୍ୟାନ୍ତରରେ ବାହାରକୁ ଚାଲି ଯାଉଥିଲେ। ସେତିକିବେଳେ ଗିଲେସ୍ ଆପଣା ମନର ନିବିଡ଼ତମ କଥାମାନ କହିବାର ସୁଯୋଗ ପାଉଥିଲା।

"ସେ ଦୁଇଥର ମୁହଁ ବୁଲାଇ ପଛକୁ ଅନାଇଥିଲା," - ସେ କହିଲା।

"ନାଇଁ। ତିନିଥର।"

"ତୁ ଠିକ୍ କହୁଚୁ ? - କିନ୍ତୁ ଗାଲିଗାଇ ମଧ୍ୟ ଫେରି ଚାହିଁଲା। ଓଃ - ସେତେବେଳେ ମୁଁ ଭାବୁଥାଏ ଯେ ଏଥର ତୋ'ର ମୁହଁଟା ଲାଜରେ ବଡ଼ ଫିକା ପଡ଼ିଯିବ।"

"ନାଇଁ ଗିଲେସ୍, ତୋତେ ମୋର ଏକାନ୍ତ ଅନୁରୋଧ, ତୁ ଆଉ ମୋ' ଆଗରେ ମାଡ଼ାମ୍ ଆଗାଥେଙ୍କ ବିଷୟରେ କିଛି କହିବୁ ନାହିଁ।"

"ଗାଲିଗାଇ ତୋତେ ଭଲ ପାଏ, କିନ୍ତୁ ସେଥିରେ ମୁଁ କି ଦୋଷ କଲି ?"

"ତୁମେମାନେ ତାଙ୍କୁ କାହିଁକି ଗାଲିଗାଇ ବୋଲି କହୁଚ ?" ମାଡ଼ାମ୍ ପ୍ଲାସାକ୍ ପଚାରିଲେ।

ଆପଣାର ଦୁଇ ହାତରେ ନିକୋଲାସ୍ ମୁହଁଟାକୁ ଲୁଚାଇ ରଖିଲା।

"ଶୁଣ ଗିଲେସ୍, - ଛୁଟିଦିନ ପ୍ରାୟ ଶେଷ ହୋଇ ଆସିଲା ବୋଲି ଭାବିଲା ବେଳକୁ ମନରେ କେବଳ ଏତିକି ଆନନ୍ଦ ଆସୁଚି ଯେ ଏଥରକ ତା' ଆଉ ମୋ' ଭିତରେ ଶହଶହ ମାଇଲ ବ୍ୟବଧାନ ହୋଇ ଯିବ।....ମୁଁ ତାକୁ ଅପେକ୍ଷା କରି ନଥିଲାବେଳେ ସେ ଆଉ ହଠାତ୍ ଆସି ପହଞ୍ଚିଯାଇ ପାରିବ ନାହିଁ...ସେ..ସେ ମୋର କୋଠରୀ ଉପରେ ବଳାତ୍କାର କରିବାକୁ ଆସେ।"

"ତୁ ପରା ମୋତେ ଜବାବ ଦେଇଥିଲୁ ଯେ ଆଉ ତା' ସହିତ କହଳ କରିବୁ ନାହିଁ ? ଆମର ଏକମାତ୍ର ଆଶା ଓ ନିର୍ଭର ତ ସେଇ - ମୋର ଆଉ ମେରୀର। ସେ ଯଦି ତୋ'ର କୋଠରୀ ଉପରେ ବଳାତ୍କାର କରୁଥାଏ, - ଆଉ ତୋ' ଉପରେ ମଧ୍ୟ, -ତେବେ ତ ତାହାକୁ ବଡ଼ ଦୁର୍ଭାଗ୍ୟର କଥା ବୋଲି କହିବାକୁ ହେବ।"

"ଓଃ, ଗିଲେସ୍ !"

ଗିଲେସ୍ ହସିଲା। ବନ୍ଧୁ ମନରେ କୌଣସି ପ୍ରକାର ଗୋଟାଏ ଆତଙ୍କ ବା ଆନ୍ଦୋଳନ ସୃଷ୍ଟି କରି ପାରିଲେ ସେ ଠିକ୍ ଏମିତି ହସେ।

"ତୁମେ ଦି'ଜଣ ବସି ଏଠାରେ କ'ଣ କଥାବାର୍ତ୍ତା ହେଉଚ ?" - ମାଡ଼ାମ୍ ପ୍ଲାସାକ୍ ପଚାରିଲେ।

ତାଙ୍କର ହାତରେ ଗୋଟିଏ ଥାଳୀରେ ସେ କୋଳି ଦିଆ - ହୋଇଥିବା ପିଠା ଥାଳିଏ ଧରିଥାନ୍ତି। ଏ ପିଠା ଡ଼ୋର୍ଥେର ଲୋକମାନଙ୍କ ପକ୍ଷରେ ଏକ ଅତି ଲୋଭନୀୟ ବସ୍ତୁ ଥିଲା। ପେଟେ ଖାଇସାରିବା ପରେ ମଧ୍ୟ ଏଠାରେ ଯେକୌଣସି ଲୋକ ଏହାକୁ ଟପ୍‌ଟାପ୍ ପାଟିରେ ପକାଇ ଦେଇ ପାରିବ।

"ଆମେ ମାଡ଼ାମ୍ ଆଗାଥେଙ୍କ ବିଷୟରେ କଥାବାର୍ତ୍ତା ହେଉଥିଲୁ" - ଗିଲେସ୍ ଉତ୍ତର ଦେଲା।

"ଓହୋ, ତାଙ୍କ କଥା ?"

"ତାଙ୍କୁ କ'ଣ ଆପଣ ଭଲ ପାଆନ୍ତି ନାହିଁ ?" ବାହାରେ ବେଶ୍ ନିରୀହତାର ଅଭିନୟ କରି ଗିଲେସ୍ ପଚାରିଲା।

"ଏଠାକୁ ତ ସେ ଯେତେବେଳେ ଇଚ୍ଛା ସେତେବେଳେ ଆସୁଚନ୍ତି। ସତେ ଅବା ଆମ ଘରକୁ ସେ ଗୋଟାଏ ଧର୍ମଶାଳା କରି ପାଇଚନ୍ତି। ମୋତେ ତ ସିଏ କେତେବେଳେ ହେଲେ ପଦେ କଥା କହନ୍ତି ନାହିଁ, ସିଧା ନିକୋଲାସ୍‌ର କୋଠରୀକୁ ଚାଲି ଯାଆନ୍ତି। ତାଙ୍କର ସାହସ ତ କିଛି କମ୍ ନୁହେଁ। ମୋ' ପୁଅ ଉପରେ ସିଏ କ'ଣ ପାଇଁ ଆଖି ପକାଇଚନ୍ତି କେଜାଣି ?"

"ଥାଉ, ମାଆ, ଥାଉ !" ଆତଙ୍କିତ ହୋଇ ନିକୋଲାସ୍ ଚିତ୍କାର କରି ଉଠିଲା।

ଏଥର ଆସିଥିଲାବେଳେ ତାଙ୍କୁ ମୁଁ ଭଲ କରି ପଦେ ଶୁଣାଇ ଦେଇଚି। ମୋ' ମନକୁ ଯାହା ଆସିଲା, କହିଚି। ଆଉ ଦିନେ ସେ ମୋ' ଘରର ପାହାଚ ମାଡ଼ିବେ ନା ?"

କିନ୍ତୁ ମାଡ଼ାମ୍ ପ୍ଲାସାକ୍। ମୁହଁଟାକୁ ଗମ୍ଭୀର କରି ଗିଲେସ୍ କହିଲା, "ଆପଣ ତ ଜାଣିଥିବେ ସେ ହେଉଛନ୍ତି ଶ୍ରୀଯୁକ୍ତ ଡ଼ି କାମ୍‌ବ୍ଲେନଙ୍କ୍‌ର ଝିଅ...ଜଣେ କାଉଣ୍ଟଙ୍କର ଝିଅ।"

"ମୁଁ ସେ ସବୁ ଭଲ କରି ଜାଣିଚି। ଭାରି ବଡ଼ିଆ କାଉଣ୍ଟ ସେ। ଆପଣାର ଝିଅକୁ ପୁଣି ନିଜେ ଉପାର୍ଜନ କରି ଖାଇବାକୁ ସେ ଏଠାକୁ ପଠାଇ ଦେଇଛନ୍ତି। ଆଉ କାମ ବୋଲି କାମ ? ଶ୍ରୀଯୁକ୍ତ ଡୁବେର୍ନେଟ୍‌ଙ୍କ ଘରେ ସିଏ କି କାମ କରୁଚନ୍ତି, ସେ କଥା ତ ଆମେ ସମସ୍ତେ ଜାଣିଚୁ।"

ନିକୋଲାସ୍ ଆଉ ଥରେ କହିଲା -"ଓଃ, ସେତିକି ଥାଉ।" ଏତିକି କହି ସେ ଆଖି ବୁଜି ରଖିଲା, ଆପଣ ମାଆକୁ ସେପରି ଅବସ୍ଥାରେ ଦେଖିବାଟା ତା'ର ଆଦୌ ସହ୍ୟ ହେଲା ନାହିଁ। ଗିଲେସ୍ ଚୁପ ହୋଇ ବସି ଏହି ଦୃଶ୍ୟର ପୂରା ମଜାଟା ଉପଭୋଗ କରୁଥାଏ। ବିଚାରି ଗାଲିଗାଇ। ଦୀର୍ଘ ନିଃଶ୍ୱାସ ପକାଇ ସେ ଭାବୁଥାଏ। ମାଡ଼ାମ୍ -ପ୍ଲାସାକ୍ ପୁଣି ପଚାରିଲେ, ଆଚ୍ଛା, ତାଙ୍କର ଏ ଗାଲିଗାଇ ନାଆଁଟା କେଉଁଠାରୁ ଆସିଲା ?"

"ଆପଣ ତ ଜାଣିଥିବେ, ମାଡ଼ାମ୍ ପ୍ଲାସାକ୍, ସେ ପରା ଥରେ ଜଣେ ସାମନ୍ତଙ୍କୁ ବିବାହ କରିଥିଲେ ।"

"ହଁ, ଜାଣିଚି। ସେଇ ସାମନ୍ତଟି, ଯିଏ ତାଙ୍କୁ ସେହି ବିଭାଘର ଦିନ ରାତିରେ ଛାଡ଼ିଦେଇ ଚାଲିଗଲା। ବାହାଘର ହୋଇ ସାରିବା ପରେ ତାଙ୍କର ଆଈବୁଢ଼ୀ ତାକୁ ଯେଉଁ ଟଙ୍କା ଦେବବୋଲି ପ୍ରତିଶ୍ରୁତି ଦେଇଥିଲା, ସେହି ଟଙ୍କାଟି ପାଇବା ପର୍ଯ୍ୟନ୍ତ ସେ ସତେ ଅବା ଅପେକ୍ଷା କରି ରହିଥିଲା। ପରିମାଣ ତ କିଛି କମ ନୁହେଁ, -କୋଡ଼ିଏ ଲକ୍ଷ। ଆଉ ଠିକ୍ ସେହିଦିନ ରାତିରେ ବୋହୂ ଲୁଗା ପାଲଟୁଥିବା ସମୟରେ ସେ ଚମ୍ପଟ ଦେଲା।

"ସତେ ?" -ଗିଲେସ ବିସ୍ମୟ ପ୍ରକାଶ କଲା।

ନିକୋଲାସ୍ ଅତି କରୁଣ ଦୃଷ୍ଟିରେ ତା' ଆଡ଼କୁ ଅନାଇଲା। କଥା କହିଲାବେଳେ ତା'ର କଣ୍ଠ ସ୍ୱରରେ ତିରସ୍କାରର ଭାବ ପ୍ରକଟ ହୋଇ ଉଠୁଥିଲା।

"କିନ୍ତୁ ଗିଲେସ୍, ମାଆ ଯେତିକି ଜାଣିଚନ୍ତି, ସେ ବିଷୟରେ ତ ତୁ ମଧ୍ୟ ସେତିକି ଜାଣିଚୁ।"

ମାଡ଼ାମ୍ ପ୍ଲାସାକ୍ ତାଙ୍କର ଗୋଜିଆ ନାକଟାକୁ ଟେକିଦେଲେ। (ସେତେବେଳକୁ ସେ ପିଠା କାଟିବାରେ ବ୍ୟସ୍ତ ଥାଆନ୍ତି। ) ଚଷମା ତଳେ ଥିବା ତାଙ୍କର ଆଖି ଦୁଇଟା ଚକଚକ ଦେଖା ଯାଉଥାଏ।

"ଆଉ ତୁମେ କଣ ଭାବୁଚ ସେ ଏକା ପଳାଇଗଲା ?"

"ତେବେ ସାଙ୍ଗରେ ଆଉ କିଏ ଥିଲା ?" -ଗୋଟାଏ ପବିତ୍ରତାର ଭାବ ଦେଖାଇ ଗିଲେସ୍ ପଚାରିଲା।

କିନ୍ତୁ ନିକୋଲାସ୍ ପୁଣି ଥରେ ପ୍ରତିବାଦ କଲା, "ଓଃ, ଶୁଣ୍ ଗିଲେସ୍, ମାଆଙ୍କୁ ଏହି ବିଷୟରେ କୌଣସି କଥା କହିବାର ସୁଯୋଗ ଦେବା ତୋ'ର ଆଦୌ ଉଚିତ ନୁହେଁ।"

"ଅବଶ୍ୟ ଆଉ କୌଣସି ଯୁବତୀ ସହିତ ସେ ଯାଇ ନଥିଲା।" ଗିଲେସ୍ ବି ସହଜେ ଛାଡ଼ିବାର ନୁହେଁ। ସେ ପଚାରିଲା -

"ତେବେ ତା' ସାଙ୍ଗରେ କିଏ ଗଲା ?"

"ତୁମେ ଯଦି ସେକଥା ନ ଜାଣିଥାଅ, ତେବେ ମୋର ସେ କଥା ତୁମକୁ କହିବା ଅନୁଚିତ। "

ତା'ର କଥାଟା ଟିକିଏ ସୀମା ଡ଼େଇଁଗଲା ବୋଲି ମାଡ଼ାମ୍ ପ୍ଲାସାକ୍ଙ୍କର ସ୍ୱରରୁ ଗିଲେସ ଜାଣିପାରିଲା। ଆକାଶ ଝରକା ଗୁଡ଼ାକୁ ଅଧା ଖୋଲିଦେଇ ମାଡ଼ାମ୍ ପ୍ଲାସାକ୍ କହିଲେ ଯେ ଝଡ଼ ହେବାର ଆଶଙ୍କା ଦେଖା ଯାଉଚି। ସୂର୍ଯ୍ୟ ଆଉ ଦେଖାଯାଉ ନାହାନ୍ତି। ହେ ଭଗବାନ୍,

ପିଠାଗୁଡ଼ାକ ହଜମ ହେବାକୁ ପୁଣି ଏତେବେଳ ଲାଗୁଛି ! ଦୂରରୁ ସନ୍ଧ୍ୟା ପ୍ରାର୍ଥନାର ଘଣ୍ଟା ବାଜୁଥାଏ। ବାହାରେ ଲୋକମାନଙ୍କର ପାଦ ଶବ୍ଦ ଶୁଭୁଥାଏ। କିଏ ସବୁ କ'ଣ କଥାବାର୍ତ୍ତା ହେଉଥାନ୍ତି। ଗୀର୍ଜା ମଣ୍ଡଳୀର ପିଲାମାନେ ଶୋଭାଯାତ୍ରା କରି ଚାଲିଗଲେ। ଆଉ ପନ୍ଦର ମିନିଟ ପରେ ଗୀର୍ଜା ଭିତରକୁ ଯାଇ ଗମ୍ଭୀର ଭାବରେ ସେମାନେ ଲାଟିନ୍ ଭାଷାରେ ସ୍ତୋତ୍ରସବୁ ବୋଲିବେ। ତୁଣ୍ଡରେ ବୋଲୁଥିବା ସ୍ତୋତ୍ରର ଗୋଟିଏ ଶବ୍ଦ ମଧ୍ୟ ଯେ ସେମାନେ ବୁଝି ପାରୁ ନାହାନ୍ତି, ସେଥିଲାଗି ଅବଶ୍ୟ ସେମାନେ ଆଦୌ ଶୋଚନା କରିବେ ନାହିଁ।

## ଚାରି

କାନ୍ଦି କାନ୍ଦି ମେରୀକୁ ନିଦ ହୋଇ ଯାଇଥିଲା। ଗୀର୍ଜାର ଘଣ୍ଟା ଶବ୍ଦ ଶୁଣି ମଧ୍ୟ ତା'ର ନିଦ ଭାଙ୍ଗିଲା ନାହିଁ। ମାଡ଼ାମ୍ ଆଗାଥେ ଥିରି ଥିରି ଆସି ସେହି ଘର ଭିତରେ ପ୍ରବେଶ କଲାବେଳେ ମଧ୍ୟ ତା'ର ନିଦରେ କୌଣସି ବ୍ୟାଘାତ ହେଲା ନାହିଁ। ତାଙ୍କର ହାତରେ ଗୋଟିଏ ଟ୍ରେ, ଟ୍ରେ ଉପରେ ଖାଇବା ଜିନିଷମାନ ସଜ୍ଜିତ ହୋଇ ରହଚି। ଛଅଟି ନାଲି ଟହଟହ ଚୁଙ୍ଗୁଡ଼ି, କିଛି ବିସ୍କୁଟ,କେତୋଟି ବିବର୍ଣ୍ଣ ଦେଖାଯାଉଥିବା ପିଚ୍‌ଫଳ, ପୋକ ଖାଇ ଯାଇଥିବା ଅଳ୍ପ କେତୋଟି କୋଳି, ଥଣ୍ଡା ହେତୁ ଉପରେ କୁହୁଡ଼ିଆ ଦେଖାଯାଉଥିବା ଗିଲାସେ ପାଣି। ମେରୀର ଶରୀରଟି କେଡ଼େ କରୁଣଭାବରେ କୋମଳ ଓ ଅପାକଳ ଦେଖାଯାଉଥିଲା ! ଦୁଃଖ ଓ ନିଦ୍ରା ଭିତରେ ରାତିଯାକ ଏହି ଶରୀର ଉପରେ ଲଢ଼େଇ ଚାଲିଥିଲା। ହାତ ଉପରେ ମୁହଁଟାକୁ ରଖି ମେରୀ ଶୋଇଥିଲା। ଗୋଟିଏ ଗୋଡ଼ ବଙ୍କା, ଆଣ୍ଠୁଟି ବହିଯାଉଥିବା ପାଣି ତଳର ଗୋଟିଏ ଛୋଟିଆ ପଥର ପରି ଚିକ୍‌କଣ ଦେଖା ଯାଉଥିଲା, ଯୋଉ ପଥର ଦେହରେ କି କେବେ କୌଣସି ଲୋକର ହାତ ବାଜି ନଥିଲା। ଆର ଗୋଡ଼ଟି ବିଛଣା ଦାଡ଼ରେ ନଡ଼ବଡ଼ ହେଉଥିଲା। ସୂର୍ଯ୍ୟାଲୋକର ଗୋଟିଏ ସିଧା ସିଧା ଲୋମାବୃତ ତା'ର ଫିକା ଦେହଟି ଉପରେ ଆସି ପଡ଼ିଥିଲା। ସେହି ଲୋମକୁ ଦେଖି ଯେପରି ଅଳ୍ପବୟସ୍କ କୌଣସି ବନ୍ୟ ଜନ୍ତୁର ଲୋମ ପରି ମନେ ହେଉଥିଲା। ତା'ର ଶରୀର ଉପରୁ ଟିକିଏ ଟିକିଏ ଓଦା ଓ ଝାଲୁଆ ଗନ୍ଧ ବାହାରୁଥିଲା, ଉପରକୁ ବଙ୍କେଇ ହୋଇ ଯାଇଥିବା ସୁନ୍ଦର ବାହୁ ଦୁଇଟି ଗୋଟିଏ ଥଳୀର ଦୁଇଟି ହ୍ୟାଣ୍ଡଲ୍ ପରି ଦେଖାଯାଉଥିଲା। ତା' ଫଳରେ ବ୍ଲାଉଜ୍ ତଳେ ଥିବା କାଖ ପର୍ଯ୍ୟନ୍ତ ବେଶ୍ ଦୃଷ୍ଟିଗୋଚର ହେଉଥିଲା, ଠିକ୍ ଯେଉଁଠାରେ କାଖ ପାଖରୁ ବାହୁଟି ବାହାରି ଆସିଚି। କାଖ ଦୁଇଟି ଗାଢ଼ ସୁନେଲୀ ରଙ୍ଗର ଦୁଇଟି ଚିତା ପରି ଦେଖାଯାଉଚି। ସବୁଥିରୁ ଗୋଟିଏ ପ୍ରକାର ଗନ୍ଧ ବାହାରୁଚି, କୌଣସି ପ୍ରାଣୀର ଗନ୍ଧ ନ କହି ସେହି ଗନ୍ଧକୁ ଉଭିଜ୍ଜ ବୋଲି କହିବାକୁ ହେବ। ମାଟି, ପାଣି, ସମୁଦ୍ର କୁଆର ଆଉ ବଗିଚାରେ

ଥିବା ଗଛ ପତରର ଗନ୍ଧ । ମାଡ଼ାମ୍ ଆଗାଥେ ଉପରକୁ ଆଖି କରି ଅନାଇଲେ । ଝରକାର କାଚ ଉପରେ ସେ ଆପଣାର ପ୍ରତିବିମ୍ବ ଦେଖି ପାରିଲେ । ତାଙ୍କର ଶିରା ବହୁଳ ହାଡୁଆ ମୁହଁଟି ରବିବାର ପିନ୍ଧା ବ୍ଲାଉଜଟିରେ କେଉଁ ଦିନୁ ଇସ୍ତ୍ରୀ ବାଜିନାହିଁ । ପ୍ରତିବିମ୍ବ ତଳେ ସେ ଆପଣାର ବାହୁତଳେ ଥିବା ଅର୍ଦ୍ଧବୃତ୍ତାକାର ଝାଳ ଚିହ୍ନ ଗୁଡ଼ିକ ଦେଖି ପାରିଲେ ନାହିଁ । କିନ୍ତୁ ଝାଳ ଚିହ୍ନ ଗୁଡ଼ିକ ଯେ ବାହୁତଳେ ରହିଛି, ସେ କଥା ସେ ଭଲକରି ଜାଣି ଥିଲେ । ବ୍ଲାଉଜଟା ତାଙ୍କର ଦେହକୁ ଭାରି ଢ଼ିଲା ହୋଇଥିଲା । ଫୁଲକା ହୋଇ ଆଗକୁ ଝୁଲି ପଡ଼ିଥିଲା । "ମୋ ଛାତିରେ ସ୍ତନ ନାହିଁ" ଏହି କଥାଟି ଯଦି ଆକ୍ଷରିକ ଭାବରେ ସତ୍ୟ ହୋଇଥାନ୍ତା ! କିନ୍ତୁ ତାଙ୍କ ଛାତିରେ ଥିବା ସ୍ତନଠାରୁ ମୋଟେ ସ୍ତନ ନଥିଲେ ବୋଧହୁଏ ଅଧିକ ଭଲ ହୋଇଥାନ୍ତା । ଯେଉଁଠାରେ ସେ ଠିଆ ହୋଇଥିଲେ, ସେଠାରୁ ମେରୀର ସ୍ତନ ଦୁଇଟି ତାଙ୍କର ଦୃଷ୍ଟିଗୋଚର ହେଉ ନଥିଲା । ତଥାପି ସେ ଦୁଇଟିର ସୁଦୃଶ୍ୟତା ସମ୍ବନ୍ଧରେ ତାଙ୍କର କୌଣସି ସନ୍ଦେହ ନଥିଲା । ମେରୀର ଗୋଡ଼ ଉପରେ ପଡ଼ିଥିବା ସୂର୍ଯ୍ୟକିରଣର ଧାସଟି ମାଡ଼ାମ୍ ଆଗାଥେଙ୍କର ଚର୍ମଳ ବାହୁ ଉପର ଦେଇ ଯାଇଥିଲା । କାଳେ କୌଣସି ଶବ୍ଦ ହେବ ବୋଲି ସେ ଆପଣା ନିଶ୍ୱାସକୁ ମଧ୍ୟ ଚାପି ରଖିଥିଲେ, ତଥାପି ଶୋଇଥିବା ମନୁଷ୍ୟାକୃତିଟି କହିଲା, "କିଏ ସେ ?"

ଟ୍ରେ ଆଡ଼କୁ ଇଙ୍ଗିତ କରି ମାଡ଼ାମ୍ ଆଗାଥେ କହିଲେ, "ତୁମ ଲାଗି ମୁଁ କିଛି ଖାଇବାକୁ ଆଣିଚି । କିନ୍ତୁ ପ୍ରଥମେ ଉଠି ତୁମେ କିଛି ଲୁଗାପଟା ପିନ୍ଧି ପକାଅ ।"

"କବାଟ ପାଖରେ ଠିଆ ହୋଇ ଆଗ ମୋତେ ଡ଼ାକିବା ଉଚିତ ଥିଲା," ମେରୀ ଆପତ୍ତି କଲା ପରି କହିଲା, "ତାହାହେଲେ ତୁମକୁ ଘର ଭିତରକୁ ଆସିବାକୁ ଅନୁମତି ଦେବା ପୂର୍ବରୁ ମୁଁ ନିଶ୍ଚୟ ମୋର କୁର୍ତ୍ତାଟା ପିନ୍ଧି ନେଇଥାନ୍ତି । "

"ତୁମେ ପୁଣି କି ଅନୁମତି ଦିଅନ୍ତ ? ତୁମେ ତ କୌଣସି କଥାରେ ମୋତେ ନିଷେଧ କରି ପାରିବ ନାହିଁ । "

ହାୟରେ ବିଧାତା ! ମାଡ଼ାମ୍ ଆଗାଥେଙ୍କୁ ସତେ ସେ କେତେ ବିରକ୍ତ ନ କରୁଚି ! ସେଇ ମାଡ଼ାମ୍ ଆଗାଥେ ତ ତା'ରି ଏକମାତ୍ର ଆଶା, ତା'ର ଶେଷ ସୁଯୋଗ ! ତା'ର ଦୁଇଟିଯାକ କୃଶ ବାହୁଲତାକୁ ସେ ଗୃହଧାତ୍ରୀଙ୍କର ବେକ ଚାରି ପାଖରେ ଲମ୍ବାଇ ଦେଲା । ସେ ତ ତାଙ୍କ ପାଖରେ କୌଣସି ଦୋଷ କରିନାହିଁ ! ଯୁବତୀର ଶରୀରଟି ଆପଣାର ଶରୀର ଉପରେ ଚାପିହୋଇ ଗଲାବେଳେ ମାଡ଼ାମ୍ ଆଗାଥେ ବେଶ୍ ତଜ୍ଜନିତ ଉଷ୍ଣତାଟି ଅନୁଭବ କରୁଥିଲେ ।

"ବର୍ତ୍ତମାନ ଉଠିବାକୁ ପଡ଼ିବ, ମେରୀ !"

ଆପଣାର ବେକରୁ ମେରୀର ହାତ ଛଡ଼ାଇ ଦେଇ ସେଠାକୁ ଠେଲିଦେଲେ । ଅବଶ୍ୟ ସେହି ଠେଲିବାରେ କୌଣସି କର୍କଶତା ନଥିଲା । "ଲୁଗାପଟା ପିନ୍ଧି ପକାଅ, ଖାଇବ ପରା !"

"ମୋତେ ଭୋକ କରୁନାହିଁ ।"

"ତୁମ ବୟସରେ ତ ସବୁବେଳେ ଭୋକ କରିବାର କଥା । "

ମସ୍‌ଲିନ୍ କୁର୍ତ୍ତାଟି ପିନ୍ଧିବାରେ ସେ ମେରୀକୁ ସାହାଯ୍ୟ କଲେ, ଟେବୁଲ ପାଖରେ ନେଇ ବସାଇଲେ , ସେଇଠୁ ତାକୁ ଶୁଆଇ ବସିଲେ ।

"ଚିଙ୍ଗୁଡ଼ିକୁ ତୁମେ କେତେ ଭଲ ପାଅ, ସେ କଥା କ'ଣ ତୁମେ ଜାଣ ନାହିଁ ? ତୁମ ପାଇଁ ପରା ବାପା ଏତକ ଛାଡ଼ି ଯାଇଚନ୍ତି । ସେ ତ ଏମିତି ଆଗ୍ରହରେ ଖାଇବାରେ ଲାଗିଥିଲେ ଯେ ତାଙ୍କୁ ବନ୍ଦ କରିବା ମଧ୍ୟ ସମ୍ଭବ ହେଲା ନାହିଁ। "

ଚିରାଭ୍ୟସ୍ତ ଭଙ୍ଗୀରେ ଗାତ୍ର କୁଞ୍ଚନ କରି ମେରୀ ଗୋଟିଏ କାନ୍ଧ ଉପରକୁ ଟେକି ଦେଲା । ପେଟ ଫାଟିଯିବା ପର୍ଯ୍ୟନ୍ତ ବାପା ଗିଳିଲେ ଗିଳୁଥାନ୍ତୁ । ସେଥିରେ ତା'ର ଓ ଗିଲେସ୍‌ର ଯାଏ ଆସେ କେତେ ? ମନେକର ଯଦି ତା'ର ବାପା ମାଆ କୁଆଡ଼େ ଅନ୍ତର୍ହିତ ହୋଇ ଯାଆନ୍ତେ ଯଦି, ସେମାନେ ଆଦୌ ଏ ସଂସାରରେ ନଥାନ୍ତେ । ...ଆଙ୍ଗୁଠି ଗୁଡ଼ାକ ପୋଛୁ ପୋଛୁ ସେ କହିଲା ।

"ସାଲୋନ୍ ଆଉ ଆମ ଭିତରେ କ'ଣ ପ୍ରଭେଦ ? ଆମେ କାହିଁକି ଆମକୁ ତାଙ୍କଠାରୁ ଅଧିକ ଭଲ ବୋଲି କହି ବୁଲିବା ?"

ମାଡ଼ାମ୍ ଆଗାଥେଙ୍କର ଉପର ଓଠ ଉପରକୁ ମୋଡ଼ି ହୋଇଗଲା । ତାଙ୍କର ପାଟି ଭିତରେ ଥିବା ଦାନ୍ତ ଦୃଷ୍ଟିଗୋଚର ହେଲା । ଦାନ୍ତଗୁଡ଼ିକ ବେଶ୍ ମଜବୁତ୍, କିନ୍ତୁ ଠିକ୍ ଧାଡ଼ୀରେ ବସିନାହିଁ । ତାଙ୍କର କୁକୁର ଦାନ୍ତଗୁଡ଼ିକ ପୁଣି ବେଶ୍ ବଡ଼ ବଡ଼ । ସେ ମୁରକି ମୁରକି ହସିବାକୁ ଲାଗିଲେ ।

"ସେକଥା ତୁମର ମାଆକୁ ପଚାରିବା ଉଚିତ, ମୋ' ଆଖିରେ ତ କେବେ ସେ ପ୍ରଭେଦଟା ଧରାପଡ଼େ ନାହିଁ ।"

"କିନ୍ତୁ ମୁଁ ଜାଣିବାକୁ ଚାହେଁ, ସେ ପ୍ରଭେଦଟା କ'ଣ ।"

ଯଥା ସମ୍ଭବ କଅଁଳ ସ୍ୱରରେ ଗୃହଧାତ୍ରୀ ଉତ୍ତର ଦେଲେ -

"କଳା ଆଉ ନାଲି ପିମ୍ପୁଡ଼ି ଭିତରେ ଯେଉଁ ପ୍ରଭେଦ । "

"ମୁଁ କିଛି ବୁଝିପାରିଲି ନାହିଁ" - ମେରୀ କହିଲା ।

"ସେଥିରେ ବୁଝିପାରିବାର କିଛି ନାହିଁ । "

ମାଡ଼ାମ୍ ଆଗାଥେ କାମ୍ପେନେସ ଘରର ଝିଅ । ତାଙ୍କର ବାପାଙ୍କର ପୂର୍ବ ପୁରୁଷମାନେ ଷୋଡ଼ଶ ଶତାବ୍ଦୀରେ ସେହି ପ୍ରଦେଶର ସବୁଠାରୁ ଅଧିକ ବିଖ୍ୟାତ ପରିବାରର ଲୋକ ଥିଲେ । ଚବିଶିଘଣ୍ଟା ପାଇଁ ସେ ଡ଼ି'ଗୋଥିର ସାମନ୍ତଙ୍କର ବିବାହିତା ସ୍ତ୍ରୀ ହେବାର ସୁଯୋଗ ମଧ୍ୟ ପାଇଥିଲେ । ଯେଉଁ ଦିନ ଏହି ବିବାହ ଅନୁଷ୍ଠିତ ହେଲା, ଠିକ୍ ସେହିଦିନ ସେ ତାଙ୍କ ବାପାଙ୍କର

ମାଳୀଙ୍କୁ ସାଙ୍ଗରେ ନେଇ ପଳାଇଗଲେ; ତଥାପି ରୋମ୍‌ର ବିଚାରାଳୟରେ ସେହି ବିବାହ ଖାରଜ ହୋଇଗଲା ଦିନଯାଏ ସେ ଆପଣାର ନାମ ସହିତ ସେହି ନାମଟି ସଂଯୁକ୍ତ କରି ରଖିଥିଲେ। ଆଭିଗ୍ନନ୍‌ର ପ୍ରଥମ ପୋପ୍ ପଞ୍ଚମ କ୍ଲେମେଣ୍ଟ ଯେଉଁ ନାମଟିକୁ ଆପଣାର ପବିତ୍ର ସ୍ୱୀକୃତି ଦେଇଥିଲେ। ମାଡ଼ାମ୍ ଆଗାଥେଙ୍କର ଆଖିରେ ଦେଖିବାକୁ ଗଲେ ସେହି ଏକା ପ୍ରକାରର ମନୁଷ୍ୟମଳରୁ ସାଲୋନ୍ ଓ ଭୁବେର୍ନେଟ୍ ପରିବାରର ମଣିଷମାନଙ୍କର ଉଦ୍ଭବ ହୋଇଥିଲା। ସାମାଜିକ ମାପ କାଠିରେ ସେ ସେମାନଙ୍କୁ ସାଧାରଣ ମଣିଷଙ୍କଠାରୁ ଆହୁରି ନ୍ୟୁନଭାବରେ ଦେଖୁଥିଲେ। ଏହିପରି ଏକ ସାଧାରଣ ପରିବାର ହେଉଚି ପ୍ଲାସାକ୍ ପରିବାର, ସେମାନେ କୌଣସି କଥାରେ କିଛି ଦେଖାଇ ହେବାକୁ ଯାଆନ୍ତି ନାହିଁ କି କିଛି ଛଳନା କରନ୍ତି ନାହିଁ। ଅଧିକନ୍ତୁ ତାଙ୍କର ଆଉ ଦେଖାଇ ହେବାକୁ କିଛି ନାହିଁ ବୋଲି ସେ ଭାବୁଥିଲେ। ସ୍ୱାମୀ ଛାଡ଼ି ଚାଲିଯିବା ଦିନଠାରୁ ସ୍ୱାମୀଙ୍କର ସମସ୍ତ ଜାତିଟା ପ୍ରତି ତାଙ୍କ ମନରେ ଗୋଟାଏ ତୀବ୍ର ଘୃଣାଭାବ ଜାତ ହୋଇଥିଲା। ଡୁବେର୍ନେଟ୍ ଘରେ ଧାତ୍ରୀ ହୋଇ ରହିବାଲାଗି ସେ କରିଥିବା ଯୋଜନାକୁ ବାପା ଯେତେବେଳେ ବିରୋଧ କରିବାକୁ ବସିଲେ, ଏହି କାରଣ ଦେଖାଇ ସେ ସେତେବେଳେ ଆପଣାର ପକ୍ଷ ରକ୍ଷା କରିଥିଲେ ଓ ବାପାଙ୍କର ମତ ବଦଳାଇ ପାରିଥିଲେ। ମାଟି ଛଡ଼ା ଆଉ କୌଣସିଥିରେ ତାଙ୍କର ଭରସା ନଥିଲା ବୋଲି ତାଙ୍କର ବାପା ଭାରି ଗର୍ବ କରୁଥିଲେ। ସେହି ମାଟିକୁ ହିଁ ସେ ଆପଣାର ସମସ୍ତ ସମର୍ପଣ କରି ଦେଇଥିଲେ। ଶେଷରେ ବେଲ୍‌ମଣ୍ଟର ଅଙ୍ଗୁରଚାଷୀମାନେ ତାଙ୍କର ସମସ୍ତ ଜମି ଆତ୍ମସାତ୍ କରି ନେଇଥିଲେ। ପୁରୁଣା ଅଙ୍ଗୁର ମୂଳ ତାଡ଼ିନେଇ ସେ ଆଉ ନୂଆ ନୂଆ ପୁଆ ପକାଇ ପାରିଲେ ନାହିଁ। ବଜାର ମାନ୍ଦା ଥିବା ସମୟରେ ଅଙ୍ଗୁର ବିକିଲେ। ତେଣୁ ବାଧ୍ୟ ହୋଇ ତାଙ୍କୁ ପଟା ଦିଆ ହୋଇଥିବା ସମ୍ପତ୍ତି ଉପରେ ନିର୍ଭର କରି ଚଳିବାକୁ ପଡ଼ିଲା। ଝିଅ ଯାହା ରୋଜଗାର କରୁଥିଲା, ସେଥିରୁ ଅଧେ ବାପାଙ୍କର ଜୁଆ ଖେଳରେ ଉଡ଼ି ଯାଉଥିଲା। ଡ୍ରୋର୍ଥେରେ ଲୋକମାନେ କହୁଥିଲେ, "କେବଳ ବାପାର ବଦଖରଚ ଗୁଡ଼ାକ ଚଳାଇବା ପାଇଁ ବିଚାରି ଝିଅକୁ ଜାତି ହରାଇବାକୁ ପଡ଼ିଲା।" କିନ୍ତୁ କୌଣସି କାମ କଲେ ଯେ ମଣିଷର ଜାତି ଚାଲିଯିବ, ସେହିପରି ଭାବିବା ସବୁବେଳେ ଉଚିତ ହେବ ନାହିଁ। ତେଣୁ ଆଗାଥେ ଆପଣାର ମନକୁ ତଳକୁ କରି ଦେଇଚନ୍ତି ବୋଲି କହିବାର କୌଣସି ଯଥାର୍ଥତା ନାହିଁ। ସେ ଯେ କାହା ଆଡ଼କୁ ଉଦ୍ଦେଶ୍ୟ କରି ଗତି କରୁଚନ୍ତି, ସେ ଯେ ଜାଣିଶୁଣି ଆପଣାକୁ ତଳକୁ ଖସାଇ ଆଣୁଚନ୍ତି, ଯାହାକୁ ଉଦ୍ଦେଶ୍ୟ କରି ସେ ତଳକୁ ଆସୁଚନ୍ତି, ତାହାର ସ୍ୱାଭାବିକ ସ୍ତର ପର୍ଯ୍ୟନ୍ତ ଆସିବାଯାଏ ଯେ ସେ ଏହିପରି ତଳକୁ ଖସି ଆସୁଥିବେ, ଏକଥା ଅନ୍ୟମାନେ ଜାଣନ୍ତେ କିପରି । ତାଙ୍କୁ ସାଙ୍ଗରେ ନେଇ ନିକୋଲାସ୍‌କୁ ଅନେକ ବାଟ ଯିବାକୁ ହେବ, ଅନେକ ଉପରକୁ ଆରୋହଣ କରିବାକୁ ହେବ। ମାଡ଼ାମ୍ ଆଗାଥେଙ୍କୁ ନିକୋଲାସ୍‌ର ଜୀବନଭୂମି ପର୍ଯ୍ୟନ୍ତ ଘୁଷୁରି ଘୁଷୁରି ଯିବାକୁ ହେବ ଓ ସେହିଠାରେ ଦୃଢ଼ ପ୍ରତିଷ୍ଠିତ ରହିବାକୁ ପଡ଼ିବ। ଅବଶ୍ୟ ବର୍ତ୍ତମାନ ନିକୋଲାସ୍

ତାଙ୍କ ପାଖରୁ ଦୂରକୁ ଦୂରକୁ ଚାଲିଯାଉଚି, କିନ୍ତୁ ତଥାପି ହାସଲ କରି ନହେବା ଭଳି ସଂସାରରେ କୌଣସି ଜିନିଷ ନାହିଁ, ପ୍ରେମ, ଜୀବନରେ ମଧ୍ୟ ନୁହେଁ। ଆପଣାର ତୀବ୍ର ଇଚ୍ଛାଶକ୍ତି ଦ୍ୱାରା ଚାଳିତ ହୋଇ ସେ ଏହିପରି ଭାବୁଥିଲେ। ତାଙ୍କର ମନରେ ଦୁସ୍ଥ ଓ ଦୁର୍ଦ୍ଦଶାଗ୍ରସ୍ତ ମଣିଷ ପ୍ରତି କେବେ କୌଣସି ଐକାନ୍ତିକ ସହାନୁଭୂତି ନଥିଲା। ମନେ ମନେ ସେ ଭାବୁଥିଲେ ଯେ ଇଚ୍ଛା କରିଥିଲେ ସେ ନିକୋଲାସ୍ ଖୁସୀରେ ରଖି ପାରିଥାନ୍ତେ। ତାଙ୍କର ରୂପରେ ଯେ କୌଣସି ଆକର୍ଷଣ ନଥିଲା, ଏକଥା କଦାପି କୁହାଯାଇ ପାରିବ ନାହିଁ। ଶ୍ରୀ ଆରମାଣ୍ଡ ଡୁବେର୍ନେଟ୍ ତାଙ୍କୁ ସବୁବେଳେ ଯେ ଗୋଟାଏ ନିର୍ଦ୍ଦିଷ୍ଟ ଭଙ୍ଗୀରେ ଅନାଉଥିଲେ, ଏହିଥିରୁ ତ ତା'ର ପ୍ରମାଣ ମିଳୁଛି। ...ରାତିରେ ଆପଣାର ଶୋଇବା ଘରର କବାଟରେ ଗୋଟାଏ କିଳା ଦେଇ ତାଙ୍କୁ ସବୁଦିନେ ଶୋଇବାକୁ ପଡୁଥିଲା। ..ଖାଲି ଯଦି ସେ ତାଙ୍କର ଆପଣାର ମନର କଥା ଖୋଲି କହିଦେଇ ପାରନ୍ତେ, ତେବେ ଏହି ପ୍ଲାସାକ୍ ଯୁବକ -ଗୀର୍ଜାରେ ଚଉକି ଟେବୁଲ ଝଡ଼ାଝଡ଼ି କରିବାର କାମରେ ନିଯୁକ୍ତ ହୋଇଥିବା ସେହି ସ୍ତ୍ରୀ'ର ପୁଅ - ସେ କେତେ ବେଳେ ଲାଗନ୍ତା ? ସତ କଥା କହିବାକୁ ଗଲେ ମାଡ଼ାମ୍ ଆଗାଥେଙ୍କ ସହିତ ଏକୁଟିଆ ରହିବାକୁ ନିକୋଲାସ୍‌କୁ ଭାରି ଭୟ ଲାଗୁଥିଲା - ଅବଶ୍ୟ ତା'ର ଲଜ୍ଜାଶୀଳତା ଛଡ଼ା ସେହି ଭୟର ଆଉ କୌଣସି କାରଣ ନଥିଲା। ସେ ନିଜେ କିପରି ନିକୋଲାସ୍ ଆଡ଼କୁ ଭାରି କଟମଟ କରି ଅନାଇ ରହନ୍ତି, ଏକଥା ସେ ନିଜେ ବେଶ୍ ଭଲକରି ଜାଣିଥିଲେ। ନିକୋଲାସ୍ ପାଇଁ ତାଙ୍କ ମନରେ ଏକ ତୀବ୍ର ବୁଭୁକ୍ଷା ରହିଥିଲା।

"ମାଡ଼ାମ୍ ଆଗାଥେ, ତୁମେ ମୋ' କଥା ମୋତେ ଶୁଣୁନାହଁ!" -ମେରୀ ଆରମ୍ଭ କଲା। ବାଳିକାଟି ଯେ ବେଶ୍ ଅନେକ ସମୟ ହେଲା କ'ଣ କହୁଥିଲା, ମାଡ଼ାମ୍ ଆଗାଥେ ଏକଥା ଭଲ କରି ବୁଝି ପାରୁଥିଲେ।

"କାହିଁକି ତମେ ଆମ ବିରୁଦ୍ଧରେ ଯାଉଚ ? ତୁମରି ସାହାଯ୍ୟରେ ଓ ତା' ସହିତ ମୋର ପରିଚୟ ହେଲା। "

"ତୁମର ହିତାହିତ ଜ୍ଞାନ ଚାଲି ଯାଇଥିବା ପରି ମୋର ମନେ ହେଉଚି। ପ୍ଲାସାକ୍ ଯୁବକ ମୋର ଜଣେ ବନ୍ଧୁ। ଯୁବକ ସାଲୋନ୍ ଦୈବାତ୍ ସିନା ତା' ସାଙ୍ଗରେ ଥିଲା! ସେ ବିଷୟରେ ମୁଁ କିଛି କରି ପାରିବି ନାହିଁ। "

"ମାଡ଼ାମ୍ ଆଗାଥେ, ତୁମ ପରି ସହାନୁଭୂତିଶୀଳା ଜଣେ ରମଣୀ ନିଶ୍ଚୟ ପ୍ରଥମରୁ ଲକ୍ଷ୍ୟ କରିଥିବ ଯେ ଗିଲେସ୍ ଆଉ ମୋ' ଭିତରେ ଗୋଟାଏ କିଛି ଆରମ୍ଭ ହୋଇ ଯାଇଚି। ତୁମେ ନିଶ୍ଚୟ ସେହି କଥା ଦେଖିଚ, ଆମର ସାକ୍ଷାତକୁ ତୁମେ ସର୍ବଦା ଉତ୍ସାହିତ କରି ଆସିଚ । ମୁଁ ସେ ସବୁ କଥା କଦାପି ଭୁଲିବି ନାହିଁ..।"

ମେରୀର ମୁହଁରେ ବ୍ୟଗ୍ରତା ପ୍ରକାଶ ପାଇଲା। ନା -, ଏହି ନିର୍ବୋଧ ଶିଶୁଟି କଦାପି

ଛଳନା କରୁନଥିଲା । ତା'ର ପ୍ରେମ ଯେ ଧାତ୍ରୀର ହୃଦୟକୁ ମଧ୍ୟ ସ୍ପର୍ଶ କରିଚି, ସେ ଏହା ପ୍ରକୃତରେ ବିଶ୍ୱାସ କରୁଥିଲା । କେବଳ ନିଜେ ନିକୋଲାସ୍‌କୁ ହାତର ପାଞ୍ଚ କରିବା ଲାଗି ଯେ ମାଡ଼ାମ୍ ଆଗାଥେ ସେମାନଙ୍କର ସାକ୍ଷାତ ଲାଗି ଏତେ ଆୟୋଜନ କରିଛନ୍ତି, ମୁହୂର୍ତ୍ତକ ପାଇଁ ମଧ୍ୟ ଏପରି କୌଣସି ସଂଶୟକୁ ସେ ଆପଣା ମନରେ ସ୍ଥାନ ଦେଇ ନଥିଲା। ନିକୋଲାସ୍ ତ ଆଉ ମାଡ଼ାମ୍ ଆଗାଥେଙ୍କୁ ବର୍ଜନ କରି ଚାଲିଯାଉ ନଥିଲା ! ସେ ଯେ ତାଙ୍କ ସହିତ ପ୍ରେମରେ ପଡ଼ିଥିଲା ବୋଲି ଏପରି କରୁଥିଲା, ତାହା ନୁହେଁ। ଏ ବିଷୟରେ ମେରୀର କୌଣସି ସନ୍ଦେହ ନଥିଲା। ଗିଲେସ୍‌ର ଇଚ୍ଛା ପୂରଣ କରିବା ଲାଗି ନିକୋଲାସ୍ ନିଶ୍ଚୟ ଏପରି କରୁଥିଲା । ନିକୋଲାସ୍ ସେଦିନ ମାଡ଼ାମ୍ ଆଗାଥେଙ୍କ ସହିତ ଜଙ୍ଗଲ ପଥରେ ବୁଲି ବାହାରିଲା, ମେରୀ ଓ ଗିଲେସ୍‌କୁ ଏକୁଟିଆ ରହିବାର ସୁଯୋଗ ଦେବା ଲାଗି ହିଁ ସେ ଏହା କରିଥିଲା। ସେ ଯାହା ହେଉ ବା ଯେଉଁଥି ସକାଶେ ହେଉ, ଏଥିରେ ମାଡ଼ାମ୍ ଆଗାଥେଙ୍କର ମନ ବି ଭାରି ଖୁସୀ ହୋଇଥିଲା।

ଝରକା ଅତିକ୍ରମ କରି ଯାଇ ସେ ଆକାଶଜଳା ଗୁଡ଼ାକ ଖୋଲି ଦେଲା। ସେତେବେଳେକୁ ଆକାଶର ନୀଳିମା କୃଷ୍ଣ ହୋଇ ଆସିଲାଣି । ଆସନ୍ନ ତୋଫାନର ଆବେଶ ଲାଗି ଘରର ଛାତଗୁଡ଼ାକ କଳାକଳା ଦେଖା ଯାଉଥିଲା । ଘରଚଟିଆ ଚଢ଼େଇଗୁଡ଼ାକ ମଧ୍ୟ ଭାରି ତଳେ ଉଡ଼ାଉଡ଼ି କରୁଥାନ୍ତି । ପବନରେ ଭଉଁରୀ ଖେଳି ଧୂଳି ଗୁଡ଼ାକ ଉପରକୁ ଉଠି ଯାଉଥାଏ, ପୁଣି କିଛି ସମୟ ପରେ ତଳକୁ ବସି ଯାଉଥାଏ। କ୍ଳାନ୍ତ ମହୁମାଛିମାନଙ୍କର ଭଣଭଣ ଶବ୍ଦ କାହାର ଏକ ଖେଦପୂର୍ଣ୍ଣ ଅଭିଯୋଗ ପରି ଆକାଶ ଉପରକୁ ଉଠିବାରେ ଲାଗିଥିଲା। ମାଡ଼ାମ୍ ଆଗାଥେ ମେରୀ ଆଡ଼କୁ ଫେରି ଅନାଇଲେ। ତାଙ୍କର ଶାନ୍ତ ମୁଖମଣ୍ଡଳରେ କୌଣସି ଭାବ ପ୍ରକାଶ ପାଉ ନଥିଲା। ଗୋଟାଏ ଟାଣ ଗଳାରେ ସେ କହିଲେ।

"ମେରୀ, ତୋ'ପରି ପ୍ରତିପାଳିତ ହୋଇ ଆସିଥିବା ସତର ବରଷର ଜଣେ ଯୁବତୀ ଝିଅ ଯେ ଜଣେ ଯୁବକ ପାଖରେ ଆପଣା ହୃଦୟକୁ ସମର୍ପଣ କରିଦେବା ଲାଗି ସାହସ କରିଥାନ୍ତା, ଏକଥା ମୁଁ କଦାପି ବିଶ୍ୱାସ କରି ପାରି ନଥାନ୍ତି। ତୁ' ପୁଣି ତା' ସହିତ ବିବାହ କରିବାକୁ ଚିନ୍ତା କରି ବସିଲୁଣି !...ତୋ'ର ମାଆ ସବୁକଥା ବେଶ୍ ବୁଝି ପାରୁଚନ୍ତି। ସେ ଏକଥା ବେଶ୍ ଜାଣୁଚନ୍ତି ଯେ ମୁଁ ତ କଳ୍ପନା କରି ନଥିବି ଯେ ଡୁବେର୍ନେଟ୍ ଓ ସାଲୋନ୍ ପରିବାରର ଦୁଇଜଣଙ୍କ ମଧ୍ୟରେ..."

"ତଥାପି, ତୁମେ ପରା ବର୍ତ୍ତମାନ କହିଲ ଯେ ଆମ ଦୁଇ ପରିବାର ଭିତରେ କୌଣସି ପ୍ରଭେଦ ନାହିଁ ? ଠିକ୍ ଯେମିତି କଳା ଆଉ ନାଳି.."

"ତୋତେ ହସେଇବା ପାଇଁ ମୁଁ ସେପରି କହିଥିଲି। ତୋ' ଆଖିରେ ଲୁହ ଦେଖିବା ମୁଁ ସହିପାରେ ନାହିଁ ।"

"ମେରୀ ମାଡ଼ାମ୍ ଆଗାଥେଙ୍କର କୋଳକୁ ଯାଇ ତାଙ୍କର ବ୍ଲାଉଜ୍ ଭିତରେ ମୁହଁ ଗୁଞ୍ଜି ବସିଲା ।

"ତୁମେ କଣ ମୋତେ ଏତେ ଟିକିଏ ଭଲ ପାଅ ନାହିଁ ? -କହ, ସତରେ ପାଅ ନାହିଁ ? -ନିଶ୍ଚୟ ପାଅ !" ହଁ, ଏହି ମୁହୂର୍ତ୍ତରେ ସେ ନିଶ୍ଚୟ ତାକୁ ଟିକିଏ ଭଲ ପାଉଥିଲେ ।

"ମୋତେ ଟିକିଏ ଭଲକରି ଗେଲ କର !" -ମେରୀ କହିଲା ।

ନିଜର ବାହୁ ପାଶରେ ଗୋଟିଏ ଶିଶୁଟିକୁ ଧରି ଗେଲ କରୁଥିବା ଭଳି ମାଡ଼ାମ୍ ଆଗାଥେ ଅଭିନୟ କରିବାକୁ ଲାଗିଲେ । କାମ୍ବ୍ଲେନେସ୍ ପରିବାରର ଚିରାଚରିତ ସୂତ୍ର ଅନୁସାରେ ଗୁଣୁଗୁଣୁ କରି ଗୀତ ଗାଇ ସେ ତାକୁ ବୁଝାଇବାକୁ ଲାଗିଲେ ।

"ମୋତେ ତୁମେ ଏତେ ଜୋରରେ ଚାପି ଧରୁଚ ଯେ ମୁଁ ନିଶ୍ୱାସ ନେଇ ପାରୁ ନାହିଁ । ଉଠ, ଯିବା !" ହାତ ଆଙ୍ଗୁଠିର ଟିପ ଦେଇ ମେରୀ ତା'ର କୁର୍ତ୍ତାକୁ ସିଧା କରିନେଲା । ମାଡ଼ାମ୍ ଆଗାଥେଙ୍କ ଆଡ଼କୁ ସେ ଟିକିଏ ଧୂର୍ତ୍ତଭାବରେ ଅନାଇଲା ।

"ତୁମେ ଚେଷ୍ଟା କଲେ ସବୁ ହୋଇ ପାରନ୍ତା । କହ କାହିଁକି ତୁମେ ଚେଷ୍ଟା ନ କରିବ । "

"ମୁଁ ତ ଆଉ ତୋର ମାଆଙ୍କର ଇଚ୍ଛା ବିରୁଦ୍ଧରେ ଯାଇ ପାରିବି ନାହିଁ !"

ମେରୀ ପ୍ରତିବାଦ ଜଣାଇ କହିଲା ଯେ ମାଆଙ୍କର ଇଚ୍ଛାରେ ପରିବର୍ତ୍ତନ କରିବା ମାଡ଼ାମ୍ ଆଗାଥେଙ୍କର କ୍ଷମତାର ବାହାରେ ନଥିଲା । ତାଙ୍କର ଏପରି କୌଣସି କ୍ଷମତା ବା ପ୍ରଭାବ ଅଛି ବୋଲି ଗୃହଧାତ୍ରୀ ସ୍ୱୀକାର କରିବାକୁ ରାଜି ହେଲେ ନାହିଁ । ତା'ଛଡ଼ା, ପ୍ରଭାବ ଥିଲେ ମଧ୍ୟ, ମେରୀ ଯେ ଏହା ଦ୍ୱାରା ଭବିଷ୍ୟତରେ ସୁଖ ପାଇବ ନାହିଁ, ସେ ବିଷୟରେ ସେ ଏକାବେଳେକେ ଆଖି ବୁଜି ଦେବେ କିପରି ? ସତ କହିବାକୁ ଗଲେ ଗିଲେସ୍ ମଣିଷଟି ଯେ ଠିକ୍ କେଉଁଭଳି ପ୍ରକୃତିର, ସେ କଥା ମୁଁ କିପରି ଜାଣିଲି ?"

"ତୁମେ ଯଦି ଥରେ ତାକୁ ଜାଣନ୍ତ !"

ଗୃହଧାତ୍ରୀ ଶୁଷ୍କଭାବରେ ଉତ୍ତର ଦେଇ କହିଲେ ।

"ମୋ'ଠାରୁ ତା' ବିଷୟରେ ତୁ ଆଦୌ ବେଶୀ ଜାଣୁନାହିଁ । ସେ ପ୍ରକୃତରେ କିଭଳି ମଣିଷ, ସେ ବିଷୟରେ ତୋ'ର କୌଣସି ଧାରଣା ନାହିଁ । ସେ ଖାଲି ତୋତେ ଆପଣାର ବାହୁ ପାଶ ଭିତରେ ରଖି ଆଲିଙ୍ଗନ କରୁଥାଉ, ଏତିକି ବ୍ୟତୀତ ତା ବିଷୟରେ ତୁ କ'ଣ ଜାଣିଚୁ ? ସେ ଗୋଟାଏ ହିଂସ୍ର ଜନ୍ତୁର ଛୁଆ, ଜନ୍ମବେଳେ ମାଆର ଚଟା ବି ସେ ଖାଇନାହିଁ । ବ୍ୟକ୍ତିଗତ ଭାବରେ କହିଲେ, ହଠାତ୍ ଗୋଟାଏ ପ୍ରକାର ହିଂସାନ୍ୱିତ ଭାବରେ ସେ କହିଲେ, "ମୋର ତା' ପାଖକୁ ଯିବାକୁ ମଧ୍ୟ ଇଚ୍ଛା ହୁଏ ନାହିଁ ।"

ମେରୀ ମନେମନେ ଭାବିଲା ଯେ ମାଡ଼ାମ୍ ଆଗାଥେ ରହସ୍ୟ କରି ଏପରି କହୁଚନ୍ତି ।

ତେଣୁ ସେ ହସିହସି ଉତ୍ତର ଦେଲା -"ମୁଁ କିନ୍ତୁ ତାକୁ ସେପରି ଭାବେ ନାହିଁ, କଦାପି ଭାବେ ନାହିଁ। ଅବଶ୍ୟ ମୁଁ ସ୍ୱୀକାର କରୁଚି ଯେ ଖୁବ୍ ବେଶୀ ପରିଷ୍କାର ପରିଚ୍ଛନ୍ନ ନୁହେଁ। " ବସ୍ତୁତଃ ଗିଲେସ୍‌ର କୌଣସି କଥା ଯେ ମେରୀକୁ ଭଲ ଲାଗୁ ନଥିଲା, ତାହା କୁହାଯାଇ ପାରିବନାହିଁ। ତା'ର ମୁଣ୍ଡର ଆଲୁରୁ ବାଲୁରୁ ବାଳ, ତା'ର ଅପରିଷ୍କାର ହାତ, ଯେତେ ଦିନ ପିନ୍ଧା ହେବା କଥା, ତା'ଠାରୁ ଅଧିକ ଦିନ ପିନ୍ଧା ହୋଇଥିବା ତା'ର କମିଜ୍, ଗିଲେସ୍‌ର ସଙ୍ଗେ ସଙ୍ଗେ ରହିଥିବା ତା'ର ଦେହର ଗନ୍ଧ, ବାସି ତମାଖୁ, ଅ.ଡ଼ି.କଲନ୍ ଓ ଦଉଡ଼ି ଦଉଡ଼ି ଯିବା ଫଳରେ ଗରମ ହୋଇ ରହିଥିବା ଗୋଟାଏ ଶରୀର, -ସବୁ ମିଶି ଯେପରି ଗନ୍ଧ ବାହାରିବା କଥା ଠିକ୍ ସେମିତି।

ତା'ପରେ କିଛି ସମୟ ପର୍ଯ୍ୟନ୍ତ ଗୋଟାଏ ପ୍ରକାର ଅସ୍ପଷ୍ଟ ଗୁଁ ଗୁଁ ଶୁଭିଲା। "ବରଫ ନ ବରଷିଲେ ହୁଏତ ବର୍ଷା ହୋଇପାରେ" - ମେରୀ କହିଲା।

ମାଡ଼ାମ୍ ଆଗାଥେ ଝରକା ପାଖକୁ ଗଲେ ଓ ବାହାରକୁ ହାତ ବଢ଼ାଇ ଦେଖିଲେ।

"ବିନ୍ଦୁଏ ହେଲେ ନାହିଁ। ଶୁଣ୍ ମେରୀ, ହୁଏତ ଆଜି ଉପର ଓଳି ମୋ'ର ତା'ସହିତ ଦେଖା ହୋଇପାରେ।"

ମେରୀର ଆଖି ଦୁଇଟା ତତ୍‌କ୍ଷଣାତ୍ ଉଜ୍ଜ୍ୱଳ ହୋଇ ଉଠିଲା। "ନିକୋଲାସ୍ ପ୍ଲାସାଙ୍କ ଘରେ ?" -ସେ ପଚାରିଲା।

"ହୁଏତ ବର୍ତ୍ତମାନ ମୁଁ ଠିକ୍ କରି ଜାଣି ନାହିଁ। ସେ ବିଷୟ ତୁ ଭାବି କୌଣସି ଲାଭ ନାହିଁ, କେବଳ ଯଦି ତୋ" ପାଇଁ କୌଣସି ଖବର ଥାଏ, ତେବେ ମୁଁ ଆସି ତୋତେ ନିଶ୍ଚୟ କହିବି। ଲେଖା ଖବର ନୁହେଁ, ଏତେ ବେଶୀ ଆଶା କରିବା ଆଦୌ ଉଚିତ ନୁହେଁ। "

"ଓହୋ, ମୋର ମୁଣ୍ଡ ଉପରୁ ତୁମେ କେଡ଼େ ବଡ଼ ବୋଝଟାଏ ଓହ୍ଲାଇ ନେଲ। " ସେ ମାଡ଼ାମ୍ ଆଗାଥେଙ୍କୁ ଆଉଥରେ କୁଣ୍ଢାଇ ଧରିଲା।

"ବୋଝ ଆଉ କ'ଣ ଓହ୍ଲାଇନେଲି ? ମୁଁ ତ କେବଳ ଏତିକି କହିଲି ଯେ ହୁଏତ ତା'ସହିତ ମୋ'ର ଦେଖା ହୋଇପାରେ। କିନ୍ତୁ ମୁଁ କଦାପି ତାକୁ ଖୋଜି ବୁଲିବି ନାହିଁ। "

"ଓଃ" - ନିରାଶ କଣ୍ଠରେ ମେରୀ କହିଲା, "ଏକା ତୁଣ୍ଡରେ ଅରୁଆ ଉଷୁନା କହିବା ତୁମର ଆଦୌ ଉଚିତ ହେଉନାହିଁ। ମୋ'ର ଅବସ୍ଥାଟା କ'ଣ ତୁମେ ଟିକିଏ ହେଲେ ହୃଦୟଙ୍ଗମ କରିପାରୁ ନାହଁ ?"

ମେରୀ ଆଡ଼କୁ ଗୋଟାଏ ଦୀର୍ଘ ଦୃଷ୍ଟି ପକାଇ ମାଡ଼ାମ୍ ଆଗାଥେ କହିଲେ, "ମୁଁ କିନ୍ତୁ ଭାରୀ ଗମ୍ଭୀର ଭାବରେ ଏକଥା କହୁଛି, ତୋ'ର ବୁଝିବାକୁ ଚେଷ୍ଟା କରିବା ଉଚିତ। "

"ବୁଝିବାକୁ ଚେଷ୍ଟା କରିବି ? କ'ଣ ମୋର ବୁଝିବାକୁ ଅଛି ?"

ମାଡ଼ାମ୍ ଆଗାଥେ ସେହିପରି କଟମଟ କରି ଅନାଇ ଥାନ୍ତି। ସତେଅବା ଆଖିର ଚାହାଣୀ ଦ୍ୱାରା ସେ ତା'ଉପରେ ପ୍ରଭାବ ବିସ୍ତାର କରିବାକୁ ଚେଷ୍ଟା କରୁଥାନ୍ତି। କୌଣସି ଏକ ଅବ୍ୟକ୍ତ ଭାବିବାକୁ ଯେପରି ସେ ମେରୀକୁ ସୂଚେଇ ଦେବାକୁ ଯାଉଥାନ୍ତି।

"ମୁଁ ସତେ କେଡ଼େ ବୋକା।" ଦୀର୍ଘ ନିଶ୍ୱାସ ପକାଇ ମେରୀ କହିଲା। ମାଡ଼ାମ୍ ଆଗାଥେ ତାକୁ ପାଖକୁ ଟାଣି ନେଲେ ଓ ତା'ର କପାଳରେ ଚୁମ୍ବନ ଦେଲେ।

"ହଁ, ଭାରି ବୋକା !" -ସେ କହିଲେ। ତାପରେ ?

"ମୁଁ ବର୍ତ୍ତମାନ ଏଠାରୁ ଚାଲିଯିବା ପରେ ତୁ କ'ଣ କରିବୁ ? -ସେ ମେରୀକୁ ପଚାରିଲେ।

ମେରୀ କହିଲା ମାଆ ସନ୍ଧ୍ୟା ପ୍ରାର୍ଥନାରେ ଯୋଗ ଦେବାକୁ ଯିବା ପର୍ଯ୍ୟନ୍ତ ସେ ଅପେକ୍ଷା କରିବ, ତା'ପରେ ନିଜେ ଗୀର୍ଜାକୁ ଯିବ।

"ମୁଁ ସେଠି ପ୍ରାର୍ଥନା ପୂର୍ବରୁ ପହଞ୍ଚିଯାଇ ପାରିବି।"

"ଭଲ କଥା। ତେବେ ତୋ'ର ମୁଣ୍ଡରୁ ଅନେକ ଚିନ୍ତାର ବୋଝ ମଧ୍ୟ ଖସି ପଡ଼ିବ।"

"କିନ୍ତୁ ମୁଁ ତ ଚିନ୍ତାର ବୋଝ ଖସାଇ ଦେବାକୁ ଚାହୁଁ ନାହିଁ। ମୋର ଅନେକ ବର ମାଗିବାର ଅଛି।"

ମାଡ଼ାମ୍ ଆଗାଥେଙ୍କର ଉନ୍ମୁକ୍ତ ଅଧରର ଫାଙ୍କରୁ ଆଗକୁ ବାହାରି ପଡ଼ିଥିବା ତାଙ୍କର କଣଦାନ୍ତ ଦୁଇଟି ଦିଶିଗଲା।

"ନିଶ୍ଚୟ କରେ। ତୁମେ କ'ଣ ସେଇଟାକୁ ଗୋଟାଏ ଅଶିଷ୍ଟତା ବୋଲି ମନେ କରୁଚ ?"

"ନା ମୁଁ ସେପରି କାହିଁକି ମନେ କରିବି ? ବୋକା ଝିଅଟା, - ଏଥିରେ କାହିଁକି କୌଣସି ଅଶିଷ୍ଟତା ରହିବ ? ମୁଁ ତେଣୁ ଫେରି ଆସିଲେ ତୁ ଯାଇ ମୋର କୋଠରୀରେ ମୋତେ ସାକ୍ଷାତ୍ କରିବୁ। ମୋର ଟିକିଏ ବିଳମ୍ବ ହୋଇ ଯାଇପାରେ।"

"ତୁମେ କ'ଣ ଭାବୁଚ କାଲିଅଟ୍ ଦୋକାନକୁ ଯାଇ ଆଜି ହରାଇଥିବା ମିଷ୍ଟାନ୍ନ ଆଣିବାର ସମୟ ମୁଁ ପାଇବି ? ସେତେବେଳକୁ ତ ମୋତେ ନିଶ୍ଚୟ ଭାରି ଭୋକ କରୁଥିବ। ପ୍ରକୃତରେ କହିଲି, ଆଜି ତ ମୁଁ ଠିକ୍ ଭାବରେ ମୋର ମଧ୍ୟାହ୍ନଭୋଜନ ମଧ୍ୟ କରି ନାହିଁ !

ଧନ୍ୟ ଏ ଡୁବେର୍ନେଟ୍ ବଂଶର ଲୋକଗୁଡ଼ାକ। ଏପରିକି ଏହି ପ୍ରୀତି ପାଗଳିନୀ ଝିଅଟି ମଧ୍ୟ ଖାଇବା ଜିନିଷ ବ୍ୟତୀତ ଆଉ କିଛି ଚିନ୍ତା କରିପାରୁ ନାହିଁ। ମାଡ଼ାମ୍ ଆଗାଥେ ଟ୍ରେ'ଟିକୁ ହାତରେ ଉଠାଇ ଧରିଲେ। ମେରୀ ସେଇଟିକୁ ତାଙ୍କ ହାତରୁ ନେବାକୁ ଇଚ୍ଛା କଲା। ସେ ନିଜେ ନେଇ ତଳେ ରଖିଦେଇ ଆସିବ ବୋଲି ପ୍ରତିବାଦ ଜଣାଇଲା।

"ନା, ଏଇଟା ମୋର କାମ। ଏଇଥି ପାଇଁ ତ ମୁଁ ଦରମା ପାଉଚି।" -ମାଡ଼ାମ୍ ଆଗାଥେ କହିଲେ।

କବାଟ ବନ୍ଦ କରି ଗଲାବେଳେ ସେ କହିଗଲେ, "ଭଲକରି ମୁଣ୍ଡ ଖରଚ କରି ଜାଣିବା ଦରକାର। ଆପଣାର ମୁଣ୍ଡକୁ କାମରେ ଲଗାଇ ପାରିବା ହେଉଚି ଜୀବନର ସବୁଠାରୁ ବଡ଼ କଥା। ହୃଦୟର ବ୍ୟାପାରରେ ମଧ୍ୟ ତଥାପି ଆପଣାର ମୁଣ୍ଡକୁ କାମରେ ଲଗାଇ ଶିଖିବା ଉଚିତ।"

## ପାଞ୍ଚ

ବର୍ଷା ତଥାପି ସବୁର କରିଥାଏ। ଗୋଲବଜାର ଅତିକ୍ରମ କରି ମାଡ଼ାମ୍ ଆଗାଥେ ସୋ-ଫ୍ରିଫେକ୍‌ଟର ରାସ୍ତା ଉପରେ ଯାଇ ପହଞ୍ଚିଲେ। ରାସ୍ତାଟି ଗୀର୍ଜାର ବିପରୀତ ପାଖରୁ ବାହାରିଚି। ରାସ୍ତାଏ ରାସ୍ତାଏ ଗଲେ ବାଁ ପାଖରେ ଥିବା ଶେଷ ଏକମହଲା ଘରଟି ହେଉଚି ମାଡ଼ାମ୍ ପ୍ଲାସାକ୍‌ଙ୍କର। ତା'ପରେ ଆଉ ଘର ନାହିଁ-ଖାଲି ଖୋଲା ପଡ଼ିଆ। ଠିକ୍ ଯେଉଁ ସ୍ଥାନରୁ ସେଠି ବଗିଚାଟିଏ କଣେଇ ହୋଇ ଆରମ୍ଭ ହୋଇଥିଲା, ତାହାକୁ ଡ଼ୋର୍ଥେର ଅଧିବାସୀମାନେ 'ବୁଲେଭାର୍ଡ଼' ବା 'ରାମ୍ପାର୍ଟ ୱାକ୍' ବୋଲି କହୁଥିଲେ। ଅବଶ୍ୟ ସେହି ରାସ୍ତାରେ ଚାଲିକରି ଯିବାକୁ କେହି କେବେ ଚିନ୍ତା ହିଁ କରୁ ନଥିଲେ। ସେଠାରେ କେତୋଟି ପଥରର ବେଞ୍ଚ ପଡ଼ିଥିଲା କିନ୍ତୁ ତା'ଉପରେ କେବେ କୌଣସି ମଣିଷ ବସିଥିଲେ, ସେ କଥା ଭଗବାନ ଜାଣନ୍ତି। କିନ୍ତୁ ମାଡ଼ାମ୍ ଆଗାଥେଙ୍କ ପାଇଁ ସେଇଠି ଯେପରି ସମସ୍ତ ସଂସାରଯାକର ହୃଦୟ ସ୍ପନ୍ଦିତ ହୋଇ ଉଠୁଥିଲା। ବିଶେଷତଃ ଛୁଟୀ ଦିନମାନଙ୍କରେ, ଯେତେବେଳେ ନିକୋଲାସ୍ ପ୍ୟାରିସ୍‌ରୁ ଘରକୁ ଆସୁଥିଲା, ସେ ଘରେ ନଥିବା ବେଳେ ମଧ୍ୟ ଏହି ସ୍ଥାନଟି କେବଳ ମାଡ଼ାମ୍ ଆଗାଥେଙ୍କୁ ଭାରି ପବିତ୍ର ମନେ ହେଉଥିଲା, କାରଣ ଏହି ସ୍ଥାନରୁ କେବଳ ଡ଼ାକେ ବାଟରେ ତ ତାଙ୍କର ଘର। ଛୁଟି ବେଳେ ନିକୋଲାସ୍ ସେହି ଘରେ ରହୁଥିଲା। ବୁଲେଭାର୍ଡ଼ର ଆର ପାଖରେ ଗୋଟିଏ ନିକାଞ୍ଚନ ଜାଗା ତାଙ୍କର ଅତି ପ୍ରିୟ ଥିଲା, ଯେଉଁଠି ଗୋଟିଏ ଛୋଟିଆ ବାଡ଼ର ଉଚ୍ଛୁଆଳରୁ ସେହି ଏକ ମହଲା କୋଠାରେ ଥିବା ନିକୋଲାସ୍ ଛୁଟିବେଳେ ରହୁଥିବା ଘରର ଝରକାଟିକୁ ସେ ବେଶ୍ ଦେଖି ପାରୁଥିଲେ। (ଅନ୍ୟ ସମୟରେ ମାଡ଼ାମ୍ ପ୍ଲାସାକ୍ ସେହି ଘରେ ରହୁଥିଲେ।) ମାଡ଼ାମ୍ ପ୍ଲାସାକ୍ ରହୁଥିବା ବେଳେ ସେହି ଝରକାଟି ସର୍ବଦା ବନ୍ଦ ରହୁଥିଲା, ଆକାଶଜଲା ଗୁଡ଼ିକ ମଧ୍ୟ ଆଉଜା ହୋଇ ରହୁଥିଲା। କିନ୍ତୁ ନିକୋଲାସ୍ ଘରକୁ ଆସିବା ମାତ୍ରକେ ପଡ଼ିଆ ପାଖରେ ଝରକାଟାକୁ ଖୋଲି ଦିଆଯାଉଥିଲା। ଅବଶ୍ୟ ଦି'ପହରେ ଭାରି ଗରମ ପଡ଼ିଥିବା ବେଳେ ତାହା ବନ୍ଦ ରହୁଥିଲା। ନିକୋଲାସ୍‌ର ରହିବା ଘର। ସିଧା ଉପର ମହଲାକୁ ଯିବାର ସାହସ ତାଙ୍କର ନ ଥିଲା। ଗତଥର ଯେଉଁଦିନ ସେ

ସେମିତି ସେଠାକୁ ଚାଲି ଯାଇଥିଲେ, ସେଦିନ ମାଡ଼ାମ୍ ପ୍ଲାସାକ୍ ତାଙ୍କୁ ଭାରି କଟୁ କରି ଅନେକ କଥା କହିଥିଲେ।

ଛୋଟ ପଡ଼ିଆଟିର ଗୋଟିଏ କଣକୁ ଯାଇ ବାଡ଼ ଭିତରେ ଥିବା ଗୋଟିଏ ଫାଙ୍କ ଦେଇ ସେ ପୁଣି ଅନାଇଲେ। ଓକ୍ ଗଛର ପାଦ ଦେଶରେ ଘାସଗୁଡ଼ିକ ପାତଲା ହୋଇ ବଢ଼ିଚି। ଆଗରୁ ସେ କେତେଥର ସେଠାରେ ବସିଚି। ଆପଣାର ରବର କନାଦିଆ ବରଷାତି କୋଟ୍‌ଟିକୁ ସେ ତଳେ ବିଛାଇଦେଲେ। କେବଳ ବଡ଼ ଆଇନାଟାକୁ ଛାଡ଼ି -ଦେଲେ ନିକୋଲାସ୍‌ର କୋଠରୀରୁ ଏଠିକି ଆଉ କିଛି ଦେଖାଯାଉ ନାହିଁ। ଆପଣାର ଥଳିରୁ ମାଡ଼ାମ୍ ଆଗାଥେ ବହିଟିଏ ବାହାର କଲେ। ଆଖି ପାହାନ୍ତାରେ ସେହି ପବିତ୍ର ଘରଟି ଥିବା ଯାଏ ଧାଡ଼ିଏ ମଧ୍ୟ ପଢ଼ିପାରିବା ତାଙ୍କ ପକ୍ଷରେ ସମ୍ଭବ ହୁଅନ୍ତା ନାହିଁ। ଏତିକିବେଳେ ସେ ହଠାତ୍ ନିକୋଲାସ୍‌ଙ୍କୁ ଦେଖି ପାରିଲେ। ମୁହୂର୍ତ୍ତକ ପରେ ଗିଲେସ୍ ସାଲୋନ୍ ମଧ୍ୟ ଆସି ସେଠାରେ ପହଞ୍ଚିଲା, ଝରକା ଉପରେ ହାତ ଭରା ଦେଇ ନିକୋଲାସ୍ ପାଖରେ ଆସି ଠିଆ ହେଲା। ଦୁହେଁଯାକ ଉହୁଙ୍କି କରି ବଗିଚା ଆଡ଼କୁ ଅନାଇଲେ। "ସନ୍ତସନ୍ତିଆ ମାଟିରୁ କେଡ଼େ ଚମତ୍କାର ଗନ୍ଧ ବାହରୁଚି!" -ବୋଧହୁଏ ସେମାନେ ଏହିପରି କିଛି କଥାବାର୍ତ୍ତା ହେଉଥିଲେ। ଲାଇମ୍ ଗଛର ନରମ ପତ୍ର ଉପରେ କେତେଟା ବଡ଼ ବଡ଼ ବର୍ଷା ବିନ୍ଦୁ ଚକଚକ କରୁଥାଏ। ପରସ୍ପର ଆଡ଼କୁ ନ ଅନାଇ ସେମାନେ କଥାବାର୍ତ୍ତା କରୁଥାନ୍ତି। ବେଳେବେଳେ ହସୁଥାନ୍ତି। ଗିଲେସ୍ ଧୂମପାନ କରୁଥାଏ। ନିକୋଲାସ୍‌ର ଧୂମପାନ କରିବାର ଅଭ୍ୟାସ ନାହିଁ। ତା'ର ଜୀବନରେ ସେ ଯାହାକୁ ତପସ୍ୟା ବୋଲି କହୁଚି, ଏ ହେଉଚି ସେହି ତପସ୍ୟାର ଏକ ନିୟମ। ତାହାରି ପାଇଁ ମାଡ଼ାମ୍ ଆଗାଥେ ମଧ୍ୟ ଧୂମପାନ ଛାଡ଼ି ଦେଇଥିଲେ। ଏକ କରୁଣ ଅଭିଳାଷ ସହିତ ସେ ସେହି ଆଡ଼କୁ ଅନାଇ ରହିଥାନ୍ତି, ତଥାପି ସେହି ରହସ୍ୟକୁ ଭେଦ କରି ପାରୁ ନଥାନ୍ତି। ଦୁଇ ଯୁବକଙ୍କର ଏହି ସମ୍ପର୍କ ମଧ୍ୟରେ ଯେପରି ତାଙ୍କ ଲାଗି କୌଣସି ସ୍ଥାନ ନଥିଲା। ନିକୋଲାସ୍ ତାଙ୍କୁ ଭଲ ପାଉଥିଲେ ମଧ୍ୟ ତଥାପି ସେ ସେହି ରହସ୍ୟକୁ ଭେଦ କରି ପାରି ନଥାନ୍ତେ। ପାପଠାରୁ ଅଧିକ ସରଳ ଓ ଅଧିକ ରହସ୍ୟମୁକ୍ତ ଆଉ କ'ଣ ସଂସାରରେ ଅଛି ? ତାଙ୍କର ବିବାହର ପ୍ରଥମ ରାତ୍ରିରେ ଯେଉଁଦିନ ତାଙ୍କର ଯୁବକ ସ୍ୱାମୀ ଆପଣାର ସଙ୍ଗୀକୁ ନେଇ ତାଙ୍କୁ ପରିତ୍ୟାଗ କରି ପଳାଇଲେ, ସେହି ଅଧ୍ୟାୟକୁ ତ ଏକ ଅତି ସାଧାରଣ ଅଧ୍ୟାୟ ବୋଲି କହିବାକୁ ହେବ। ମାନବୀୟ ଲଜ୍ଜାର ଇତିହାସରେ ଏହା ଏକ ଅବଶ୍ୟମ୍ଭାବୀ ତଥା ସଂକ୍ଷିପ୍ତ ଅଧ୍ୟାୟ। କିନ୍ତୁ ଦୁଇଜଣ ଯୁବକଙ୍କ ମଧ୍ୟରେ ଏହି ଯେଉଁ ଅତିରିକ୍ତ ଗୋପନ ବନ୍ଧୁତା, ଏହା ଏକାବେଳେକେ ଭିନ୍ନ ପ୍ରକାରର। ପରସ୍ପରକୁ କୌଣସି ପ୍ରକାରେ ବିରକ୍ତି ନକରି ଯେ ସେମାନେ ପରସ୍ପର ପାଖରେ ଅନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ କାଳ କ୍ଷେପଣ କରି ପାରିବେ, ଏକଥା ଦୁହେଁ ଖୁବ୍ ଭଲ କରି ଜାଣିଥିଲେ। ସବୁକଥା ସେମାନେ ଏକାଠି କରୁଥିଲେ, ଏକାଠି ପଢୁଥିଲେ, ଏକାଠି ସ୍ୱପ୍ନ ଦେଖୁଥିଲେ। ବାସନାର ତରଙ୍ଗ ଉପରେ ଏକାଠି ଭାସି

ବୁଲୁଥିଲେ । କେହି ଅବଶ୍ୟ ମୁହଁରେ କିଛି କହୁନଥିଲା, କିନ୍ତୁ ସେମାନେ ପରସ୍ପରକୁ ସମ୍ପୂର୍ଣ୍ଣ ରୂପେ ବୁଝି ପାରୁଥିଲେ । ପରସ୍ପରକୁ ବୁଝିବା ଲାଗି ସେମାନଙ୍କର ନିଜସ୍ୱ ଏକ ଗୋପନ ଭାଷା ଥିଲା, କଥାର କୌଶଳମାନ ମଧ୍ୟ ଥିଲା, ଯାହା ବିଷୟରେ ଅନ୍ୟ କେହି ଜାଣି ନଥିଲେ । ଓଃ, ଏହି ରହସ୍ୟର ଅସ୍ତିତ୍ୱଟା ମାଡ଼ାମ୍ ଆଗାଥେଙ୍କୁ ମନେମନେ କେଡ଼େ ବିରକ୍ତିକର ବୋଧ ହେଉ ନଥିଲା, ତାଙ୍କୁ କେତେ ଗଭୀର ଭାବରେ ଉତ୍ପୀଡ଼ନ କରୁ ନଥିଲା ।

ପତ୍ର ଉପରେ ସେ ବର୍ଷା ବିନ୍ଦୁର ପ୍ରଥମ ପତନ ଶବ୍ଦ ଶୁଣିବାକୁ ପାଇଲେ, କିନ୍ତୁ ଦେହ ଉପରେ ପଡୁଥିଲେ ମଧ୍ୟ ଏପର୍ଯ୍ୟନ୍ତ ତାହା ସେ ଅନୁଭବ କରି ପାରୁ ନଥାନ୍ତି । ଝରକା ଉପରୁ ବଗିଚା ଭିତରକୁ ଝୁଙ୍କି ପଡ଼ିଥିବା ଓ ପରସ୍ପରକୁ ପ୍ରାୟ ସ୍ପର୍ଶ କରୁଥିବା ଆଲୁଳାୟିତ କେଶବିଶିଷ୍ଟ ସେହି ବଡ଼ ମୁଣ୍ଡ ଦୁଇଟି ଆଡ଼କୁ ସେ ଅନାଇ ରହିଥାନ୍ତି । ଓକ୍ ଗଛର ଗଣ୍ଡିଟା ଉପରେ ଏତେ ସମୟ ଆଉଜି ରହିବା ଫଳରେ ତାଙ୍କ ଦେହକୁ ଟିକିଏ କାଟିଲା । ମାଟି ବେଶ୍ କଠିନ ଥାଏ । ତାଙ୍କର କାନ ପାଖରେ ସେ ସେହି ଶୁଷ୍କ ଏବଂ ତୃଣହୀନ ପଡ଼ିଆର କମ୍ପନ ଶବ୍ଦ ଶୁଣିବାକୁ ପାଇଲେ । ରୁମାଲଟା ବାହାର କରି ସେ ମୁହଁରୁ ଝାଳ ପୋଛିଲେ । ବିନ୍ଦୁଏ ଦୁଇବିନ୍ଦୁ ପାଣି ତାଙ୍କର କପାଳ ଉପରେ ଆସି ପଡ଼ିଲା, ବେକ ବାଟଦେଇ କାନ୍ଧବାଟେ ତଳକୁ ବୋହିଗଲା । ହଠାତ୍ ଜୋରରେ ବର୍ଷା ହେବାକୁ ଆରମ୍ଭ କଲା । ଯୁବକ ଦୁହେଁ ବାହାରକୁ ହାତ ବଢ଼ାଇ ତାକୁ ଅନୁଭବ କରିବାକୁ ଲାଗିଲେ । ଆଗାଥେ ଉଠିଯାଇ ଆପଣାର ବରଷାତି କୋଟ୍‌ଟି ପିନ୍ଧି ନେଲେ । ଓକ୍ ଗଛଟିର ଉଢୁଆଳରେ ଠିଆ ହୋଇ ସେ ବେଶ୍ ବରଷାରୁ ରକ୍ଷା ପାଇଗଲେ । ହଠାତ୍ ବିଜୁଳିର ଆଲୁଅରେ ତାଙ୍କର ଆଖି ଅନ୍ଧ ହୋଇଗଲା ପରି ମନେ ହେଲା । ବୃଷ୍ଟିପାତର ସୁ ସୁ ଶବ୍ଦ ଭିତରେ କଳାମେଘର ଗର୍ଜନ ବୁଡ଼ି ଯାଉଥାଏ । ତେଣେ ଝରକା ବନ୍ଦ ହୋଇଗଲା । ତଥାପି ଘର ଭିତରୁ ସେ ଆଲୁଅର ରଶ୍ମି ଦେଖି ପାରୁଥାନ୍ତି । ମଝିରେ ମଝିରେ କେବଳ ସେହି ଦୁଇଜଣ ଯୁବକଙ୍କ ଭିତରୁ କାହାରି ଜଣକର ଦେହର ଛାଇରେ ସେହି ରଶ୍ମି ବ୍ୟାହତ ହୋଇ ଯାଉଥାଏ ।



# ଛଅ

ଓଦା ହୋଇ ମାଡ଼ାମ୍ ଆଗାଥେଙ୍କର ପଶମ ଟୋପିରୁ ପାଣି ବୋହୁଥାଏ। ଟୋପି କାଢ଼ି ପକାଇ ସେ ରୁମାଲ ଦ୍ୱାରା ମୁଣ୍ଡଟା ପୋଛିଦେଲେ। ବର୍ଷାର ଏହି ପ୍ରାଚୀର ଏବଂ ଏହି ଘର, ଉଭୟେ ମିଶି ଦୁଇ ଯୁବକଙ୍କର ମଧ୍ୟରେ ଥିବା ଅଭେଦ୍ୟ ଅନ୍ତରଙ୍ଗତାକୁ ଦୃଷ୍ଟି ପଥରୁ ଅନ୍ତରାଳ କରି ରଖିଥିଲେ। ଆଗରେ ଏକତ୍ର ହୋଇ ଠିଆ ହୋଇଥିବା ଏହି ସବୁ ଅନ୍ତରାୟ ତଥାପି ଏହି ରକ୍ତହୀନ, ବୃଷ୍ଟି ଝଟିକା ସିକ୍ତ କ୍ଷୁଦ୍ର ଜୀବଟିକୁ ନିରସ୍ତ କରି ପାରିଲା ନାହିଁ। ଓଲଟି ତାଙ୍କର ଜଡ଼ତା ଭାଙ୍ଗି ଦେବାରେ ତାହା ସହାୟତା କଲା। ମେରୁଦଣ୍ଡକୁ ଦମ୍ଭ କରି ଦେଇ ସେ ବର୍ତ୍ତମାନ କଣ କରିବେ ବୋଲି ଭାବିବାକୁ ଲାଗିଲେ। ନିକୋଲାସ୍ ତାଙ୍କର ମର ଭାବନାକୁ ଅଧିକାର କରିନେବା ଦିନଠାରୁ ଛୁଟି ଦିନମାନଙ୍କରେ ତାହାର ସମସ୍ତ କାର୍ଯ୍ୟ ନିର୍ଘଣ୍ଟର ନିୟମମାନ ସେ ଅତି ଦକ୍ଷତାର ସହିତ ଆୟତ୍ତ କରି ନେଇଥିଲେ। ପ୍ରତ୍ୟେକ ରବିବାର ଦିନ, ମାଆ ସନ୍ଧ୍ୟା ପ୍ରାର୍ଥନାରୁ ଘରକୁ ଫେରି ଆସିଲେ, ଶୋଇବା ପୂର୍ବରୁ ଅବଶିଷ୍ଟ ସମୟତକ ନିକୋଲାସ୍ ମାଆ ପାଖରେ ଅତିବାହିତ କରୁଥିଲା। ପାଗ ଭଲ ଥିଲେ ନିଜ ହାତରେ ମାଆର ଦେହରେ ଖଣ୍ଡେ ସାଲ୍ ପକାଇ ଦେଉଥିଲା ଓ ସେଥିରେ ପ୍ରାଚୀନ କାଳର ଗୋଟିଏ ବ୍ରୁଚ୍ ଲଗାଇ ଦେଉଥିଲା। ତା'ପରେ ମାଆର ହାତ ଧରି ଗୋଲ ବଜାର ଆଖ ପାଖରେ ଟିକିଏ ବୁଲି ଆସୁଥିଲା। ଆପଣାର ମାଆ ପ୍ରତି ସେ ଏପରି କରିବା ଦ୍ୱାରା କେତେ ଶ୍ରଦ୍ଧା ଓ ଅନୁରକ୍ତି ଦେଖାଉଥିଲା, ଏ ବିଷୟରେ ସେ ଯଥେଷ୍ଟ ସଚେତ ଥିଲା ଓ ଏଥିଲାଗି ଗୋଟାଏ ପ୍ରକାରର ଆନନ୍ଦ ମଧ୍ୟ ଅନୁଭବ କରୁଥିଲା। କିନ୍ତୁ ବର୍ଷା ପାଗ ହୋଇଥିଲେ ଦୁହେଁଯାକ ଝରକା ପାଖରେ ବସି ଡ୍ରଟ୍ ଖେଳୁଥିଲେ। ବେଳେବେଳେ ଅବଶ୍ୟ ଏପରି ଅବସର ଅଧିକାଂଶ ଦିନ ଘଟୁ ନଥିଲା, - ସେ ମାଆକୁ ବହି ପଢ଼ି ଶୁଣାଉଥିଲା; ସାହିତ୍ୟରେ ଯେଉଁସବୁ ସୁନ୍ଦର ଅଂଶମାନ ତାକୁ ଭଲ ଲାଗେ, ସେହିଗୁଡ଼ିକ ସେ ମାଆକୁ ବୁଝାଇ ଦେବାକୁ ଚେଷ୍ଟା କରୁଥିଲା। ମଝିରେ ମଝିରେ ମାଆ ହାସ୍ୟାସ୍ପଦ ମନ୍ତବ୍ୟମାନ ପ୍ରକାଶ କରୁଥିଲେ। ଶେଷରେ ଏକ କ୍ଷୀଣ ମଧୁର ଘୁଙ୍ଗୁଡ଼ି ଶବ୍ଦ ଆସି ନିକୋଲାସ୍‌ର କାନରେ ବାଜୁଥିଲା। ଏଥର ଏକୁଟିଆ ପଢ଼ିବା ବରଂ ଭଲ, ସେହି ଶବ୍ଦ ଯେପରି ତାକୁ ଏହିକଥା ଚେତାଇ ଦେଇ ଯାଉଥିଲା। ତେଣୁ ସନ୍ଧ୍ୟା ପ୍ରାର୍ଥନା ପରେ ଗିଲେସ୍ ନିଶ୍ଚୟ ସମ୍ମାନର ସହିତ ନିକୋଲାସ୍‌କୁ ତା' ମାଆ ପାଖରେ ରହିବାକୁ ଛାଡ଼ି ଦେଇ ଯିବ। ତେଣୁ ମାଡ଼ାମ୍ ଆଗାଥେ ଯେ ଗିଲେସ୍‌କୁ ବର୍ତ୍ତମାନ ତା' ବାପାଙ୍କ ଘରେ ଅବଶ୍ୟ ଦେଖିବାକୁ ପାଇବେ, ଏଥିରେ କୌଣସି ସନ୍ଦେହ ନାହିଁ। କିନ୍ତୁ ଆଗ ତାଙ୍କୁ ଘରକୁ ଯିବାକୁ ହେବ, ଲୁଗାପଟା ଓ ଜୋତା ବଦଳାଇବାକୁ ପଡ଼ିବ, ବାଳଗୁଡ଼ାକ ପରିଷ୍କାର କରି ଝାଡ଼ି ନେବାକୁ ପଡ଼ିବ। ଆପଣା ଶରୀରର ରୂପ ପ୍ରତି ନିୟମିତ ଦୃଷ୍ଟି ଦେବା

ହେଉଚି କୁରୂପ ବ୍ୟକ୍ତିର ସବୁଠାରୁ ଅଧିକ ନିର୍ଭରଯୋଗ୍ୟ ଅସ୍ତ୍ର, ଏହି କଥା ସେ ଖୁବ୍ ଭଲ ଭାବରେ ଜାଣିଥିଲେ। ଆହୁରି ଅଧଘଣ୍ଟାକ ପର୍ଯ୍ୟନ୍ତ ତ କେହି ଘରକୁ ଲେଉଟିବେ ନାହିଁ। ଆର୍‌ମଣ୍ଡ ଡୁବେର୍ନେଟ୍ ତାଙ୍କ କ୍ଲବରେ ଥିବେ, ତାଙ୍କର ପତ୍ନୀ ଓ କନ୍ୟା ଗୀର୍ଜାକୁ ଯାଇଥିବେ।

ଶୀଘ୍ର ଘର ଭିତରକୁ ଯାଇ ସେ ଦରଜି ସିଲାଇ କରିଥିବା ଧୂସର ରଙ୍ଗର ଆଉ ଗୋଟାଏ ପୋଷାକ ପିନ୍ଧିନେଲେ। ମାଡ଼ାମ୍ ଡୁବେର୍ନେଟ୍‌ଙ୍କର କୋଠରୀ ଭିତର ଦେଇ ଚାଲି ଯାଉଚନ୍ତି ହଠାତ୍ ଯେପରି ଗୋଟାଏ ଗଁ ଗଁ ଶବ୍ଦ ଶୁଣି ସେ ଠିଆ ହୋଇଗଲେ। ହଁ, ପିଲା ଜନ୍ମ କଲାବେଳେ ସ୍ତ୍ରୀଲୋକମାନେ ଯେମିତି ଜନ୍ତୁ ବୋବାଳି ଛାଡ଼ିଲା ପରି ଚିତ୍କାର କରନ୍ତି, ସେମିତି। ହାତରେ ଠେଲି ଦେଇ ସେ କବାଟଟାକୁ ଖୋଲି ଦେଲେ। ସେତେବେଳକୁ କୁଳିଆ ମୁଣ୍ଡରୁ ଟୋପି ଓ ଗୋଡ଼ରୁ ଜୋତା ବି ଓହ୍ଲାଇ ନଥାନ୍ତି। ତାଙ୍କର ହାତର କଳା ମୋଜାଟା ତଥାପି ହାତ ଭିତରେ ରହିଥାଏ। ଆଣ୍ଠୁ ଦୁଇଟାକୁ ଉପରକୁ ଟେକି ସେ କଡ଼ ମାଡ଼ି ଶୋଇଥାନ୍ତି। ମାଡ଼ାମ୍ ଆଗଥେଙ୍କୁ ଦେଖି ପାରି ସେ ତରବର ହୋଇ ତାଙ୍କର ଫୁଲା ଫୁଲା ଗୋଡ଼ ଉପରେ ଥିବା ଭାଙ୍ଗ ପଡ଼ିଯାଇଥିବା କଳା ମୋଜାକୁ ଲୁଚାଇବା ଉଦ୍ଦେଶ୍ୟରେ ପିନ୍ଧିଥିବା କୁର୍ତ୍ତାଟାକୁ ତଳକୁ ଟାଣି ଆଣିଲେ। ଖଟ ଆଉ କାନ୍ଥ ମଝିରେ ଥିବା ସନ୍ଧି ଭିତରକୁ ସେ କଳା କଳା ଦାଗ ଲାଗିଥିବା ଗୋଟାଏ ତଉଲିଆ ଭର୍ତ୍ତି କରିଦେଲେ, ଯେପରି ସେଇଟା କାହାରି ଆଖିରେ ନପଡ଼େ।

"ଅନେକ ଦିନ ହେଲା ଏହି ରୋଗ ମତେ ଆକ୍ରମଣ କରି ନଥିଲା... କିନ୍ତୁ ବର୍ତ୍ତମାନ ବେଶ୍ ଭଲ ଲାଗି ଆସିଲାଣି। ...ଔଷଧ ମଧ୍ୟ ଖାଇଚି। କେବଳ ଦେହଟା ଯାହା ଭାରିଭାରି ଲାଗୁଚି, ନହେଲେ.....।"

ମାଡ଼ାମ୍ ଆଗାଥେ ଦଉଡ଼ି ଯାଇ ତାଙ୍କର ନାଡ଼ୀ ଦେଖିଲେ, ଲୋଚାକୋଚା ହୋଇଯାଇଥିବା ତକିଆଟାକୁ ହାତରେ ମାଠିମୁଠି ବାଗେଇ ଦେଲେ ଏବଂ ସତେ ଅବା ଆପଣାର ମନ ଭିତରେ ଥିବା ଉଦ୍‌ବେଗକୁ ଚାପି ରଖିବାକୁ ଯାଇ କହିଲେ, "ଏଥର ମୁଁ ଯେମିତି କହିବି, ଆପଣଙ୍କୁ ଠିକ୍ ସେହିପରି କରିବାକୁ ପଡ଼ିବ। ବର୍ତ୍ତମାନ ଆପଣଙ୍କୁ ମୋର ସବୁ କଥା ମାନିବାକୁ ହେବ। ଆଜି କୌଣସି ଜଣେ ଡ଼ାକ୍ତରଙ୍କ ପାଖକୁ ଯାଇ ଭଲ କରି ଗୋଟାଏ ପରୀକ୍ଷା କରାଇନେବା ଦରକାର। "

ଓଠଗୁଡ଼ାକ ନେଫେଡ଼ି ଦେଇ, ଖଚର ପରି ଗୋଟାଏ ଏକଜିଦିଆ ମୁଖାକୃତି କରି କୁଳିଆ ବିଛଣା ଉପରେ ପଡ଼ି ରହିଥାନ୍ତି। ମନା କରିବାର କୌଣସି ସଂକେତ ବା ଇଙ୍ଗିତ ତାଙ୍କଠାରୁ ମିଳୁ ନଥାଏ। ଗୋଡ଼ ଦୁଇଟାକୁ ସେ ଖୁବ୍ ଜୋର୍‌ରେ ଯାକିକରି ରଖିଥାନ୍ତି ଓ ତାଙ୍କର ଦୁଇଟିଯାକ ଛୋଟ ହାତରେ ତଳିପେଟକୁ ଚିପି ଧରିଥାନ୍ତି। ଗୋଟାଏ ହାତର ହାତ ମୋଜାଟା ଏ ପର୍ଯ୍ୟନ୍ତ ମଧ୍ୟ ହାତରେ ରହିଥାଏ। ନା, ଆପଣାର ସମସ୍ତ ଯନ୍ତ୍ରଣାକୁ ସେ ଏହିପରି ଚୁପ୍ ହୋଇ ସହ୍ୟ

କରିବେ ପଛକେ, କିନ୍ତୁ ନାରୀ ଶରୀରରେ ଥିବା ଯାବତୀୟ ରୋଗର ଉତ୍ପତ୍ତିସ୍ଥାନ ସେହି ଲଜ୍ଜାଜନକ ଦେହାଂଶରେ  ସେ କୌଣସି ପୁରୁଷ ମଣିଷର ହାତ କଦାପି ବଜାଇବାକୁ ଦେବେ ନାହିଁ, ତାକୁ ଦେଖିବାକୁ ବା ଛୁଇଁବାକୁ କଦାପି ଦେବେ ନାହିଁ।  ସେହି ପୁରୁଷ ଡ଼ାକ୍ତର ହୁଅନ୍ତୁ କି ଆଉ ଯାହା ହୁଅନ୍ତୁ, ସେଥିରେ କିଛି ଯାଏ ଆସେ ନାହିଁ।  ଏପରି ପ୍ରକୃତିର ସ୍ତ୍ରୀଲୋକ ବର୍ତ୍ତମାନ ଯୁଗରେ ମଧ୍ୟ ମଫସଲ ଅଞ୍ଚଳରେ ଦେଖିବାକୁ ମିଳିବେ।  ମାଡ଼ାମ୍ ଡୁବେର୍ନେଟଙ୍କର ପ୍ରକୃତି ଠିକ୍ ସେହିମାନଙ୍କ ଭଳି।

"ଆପଣ ଆଗରୁ କେତେଥର ମୋର କୁହା ମାନିଛନ୍ତି"- ରୋଗୀର ପାଦରୁ ବୁଟ୍ ଜୋତା ଦୁଇଟା ବାହାର କରି ଦେଉ ଦେଉ ଆଗାଥେ କହିବାକୁ ଲାଗିଲେ "ମୋ ପାଖରେ ଆପଣ ଆପଣଙ୍କର ସ୍ୱାସ୍ଥ୍ୟ ଓ ଜୀବନ ସମ୍ବନ୍ଧରେ ସବୁ ବିଶ୍ୱାସ କଥା କହିଚନ୍ତି।  କେବେ କୌଣସି କଥା ଗୋପନ ରଖି ନାହାନ୍ତି। "

ମାଡ଼ାମ୍ ଡୁବେର୍ନେଟ୍ ଆଖି ଫିଟାଇ ଅନାଇଲେ।  ଚତୁର ଓ କୁଟିଳ ଚାହାଣୀରେ ସତେ ଅବା ସେ କ'ଣ ସବୁ ନିରୀକ୍ଷଣ କରି ଦେଖୁଥିଲେ।  ପ୍ରକୃତରେ କ'ଣ ମାଡ଼ାମ୍ ଆଗାଥେ ତାଙ୍କୁ ଏତେ ବେଶୀ ଦେଖିପାରନ୍ତି ? ସେହି ଦୃଢ଼ତମ ଜନ୍ତୁ ମାଡ଼ାମ୍ ଆଗାଥେ ଯାହାଙ୍କର ଜୀବନରେ ଆପଣାକୁ ଗୋପନ କରି ରଖିବାର କୌଣସି ଆବଶ୍ୟକତା ନାହିଁ, ଯେପରି ତାଙ୍କ (ଜୁଲିଆ) ନିଜର ଅଛି।  ଡ଼ୋର୍ଥେ ଭଳି ଜାଗାରେ ଯେତେ ପ୍ରକାର ସାମାଜିକ ସଂସ୍କାର ଓ ନିୟମବନ୍ଧମାନ ରହିଚି, ସେଗୁଡ଼ିକ ପ୍ରତି ଅନ୍ତତଃ ପକ୍ଷେ ବାକ୍ୟରେ ନିଜର ଆନୁଗତ୍ୟ ଦେଖାଇବାର କି ଆବଶ୍ୟକତା ଆଗାଥେଙ୍କର ଅଛି ? କାମ୍ବ୍ରେନେସ୍ ପରିବାରରେ ଜନ୍ମ ହୋଇଥିବା ଏହି ଗୃହଧାତ୍ରୀ -ତାଙ୍କର 'ନିଜର ମୁଣ୍ଡ' ବୋଲି ଗୋଟାଏ ଜିନିଷ କୋଉଦିନ ଥିଲା ନା ଆଜି ଅଛି ? ହୃଦୟ ବୋଲି ସାଧାରଣତଃ ଯୋଉ ଜିନିଷଟାକୁ ବୁଝାଏ, ସେଇଟା ତାଙ୍କର କୋଉଦିନ ଥିଲା ? ଆଉ ସେଥିରେ ତାଙ୍କ (ଜୁଲିଆ) ଲାଗି କେବେ କୋଉଦିନ ଟିକିଏ ହେଲେ ସ୍ଥାନ ଥିଲା ? କ୍ଷଣକ ପାଇଁ ଅଧିକ ବୟସର ରମଣୀ ଜଣକ ନିଜର ଝାଳୁଆ ହାତମୁଠା ଭିତରେ କନିଷ୍ଠାଙ୍କର କୃଶ ଓ ଶୁଷ୍କ ହାତଟି ଯାବୁଡ଼ି ଧରିଲେ।

"ଥାଉ, ଏତେ ବ୍ୟସ୍ତ ହୁଅ ନାହିଁ।  ମୋ' ମାଆଙ୍କର ମଧ୍ୟ ଠିକ୍ ଏହିପରି ବେମାରି ଥିଲା।  କେବଳ ଲେର୍ଡ଼ସ ପାଣିର ପଟି ବାନ୍ଧିବା ବ୍ୟତୀତ ଏଥିପାଇଁ ସେ ଅନ୍ୟ କୌଣସି ଚିକିତ୍ସା କରୁ ନଥିଲେ।  ରୋଗଟା ଯାହା ହୋଇଥାଉ ପଛକେ, ତାହାକୁ ସେ ସେମିତି ଭିତରେ ଭିତରେ ଦବାଇ ରଖୁଥିଲେ।  ସିଏତ ପୁଣି ଏମିତି ଏମିତି କରି ଚଉରାଅଶୀ ବର୍ଷ ବଞ୍ଚିଲେ। ଜୀବନ ଥିବାଯାଏ ସେ ଥରେ ସୁଦ୍ଧା କୌଣସି ପ୍ରକାରର ଅପମାନଜନକ ପରୀକ୍ଷା କରାଇବାକୁ ଯାଇ ନଥିଲେ ବୋଲି ସେ ଭାରି ଗର୍ବ ଅନୁଭବ କରୁଥିଲେ।  ଆମ ସ୍ତ୍ରୀଜାତି ପକ୍ଷରେ ସେହି ସବୁ ପରୀକ୍ଷା କରାଇବା ପ୍ରକୃତରେ କେଡ଼େ ଲଜ୍ଜାର କଥା !"

ଦୀର୍ଘ ନିଶ୍ୱାସ ପକାଇ ସେ ପୁଣି କହିଲେ "ମୋତେ ବେଶ୍ ଭଲ ଲାଗିଲାଣି - ତୁମେ ଗୀର୍ଜା ଆଡ଼େ ଯାଉଚ କି ? ତାହାହେଲେ ଆସିଲାବେଳେ ମେରୀକୁ ସାଙ୍ଗରେ ନେଇ ଆସିବ।"

ସମ୍ମତିସୂଚକ 'ହଁ' କରି ମାଡ଼ାମ୍ ଆଗାଥେ ମୁଣ୍ଡ ଟୁଙ୍ଗାରିଲେ। ତଥାପି ସେ ମତ ଦେଲେ ଯେ ଝିଅଟିର ଯେପରି କେତେବେଳେ କୌଣସି ପ୍ରକାରର ଧାରଣା ନ ହୁଏ ଯେ ଆମେ ସବୁ ତା' ପଛରେ ସବୁବେଳେ ଜଗି ବୁଲୁଚୁ। ତା'ର ବିଶ୍ୱାସ ନ ହରାଇବା ହେଉଚି ସବୁଠାରୁ ବଡ଼ କଥା।

"ତୁମ ଉପରେ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ରହିଚି, ମାଡ଼ାମ୍ ଆଗାଥେ। ତୁମେ ଯାହା କରିବ ବା ସ୍ଥିର କରିବ, ତାହାଦ୍ୱାରା ଯେ ଝିଅର ସବୁଠାରୁ ଅଧିକ କଲ୍ୟାଣ ହେବ, ଏଥିରେ ମୁଁ କଦାପି ସନ୍ଦେହ କରିବି ନାହିଁ। ସିଏ ତ ମତେ ତା'ର ଶତ୍ରୁ ପରି ବିଚାରୁଚି। ଯେପରି କସ୍ମିନ୍‌କାଳେ ଏ ଭୟଙ୍କର ବିପଦ ନଘଟେ। ସେଥିପାଇଁ କେବଳ ତୁମରି ଉପରେ ମୁଁ ଭରସା ରଖିଚି। ଆଉ ଯଦି ଭଗବାନ ମତେ ନେଇଯିବାକୁ ଚାହାନ୍ତି..."

"ଏପରି କଥା ଆପଣଙ୍କର ତୁଣ୍ଡରେ ଧରିବା ଉଚିତ ନୁହେଁ ଜୁଲିଆ!"

"ମୁଁ ଚାହେଁ ଯେ ଏ ଘରେ କୌଣସି ପ୍ରକାରର ପରିବର୍ତ୍ତନ ନ ହେଉ ଏବଂ ମେରୀ...."

ଅଧିକ କିଛି କହି ନ ପାରି ସେ ଓଠ ଦୁଇଟିକୁ ଚାପି ରଖିଲେ। ତାଙ୍କର ନାକଟା ସତେ ଅବା କୌଣସି ଅନାଗତ ଘଟଣାର ଆଶଙ୍କାରେ ଚୁମୁଟା ଖାଇବା ପରି ଦେଖା ଯାଉଥାଏ। ଯେତେବେଳେ ତାଙ୍କୁ ଶବର ଅଭିନୟ କରିବାର ଡ଼ାକରା ଆସିବ, ସେତେବେଳେ ସେ କିପରି ସେହି ଭୂମିକାର ଅଭିନୟ କରିବେ, ସେ ଯେପରି ତାହାରି ଅଭିନୟ କରିବାକୁ ଚେଷ୍ଟା କରୁଥିଲେ। ସେ ପୁଣି ଥରେ ଆଖି ଫିଟାଇଲେ ଓ ମାଡ଼ାମ୍ ଆଗାଥେଙ୍କ ଆଡ଼କୁ ଅନାଇ କରି ହସିଲେ। ତାଙ୍କ ଉପରେ ନିଦ୍ରାର ଆବେଶ ମାଡ଼ି ମାଡ଼ି ପଡୁଥାଏ, ସବୁଥର 'ଦୁର୍ଘଟଣା' ଘଟିବା ପରେ ତାଙ୍କର ଠିକ୍ ଏହିପରି ହେଉଥିଲା। ଗୃହଧାତ୍ରୀ ତାଙ୍କ ପାଖରେ ବିଛଣା ଉପରେ ସେମିତି ବସି ରହିଥାନ୍ତି। ନିୟମିତ ନିଶ୍ୱାସର ଶବ୍ଦ ଶୁଣି ପାରିବା ପରେ ସେ ଭାବିଲେ ଯେ ଏଥର ସେ ଇଛା କଲେ ଯାଇ ପାରିବେ। ଗଲାବେଳେ ତାଙ୍କର ଜୋତା ମଚମଚ ଶବ୍ଦ କରୁଥାଏ। ଥିରିଥିରି ସେ କବାଟଟି ବନ୍ଦ କରିଦେଇ ଗଲେ।

ଏହିସବୁ ଜୀବଧାରୀମାନଙ୍କର ଯାନ୍ତ୍ରିକ ରୁଟିନ୍ ଉପରେ ମାଡ଼ାମ୍ ଆଗାଥେ ବେଶ୍ ନିର୍ଭର କରି ପାରୁଥିଲେ। ଗୀର୍ଜା ଘରେ ସନ୍ଧ୍ୟା ପ୍ରାର୍ଥନା ଶେଷ ନ ହେବାଯାଏ ମାଡ଼ାମ୍ ପ୍ଲାସାକ୍ ଘରକୁ ଫେରିବେ ନାହିଁ କି ଗିଲେସ୍ ମଧ୍ୟ ନିକୋଲାସ୍ ପାଖରୁ କଦାପି ଯିବ ନାହିଁ। ତେଣୁ ଡ଼ା. ସାଲୋନଙ୍କର ଘରକୁ ଯିବାଟା ବର୍ତ୍ତମାନ ଅତି ଶୀଘ୍ର ହୋଇଯିବ। କଡ଼ ପାଖରେ ଥିବା ଗୋଟିଏ ଦ୍ୱାର ଦେଇ ସେ ଗୀର୍ଜା ଭିତରେ ପ୍ରବେଶ କଲେ। ସେତେବେଳକୁ ଗୀର୍ଜାର ଜଣେ ଯାଜକ ପବିତ୍ର ଧର୍ମ ଶପଥ ପୂର୍ବରୁ ସନ୍ଧ୍ୟା ପ୍ରାର୍ଥନାର ବାକ୍ୟଗୁଡ଼ିକୁ ଉଚାରଣ କରୁଥାନ୍ତି।

ତାଙ୍କର ମୁଖରୁ ଉଚ୍ଚାରିତ ବାକ୍ୟଗୁଡ଼ିକ ଶେଷ ହେବା ସଂଗେ ସଂଗେ ସମବେତ ଧର୍ମମଣ୍ଡଳୀ ଟରଟର ହୋଇ ଗିଳି ପକାଇଲା ପରି ସେହି ସବୁ ବାକ୍ୟକୁ ଚିତ୍କାର କରି ଆବୃତ୍ତି କରିଯାଉଥିଲେ ଏବଂ ବେଶ୍ ଆଶ୍ଚର୍ଯ୍ୟର କଥା ଯେ ଗୀର୍ଜାରେ ଯେଉଁ ଅଳ୍ପ କେତେଜଣ ସ୍ତ୍ରୀଲୋକ ବିକ୍ଷିପ୍ତ ଭାବରେ ବସିଥିଲେ, ସେମାନଙ୍କର ଗୁରୁ-ଗମ୍ଭୀର ଚିତ୍କାର ଧ୍ୱନି ଗୀର୍ଜାଘରର ଉଚ୍ଚ ଛାତରେ ପ୍ରତିଧ୍ୱନିତ ହୋଇ ଉଠୁଥିଲା। ଆଣ୍ଠୁମାଡ଼ି ବସିବା ବା ପ୍ରାର୍ଥନାରେ ମନୋଧ୍ୟାନ ଦେବା ବିଷୟରେ କୌଣସି ପ୍ରକାର ମୁଣ୍ଡ ନଖେଳାଇ ମାଡ଼ାମ୍ ଆଗାଥେ ଗୋଟିଏ ଖୁମ୍ବର ଆଢୁଆଳରେ ଯାଇ ବସି ପଡ଼ିଲେ । ସେଠି ତାଙ୍କୁ କେହି ଦେଖି ପାରିଲେ ନାହିଁ। ଡୁବେର୍ନେଟ୍ ପରିବାର ସହିତ ତାଙ୍କର ଏହିପରି ଏକ ସାଲିସ୍ ହୋଇଯାଇ ଥିଲା ଯେ ସେ ଜାନ୍‌ସେନ୍ ଧର୍ମଗୋଷ୍ଠୀର ପରମ୍ପରା ମାନି ଚଳିବେ। କାମ୍‌ବ୍ଲେନେସ୍ ପରିବାର ପୁରୁଷ ପୁରୁଷ ଧରି ଏହି ପରମ୍ପରାକୁ ମାନି ଚଳି ଆସୁଥିଲେ। ସେହି ଅନୁସାରେ ମାଡ଼ାମ୍ ଡୁବେର୍ନେଟ୍ କେବଳ ଇଷ୍ଟର ପର୍ବ ସମୟରେ ପବିତ୍ର କମ୍ୟୁନିଅନ୍‌ର ବ୍ରତାନୁଷ୍ଠାନ କରୁଥିଲେ। ଅବଶ୍ୟ ସେତିକି ମଧ୍ୟ ସେ କରୁଥିଲେ କି ନାହିଁ, ସେଥିରେ ମଧ୍ୟ ସନ୍ଦେହ କରିବାର ଯଥେଷ୍ଟ କାରଣ ରହିଚି। ଫଳରେ ଲୋକମାନେ ଯାହା ଇଚ୍ଛା ତାହା କହୁଥିଲେ। ଧର୍ମାଚାରକୁ ଅମାନ୍ୟ କରିବା ବିଷୟରେ ତାଙ୍କର ଏହି ଯେଉଁ ଖ୍ୟାତି ଥିଲା, ସେଥିରେ ଯେ ବେଶ ଆତ୍ମପ୍ରସାଦ ଅନୁଭବ କରୁଥିଲେ। ଆପଣାର ଧର୍ମକୁ ସେ କୋଉଦିନୁ ହରାଇ ସାରିଚନ୍ତି ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା। କିନ୍ତୁ ପ୍ରକୃତରେ କଣ ସେକଥା କୁହାଯାଇ ପାରିବ ? ସତକଥା କହିବାକୁ ଗଲେ ତାଙ୍କର କୋଉଦିନ ଗୋଟାଏ ଧର୍ମ ଥିଲା ଯେ ସେ ତାକୁ ହରାଇ ପକାଇଲେ ? ଅବଶ୍ୟ ସେ ସବୁ ବିଷୟ କେବଳ ଦାର୍ଶନିକ ବିବାଦ ବିସମ୍ବାଦର ଅନ୍ତର୍ଗତ। ସିଧା କଥା ହେଉଚି ଯେ ଭଗବାନଙ୍କ ସହିତ ତାଙ୍କର କୌଣସି ସୂତ୍ର ସମ୍ପର୍କ ନଥିଲା ବା ଭଗବାନଙ୍କୁ ସେ କେବେହେଲେ କୌଣସି ବିଷୟ ଜଣାଉ ନଥିଲେ। ତାଙ୍କର ମତ ଥିଲା ଯେ ରୂପଲାବଣ୍ୟ ଦେଲାବେଳକୁ ଭଗବାନ ତାଙ୍କ ପ୍ରତି ନିଶ୍ଚୟ ବଡ଼ ପକ୍ଷପାତ ବିଚାର କରିଚନ୍ତି। ତାଙ୍କ ଜୀବନରେ ବିଦ୍ଧ ହୋଇ ରହିଥିବା କଣ୍ଟାଗୁଡ଼ିକୁ ସେ ଗୋଇଠା ମାରୁଚନ୍ତି, -ଡୁବେର୍ନେଟ୍ ପରିବାରଠାରୁ ଅଧିକ ଦୂରଦୃଷ୍ଟି ସମ୍ପନ୍ନ ଜଣେ ଯାଜକ ଥରେ ଏହିପରି ମନ୍ତବ୍ୟ ପ୍ରକାଶ କରିଥିଲେ। ପ୍ରାର୍ଥନା କରି କି ଲାଭ ? ସଂସାର ଗୋଟାକର ପ୍ରାର୍ଥନା କଲେ ମଧ୍ୟ ତାଙ୍କର କୁତ୍ସିତ କଦାକାର ଚେହେରାଟା ସୁନ୍ଦର ହୋଇଯିବ୍ ନା ତାଙ୍କର ବକ୍ଷସ୍ଥଳଟା ଅଧିକ ଉଚ୍ଚ ହୋଇଯିବ ? ଯାହାର ଆତ୍ମାକୁ ଏତେଦୂର ମାରି ଦିଆ ହୋଇଛି, ଶାରୀରିକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଯେ ଏପରି ଶୋଚନୀୟ ଭାବରେ ବଞ୍ଚିତ ହୋଇ ରହିଚି, ଶାଶ୍ୱତ ପ୍ରେମର ଗୋଟାଏ କଣିକା ମଧ୍ୟ କିପରି ତା'ର ଜୀବନକୁ ସ୍ପର୍ଶ କରିପାରିବ ? ଆଗରେ ବସିଥିବା ଛଅ ଧାଡ଼ି ଛୋଟ ଛୋଟ ଝିଅ 'ଆମ୍ଭମାନଙ୍କ ଲାଗି ପ୍ରାର୍ଥନା କର' ପ୍ରାର୍ଥନା ମନ୍ତ୍ରଟି ଉଚ୍ଚାରଣ କରୁଥାନ୍ତି, ସେମାନଙ୍କର ମୁଖର ଶବ୍ଦ ବୋମା ପଡ଼ିବା ପରି ସିଧା ଯାଇ ପୂଜାବେଦୀ ଉପରେ ପଡୁଥାଏ। ଦୁଇଜଣ ବୟସ୍କା ସନ୍ନ୍ୟାସିନୀଙ୍କର

ନିର୍ଦ୍ଦେଶରେ ଏହି ବୋମାରେ ଅଗ୍ନି ସଂଯୋଗ କରାଯାଉ ଥାଏ। ଆଗରୁ ଡ଼ୋର୍ଥେରେ ସନ୍ନ୍ୟାସିନୀମାନଙ୍କର ଗୋଟିଏ ଗୋଷ୍ଠୀ ଥିଲା। କିନ୍ତୁ କାଳକ୍ରମେ କେହି ସନ୍ନ୍ୟାସିନୀ ହେବାକୁ ନ ବାହାରିବାରୁ ଏହି ପରମ୍ପରା ବନ୍ଦ ହୋଇଗଲା। ଏହି ଦୁଇଜଣ ସନ୍ନ୍ୟାସିନୀ ସେହି ପୁରୁଣା ଗୋଷ୍ଠୀର ଅବଶେଷ ମାତ୍ର ଥିଲେ। ଗୀର୍ଜାରୁ ସବୁ ଲୋକ ଚାଲିଯିବା ପର୍ଯ୍ୟନ୍ତ ମାଡ଼ାମ୍ ଆଗାଥେ ଅପେକ୍ଷା କଲେ। ଏତିକିବେଳେ ଗୀର୍ଜାର ଅର୍ଗାନଟା କେତେଥର ପାଇଁ ଏକ ସବିରାମ ଗଅଁ ଗଅଁ ଶବ୍ଦ ଉଦ୍‌ଗାର କରିବାକୁ ଲାଗିଲା, ଠିକ୍ ଘୁଷୁରିମାନେ ଯେପରି ଶବ୍ଦ କରନ୍ତି। କୋଡ଼ିଏ ମରହଟ୍ଟୀ କାଳରୁ ପୁରୁଣା ଅରଗାନ୍, ଲକ୍ଷେ ଫ୍ରାଙ୍କ (ଫରାସୀ ଦେଶର ମୁଦ୍ରା) ଖରଚ କଲେ ମଧ୍ୟ ତାହାକୁ ପୂରା ସଜାଡ଼ି ହୁଅନ୍ତା ନାହିଁ। ସେଥିରୁ ପୁଣି ଶ୍ୱାସଗ୍ରସ୍ତ ରୋଗୀ ପରି ଗୋଟାଏ ଘଡ଼ ଘଡ଼ ବାହାରୁଥାଏ। ତାକୁ ଶୁଣିଲାବେଳେ ପ୍ରସ୍ତର ବିକୀର୍ଣ୍ଣ କୌଣସି ଏକ ଅରଣ୍ୟରେ ଥକା ହୋଇ ପଡ଼ିଥିବା ଗୋଟାଏ ବୃଦ୍ଧ ଓ ବଳହୀନ ସିଂହର ଶବ୍ଦ ପରି ଶୁଭୁଥାଏ।

## ସାତ

ବୁଲେଭାର୍ଡ଼ ଜନଶୂନ୍ୟ ହୋଇ ଯାଇଥାଏ। ଗଭୀର ଚିନ୍ତାମଗ୍ନ ଭାବରେ ଗିଲେସ୍ ତାହାରି ଉପର ଦେଇ ଚାଲିଥାଏ। କୁଆଡ଼କୁ ଯାଉଚି, ସେ ବିଷୟରେ ଆଦୌ ସଚେତ ନଥାଇ ମଧ୍ୟ ସେ ବାପାଙ୍କ ଘରର କବାଟ ପାଖରେ ଯାଇ ପହଞ୍ଚିଲା। ସେତେବେଳକୁ ଡ଼ାକ୍ତର ସାଲୋନ୍ ତାଙ୍କର କାର୍‌ଟାକୁ ଷ୍ଟାର୍ଟ କରିବେ ବୋଲି ହ୍ୟାଣ୍ଡଲ୍ ମୋଡୁଥାନ୍ତି, କିନ୍ତୁ କୌଣସି ପ୍ରକାର ଷ୍ଟାର୍ଟ କରାଇ ପାରୁନଥାନ୍ତି। ଶେଷକୁ ସେଥିରୁ ନିବୃତ୍ତ ହୋଇ ସିଧା ଠିଆ ହେଲା ବେଳକୁ ତାଙ୍କର ମୁହଁ ବାଇଗଣିଆ ପଡ଼ିଯାଇଥାଏ। ତାଙ୍କର ତ ଆଦୌ ବେକ ନାହିଁ ବୋଲି କହିଲେ ମୋଟେ ଭୁଲ ହେବନାହିଁ। ଫଣଫଣ ହୋଇ ସେ କହୁଥାନ୍ତି –"ସେ ରଦ୍ଦି ସେଲଫ୍ ଷ୍ଟାଟର୍‌ଟା ଆଜି ପୁଣି ମୋତେ ଦଗା ଦେଲା।" "ଆଚ୍ଛା, ମୁଁ କରିଦେଉଚି" ଗିଲେସ୍ କହିଲା। ଗୋଟିଏ ଚାଷୀ ପିଲାର ଆଈବୁଢ଼ୀ ବେରାମ ଥିଲା, ସେଥିପାଇଁ ସେ ଡ଼ାକ୍ତର ବାବୁଙ୍କୁ ନେଇଯିବାକୁ ଆସିଥିଲା। ଆଈବୁଢ଼ୀର ପ୍ରକୃତରେ କି ରୋଗ ହୋଇଚି। ସେ ବିଷୟରେ ତା'ର କୌଣସି ଧାରଣା ନଥିଲା।

"ଆରେ ସେ ମଲାଣି ନା ବଞ୍ଚିଚି ? ଅନ୍ତତଃ ସେତିକି ତ ତୁ ମତେ ନିର୍ଭର କରି କହିପାରନ୍ତୁ! ବାଃ ରେ ! ମୋତେ ଏଠୁ ବାରମାଇଲ ବାଟ ଘୋଷାରି କରି ନେବୁ, ଆଉ ସେଠାରେ ପହଞ୍ଚି ମୁଁ ତା'ର ଶବଟାକୁ ଯାଇ ଦେଖିବି ! ମୁଁ ବାଜିମାରି କହୁଚି, ସେ ତେଣେ ନିଶ୍ଚୟ ମରି ସାରିବଣି।" ତା'ପରେ ଗିଲେସ୍ ଆଡ଼କୁ ଲକ୍ଷ୍ୟ କରି କହିଲେ, "ସବୁଥର ଠିକ୍

ଏହି କଥା ହିଁ ହୁଏ।"

"ତେବେ ଆପଣ କାହିଁକି ଯାଉଛନ୍ତି ?...ହୁଏତ ଏମିତି ଯାଉ ଯାଉ କୋଉଦିନ ଆପଣ ମଟର ଦୁର୍ଘଟଣା କରିବେ ଯେ ଶେଷକୁ ଯାଇ ଗୋଟାଏ ଖାତ ଭିତରୁ ହୁଏତ ଆପଣଙ୍କୁ ଉଦ୍ଧାର କରିବାକୁ ପଡ଼ିବ।" -କୌଣସି ସହାନୁଭୂତି ପ୍ରକାଶ ନକରି ପୁଅ ଜବାବ ଦେଲା।

"ହଁ, କିଛି ଅସମ୍ଭବ ନୁହେଁ " - ବାପା ଉତ୍ତର ଦେଲେ, ହଁ ପୁଅ, ତୋତେ ଗୋଟାଏ କଥା କହିବାକୁ ମୋର ମନେ ନାହିଁ। ଜଣେ ଭଦ୍ର ମହିଳା ତୋ' ସହିତ କ'ଣ ସବୁ ପରାମର୍ଶ କରିବାକୁ ଆସିଚନ୍ତି। ପ୍ରାୟ ଅଧଘଣ୍ଟା ହେଲା ସେ ବୈଠକଖାନାରେ ତୋ'ଲାଗି ଅପେକ୍ଷା କରିଚନ୍ତି। ସେ ତୋ' ସହିତ ଦେଖା କରିବାକୁ ଚାହାନ୍ତି - ଏଥର ତୋ' ପାଳି। "

"କିଏ ସେ ?"

"ସେ କଥାଟା କହିଦେଇ କାହିଁକି ମୁଁ ତୋ'ର ଉତ୍କଣ୍ଠା ଭାଙ୍ଗି ଦେବାକୁ ଯିବି ?" ଡ଼ାକ୍ତର କହିବାକୁ ଲାଗିଲେ (ହସିଲାବେଳେ ତାଙ୍କ ଆଖି ଦୁଇଟା ଯେପରି କୁଆଡ଼େ ଉଭେଇ ଗଲା ପରି ବୋଧ ହେଉଥିଲା। ) "ସେ ଏମିତି ଜଣେ ଭଦ୍ର ମହିଳା, ଯାହାଙ୍କର ତୋତେ ଅନେକ ବିଷୟ କହିବାକୁ ଅଛି। ଅବଶ୍ୟ ମୋର ସେଥିରେ ବିସ୍ମିତ ହେବାର କୌଣସି କାରଣ ନାହିଁ। ଭିତରକୁ ଯା' -ଚଞ୍ଚଳ।"

ବର୍ଷାରେ ଓଦା ହୋଇ ଯାଇଥିବା ଅରାଏ ବଗିଚାକୁ ଗିଲେସ୍ ଦଉଡ଼ି ଦଉଡ଼ି ପାରି ହୋଇ ଚାଲିଗଲା। ତରତରରେ ସେ ପୁଟୁନିଆ ଫୁଲର ଗୋଟାଏ ପଟାଳି ମଧ୍ୟ ଡ଼େଇଁକରି ଚାଲିଗଲା...ସନ୍ଧ୍ୟା - ପ୍ରାର୍ଥନାର ସୁଯୋଗ ନେଇ ଆଉ କ'ଣ ମେରୀ ତା' ସହିତ ସାକ୍ଷାତ୍ କରିବାକୁ ଆସିଚି କି ? ନା - ପୁରୁଣା 'ଲା ମଁଦ୍ ଇଲସ୍ତର' ପତ୍ରିକାଗୁଡ଼ାକର ଗୋଟାଏ ଗଦା ଉପରେ ମୁଣ୍ଡଟାକୁ ଝୁଲାଇ ଦେଇ ବସିଥିବା ସେହି ମନୁଷ୍ୟ ମୂର୍ତ୍ତିଟି କଦାପି ମେରୀ ହୋଇ ନପାରେ। ସେ ଘର ଭିତରେ ପ୍ରବେଶ କରୁ କରୁ ମାଡ଼ାମ୍ ଆଗାଥେ ଉଠି ଠିଆ ହେଲେ। ଦୁହେଁ ପରସ୍ପରର କରମର୍ଦ୍ଦନ କଲେ। ନିଜେ ଠିଆ ହୋଇ ରହି ଗିଲେସ୍ ତାଙ୍କୁ ଆସନ ଗ୍ରହଣ କରିବାକୁ ଇଙ୍ଗିତ ଦେଲା। ଗୋଟାଏ ସ୍ପଷ୍ଟ ଅଥଚ ଶୀତଳ ଦୃଷ୍ଟିରେ ସେ ତାଙ୍କ ଆଡ଼କୁ ଚାହିଁ ରହିଥାଏ । ଗିଲେସ୍ ଆସି ପହଞ୍ଚିବା ମାତ୍ରକେ, ସେ ଯେଉଁ ବିଷୟରେ ଆସିଥିଲେ, ସିଧା ସେହି ବିଷୟ ଉତ୍‌ଥାପନ କରିବାକୁ ଆଗରୁ ନିଷ୍ପତ୍ତି କରିଥିବା କଥା । ମାଡାମ୍ ଆଗାଥେଙ୍କର ମନେପଡ଼ିଗଲା । ନିଜର ଯୋଜନାମାନ ତିଆରି କରି ରଖିବାକୁ ତ ସେ ଯଥେଷ୍ଟ ସମୟ ପାଇଥିଲେ । ବୈଠକଖାନାରେ ତ ସେ ପ୍ରାୟ ଅଧଘଣ୍ଟାଏ ସମୟ ଏକୁଟିଆ ବସିଚନ୍ତି । ପିଆନୋ ଉପରକୁ କାନ୍ଥରେ ଟଙ୍ଗା ହୋଇଥିବା ବିବାହ-ଉତ୍ସବର ସମବେତ ଛବିଟି ଦେହରୁ ମାଡାମ୍ ସାଲୋନ୍ ଯେପରି ତାଙ୍କରି ଆଡ଼କୁ ଅନାଇ ରହିଥିଲେ । ଗିଲେସ୍ ଜନ୍ମ ହେବାର ମାତ୍ର ଅଳ୍ପ କେତେ ମାସ ପରେ ତାଙ୍କର ମୃତ୍ୟୁ ହୋଇଥିଲା । ସେଦିନ ଘରେ ଯେଉଁ ପଦାର୍ଥ ଯେଉଁ ସ୍ଥାନରେ ଥିଲା, ସେ ସବୁ ଚିରଦିନ ଠିକ୍ ସେହି ସ୍ଥାନରେ ରହିବ,

କେଉଁଠି କୌଣସି ପ୍ରକାରର ଅଦଳବଦଳ ହେବ ନାହିଁ, ଡାକ୍ତର ସାଲୋନ୍ ମନେ ମନେ ଏହିପରି ଏକ ଶପଥ କରିନେଇଥିଲେ । ତାଙ୍କର ପତ୍ନୀବିୟୋଗଜନିତ କ୍ଷତି ପାଇଁ ସେ ଅନେକ ଦିନରୁ ସାନ୍ତ୍ୱନା ପାଇସାରିଥିଲେ । କିନ୍ତୁ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ତିଆରି ହୋଇଥିବା ଆର୍ମ ଚେୟାର ଗୁଡ଼ାକ ଉପରେ ତଥାପି ଯେଉଁ ଲେସବୁଣା ଝାଡ଼ଣମାନ ପଡ଼ିଥିଲା, ସେଗୁଡ଼ାକ ସତେ କେଡ଼େ ଅବର୍ଜିଆ ଦେଖା ଯାଉଥିଲା । ଝରକାଗୁଡ଼ିକ ଉପରେ ତଥାପି ସେଇ ଝରା ନେଟ୍ ପରଦାଗୁଡ଼ିକ ପଡ଼ିଥିଲା; ସେହି ପରଦାର ଧାଡ଼ିଗୁଡ଼ିକୁ ତାଙ୍କର ପରଲୋକଗତା ଗୃହିଣୀ କେତେ ଧୈର୍ଯ୍ୟ ସହକାରେ କେତେ ବର୍ଷର ପରିଶ୍ରମ-ଦେଇ ତିଆରି କରି ନ ଥିଲେ !

"ମୁଁ ଯେଉଁ କାମରେ ଆସିଚି, ତୁମେ ନିଶ୍ଚୟ ତାହା ଅନୁମାନ କରି ପାରୁଥିବ ।" ଗିଲେସ୍ ମୁଣ୍ଡ ଟୁଙ୍ଗାରିଲା । ସେ ତାଙ୍କର ହାତବାରିସି ହେଉ, ମାଡାମ୍ ଆଗାଥେ କଣ ଏକଥା ଚାହୁଁଚନ୍ତି କି ? ଗିଲେସ୍ କେବେହେଲେ କାହାରି ହାତବାରିସି ହେବାକୁ ଯାଉ ନଥିଲା । ତଥାପି ହୁଏତ ଏ କ୍ଷେତ୍ରରେ ସେଥିରେ କିଞ୍ଚିତ୍ ବ୍ୟତିକ୍ରମ ଘଟିପାରେ । ଏତେ ଅସାଧାରଣ ପ୍ରବଳ ଓ ଏକାନ୍ତ ଭାବରେ ସେ ଯେଉଁ ବାସନା ପଛରେ ଧାଇଁଥିଲା, ସେହି ବାସନାର ଚରିତାର୍ଥତା ପ୍ରକୃତରେ ମାଡାମ୍ ଆଗାଥେଙ୍କ ଉପରେ ନିର୍ଭର କରୁନାହିଁ କି ? ବର୍ତ୍ତମାନ ମଧ୍ୟ ସେ ଅନେକ ଉପକାରରେ ଆସିପାରିବେ । ଏପରି ଜଣେ ଗୋପନ-ସହାୟତ୍ରୀ ସାହାଯ୍ୟ ନପାଇଲେ ଡୋର୍ଥେ ଭଳି ସ୍ଥାନରେ ଏକ ସମୃଦ୍ଧିଶାଳୀ ମଧ୍ୟବିତ୍ତ ପରିବାରର କନ୍ୟାସହିତ ସାକ୍ଷାତକରିବା ଲାଗି ଯୋଗାଡ଼ ମଧ୍ୟ କରି ହୁଅନ୍ତା ନାହିଁ ।

ଗାଲିଗାଇ ଭାରି ଧୀରେ ଧୀରେ କଥା କହୁଥାନ୍ତି । ସତେ ଅବା ସେ ବାଛି ବାଛି ଶବ୍ଦଗୁଡ଼ିକ ବ୍ୟବହାର କରୁଥାନ୍ତି ।

"କୁମାରୀ ଡୁବେର୍ନେଟଙ୍କର ଶିକ୍ଷାର ଦାୟିତ୍ୱ ମୋ' ଉପରେ ନ୍ୟସ୍ତ କରାଯାଇଛି । ତୁମର ଉପସ୍ଥିତି ତାଙ୍କର ମନକୁ ଅତିଶୟ ଅଶାନ୍ତ କରିପକାଇଚି ।..."

ସେ କହିଚାଲିଥାନ୍ତି..... ଯାହା କିଛି ଘଟୁନା କାହିଁକି, ମାଡାମ୍ ଆଗାଥେଙ୍କ ପ୍ରତି କୌଣସି ବୈର ଆଚରଣ କରିବା ଗିଲେସ୍‌ର ଉଚିତ ନୁହେଁ । ଆଗାଥେଙ୍କ ଉପରେ ଦୃଷ୍ଟି ପଡ଼ିଯିବା ମାତ୍ରକେ ତା'ର ମନରେ ଯେଉଁ ଘୃଣାଭାବ ଜାତ ହୁଏ, ତାହାର ଲେଶମାତ୍ର ଗନ୍ଧ ସେ ଯେପରି ନପାନ୍ତି, ତାହାହିଁ ହେଉଚି ସବୁଠାରୁ ବଡ଼ କଥା । ଆପଣାର ମନୋମତ ନହେଲେ ଯେଉଁ ଯୁବକମାନେ ଯୁବତୀମାନଙ୍କୁ ଘୃଣା କରନ୍ତି, ଗିଲେସ୍ ହେଉଛି ସେହିମାନଙ୍କ ଶ୍ରେଣୀର । କାଳେ ଆପଣା ମନ ଭିତରର ଭାବ ଗୁଡ଼ାକୁ ସେ ଗୋପନ କରି ନ ପାରିବ, ଏଥିପାଇଁ ଗିଲେସ୍‌ର ମନରେ ଭାରି ଭୟ ଥାଏ । ତେଣୁ ସେ ଭାରି ସାବଧାନତାର ସହିତ ନୀରବ ରହିବାକୁ ଚେଷ୍ଟା କରୁଥାଏ । କିନ୍ତୁ ଠିକ୍ ଏତିକିବେଳେ ମାଡାମ୍ ଆଗାଥେ କହିଲେ - "ମୁଁ ତୁମର ହୃଦୟକୁ ନିବେଦନ କରି କହୁଚି ।" ସେହି କଥା ପଦକ ଶୁଣି ପ୍ରାୟ ଦୈବାତ୍ ତା'ର ପାଟିରୁ ବାହାରିଗଲା - "କ୍ଷମା କରିବେ ମହାଶୟ, ମୋର କୌଣସି ହୃଦୟ ନାହିଁ ।''

ମାଡାମ୍ ଆଗାଥେ ବିସ୍ମୟାଭିଭୂତ ହୋଇ କହିଲେ; "ସେ କଥା ମୁଁ କଦାପି ବିଶ୍ୱାସ କରିପାରିବି ନାହିଁ ।

"ହୃଦୟ କହିଲେ ଆପଣ ଯାହା ବୁଝନ୍ତି; ମୋର ସେପରି ହୃଦୟ ନାହିଁ ।"

ମାଡାମ୍ ଆଗାଥେଙ୍କର କହିବା ବନ୍ଦ ହୋଇଗଲା । ଗିଲେସ୍‌କୁ ସେ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଅନାଇଗଲେ । ଏହି ଅନାଇବାର ମୋହନ ପ୍ରଭାବରେ ଚାଳିତ ହୋଇ ଗିଲେସ୍ ଯାଇ ତାଙ୍କର ଚେୟାର ସାମନାରେ ପଡ଼ିଥିବା ଆଉ ଗୋଟିଏ ଚେୟାର ଉପରେ ନଥକରି ବସିପଡ଼ିଲା । ଚେୟାରଟାକୁ ସେ ଆହୁରି ଆଗକୁ ଟାଣି ଆଣିଲା । ତା'ର ବଡ଼ ବଡ଼ ଆଣ୍ଠୁ ଦୁଇଟା ମାଡାମ୍ ଆଗାଥେ ପିନ୍ଧିଥିବା ଦରଜୀ ସିଲେଇ ଧୂସର ବର୍ଣ୍ଣର ଜାମାଟାକୁ ପ୍ରାୟ ସ୍ପର୍ଶ କରି ପକାଉଥିଲା ।

"ପ୍ରକୃତରେ କହିଲେ, କେଉଁ କାରଣରୁ ଆପଣ ଏଠାକୁ ଆସିଚନ୍ତି ?" - ସେ ପଚାରିଲା ।

କେଡ଼େ ନିର୍ବୋଧ ଗିଲେସ୍ । ଆପେ ବସିଥିବା ଚେୟାରଟାକୁ ମାଡାମ୍ ଆଗାଥେ ଟିକିଏ ପଛକୁ ଘୁଞ୍ଚାଇନେଲେ । ଗିଲେସ୍‌ର ଏପରି ବ୍ୟବହାରରେ ସେ ଆପଣାକୁ ମଧ୍ୟ ବେଶ୍ ତ୍ରସ୍ତ ଅନୁଭବ କରିବାକୁ ଲାଗିଲେ । ତା'ର ଆଚରଣ ଭିତରେ ଏହି ବିରକ୍ତିକର ପୁରୁଷପଣିଆର ପରାକ୍ରମଟା ତାଙ୍କୁ ଭାରି ଘୃଣା ଲାଗୁଥାଏ । ଏ ପରାକ୍ରମ ସିନା କୌଣସି ଅକିଞ୍ଚନ ଛୁଆଝିଅ ପାଖରେ ଦେଖାଇଲେ ଶୋଭା ପାଏ । ତାଙ୍କ ଭଳି ଜଣେ ବୟସ୍କା ଓ ଗୁରୁଜନ ସ୍ଥାନୀୟା ସ୍ତ୍ରୀଲୋକ ପାଖରେ ତାହା ଦେଖାଇବାରେ କି ଲାଭ ?

"କେବଳ ଆପଣ ହିଁ ମାଡାମ୍ ଡୁବେର୍ନେଟ୍‌ଙ୍କୁ ପ୍ରବର୍ତ୍ତାଇ ପାରିବେ" ଗିଲେସ୍ କହିଲା, "ମୋର ଅନୁମାନ ନିକୋଲାସ୍ ଆପଣଙ୍କୁ କାହା ସହିତ ତୁଳନା କରେ, ସେ କଥା ଆପଣ ଜାଣିଚନ୍ତି ।"

ମାଡାମ୍ ଆଗାଥେଙ୍କର ମୁଖ ରକ୍ତୋଜ୍ଜ୍ୱଳ ହୋଇ ଉଠିଲା । ତା' ହେଲେ ସେ ନିକୋଲାସ୍‌ର ମନରେ ପଡ଼ନ୍ତି । ନିକୋଲାସ୍ ପୁଣି ତାଙ୍କୁ ଜଣେ କାହାରି ସହିତ ତୁଳନା କରେ ।

"ଲେଓନାର ଗାଲିଗାଇ...ମୁଁ କାହା କଥା କହୁଚି ଆପଣ ବୁଝି ପାରୁଛନ୍ତି ତ ?"

"ହଁ, ନିଶ୍ଚୟ ବୁଝିପାରୁଚି ।"- ହସି ହସି ସେ ଉତ୍ତର ଦେଲେ । "ଲେଓନାର ଗାଲିଗାଇ, ଯିଏ ମେରୀ ଡି ମେଡିସିକୁ ବଶକରି ରଖିଥିଲା । ସେ କୌଣସି ଗୁଣିବିଦ୍ୟା ଜାଣେ ବୋଲି ଯେତେବେଳେ ତା'ର ନାମରେ ଅଭିଯୋଗ କରାଗଲା, ସେ ଉତ୍ତର ଦେଇଥିଲା ଯେ ଜଣେ ଦୃଢ଼ମନା ବ୍ୟକ୍ତି ଆଉଜଣେ ଦୁର୍ବଳମନା ବ୍ୟକ୍ତି ଉପରେ ଯେତିକି ଗୁଣି ବିସ୍ତାର କରେ, ସେତିକି ବ୍ୟତୀତ ଅନ୍ୟ କୌଣସି ଗୁଣିବିଦ୍ୟା ସେ ଜାଣେ ନାହିଁ । ନୁହେଁ ? କିନ୍ତୁ ମାଡାମ୍ ଡୁବେର୍ନେଟ୍‌ଙ୍କୁ ଯଦି ତୁମେ ଦୁର୍ବଳମନା ବୋଲି ଭାବୁଥାଅ, ତେବେ ତୁମେ ଭାରି ଭୁଲ କରୁଚ ।"

"ଅନ୍ତତଃ ଆପଣଙ୍କର ମନଟା ତ ଦୃଢ଼ ।"

"ସମ୍ଭବତଃ...."

ସେ ଦୀର୍ଘନିଶ୍ୱାସ ପକାଇଲେ । ତା'ପରେ କିଛି ସମୟ ନୀରବ ରହିବା ପରେ "କିନ୍ତୁ ମୁହଁର ଚେହେରା ଦେଖି ନିକୋଲାସ୍ ପ୍ଲାସାକ୍‌ଙ୍କ ବିଷୟରେ କୌଣସି ଅନୁମାନ କରିହେବ ନାହିଁ । ସେ ମଧ୍ୟ ଆଦୌ ଦୁର୍ବଳ ନୁହଁନ୍ତି ।"

"କିନ୍ତୁ ସେ ମୋତେ ଭାରି ଭଲ ପାଏ" - ଗିଲେସ୍ କହିଲା ।

ଉଠିକରି ସେ ଝରକାଟା ଖୋଲିଦେବାକୁ ଗଲା । ବର୍ଷା ତୋଫାନ ସମୟରେ ସମ୍ଭବତଃ ଚାକର ଖୋଲିଦେବାକୁ ଗଲା । ବର୍ଷା ତୋଫାନ୍ ସମୟରେ ସମ୍ଭବତଃ ଚାକର ସେଇଟାକୁ ବନ୍ଦକରି ଦେଇଥିଲେ । ଆପଣା ସହିତ କଥାବାର୍ତ୍ତା କଲାପରି ଖୁବ୍ ନୀରବ ଭାବରେ ସେ କହିଲା, - "ଇସ୍, ଦେହରେ ଟୋପାଏ ହେଲେ ରକ୍ତ ନଥିବା ଏଇ ସ୍ତ୍ରୀଲୋକ ଗୁଡ଼ାକ ! ଯେତେ ମାଠି ମୁଠି ଯତ୍ନକରି ଗାଧୋଇଲେ ମଧ୍ୟ ଯେମିତି ।..." ଗିଲେସ୍ ବର୍ଷାସିକ୍ତ ପିଟୁନିଆ ଫଳର ସୁଗନ୍ଧ ଆଘ୍ରାଣ କରୁଥିଲା । ସେ ଭାବୁଥିଲା, ଏଥର ଗାଳିଖାଇ ନିଶ୍ଚୟ ଗୋଟାଏ କିଛି ଓଜନଦାର ଉତ୍ତର ଦେବ ବୋଲି ବୋଧହୁଏ ଚିନ୍ତାମଗ୍ନ ହୋଇ ବସିଚି । କିନ୍ତୁ ତା'ର ଅନୁମାନ ସମ୍ପୂର୍ଣ୍ଣ ଭୁଲ । "ସେ ମୋତେ ଭାରି ଭଲପାଏ,"-ଗିଲେସ୍‌ର ଏଇ କଥା ପଦକ ସେତେବେଳଯାଏ ସେ ହଜମ କରିବାକୁ ଚେଷ୍ଟା କରୁଥାନ୍ତି । ଡାକ୍ତର ସାଲୋନ୍‌ଡ ଘରର ଏହି କ୍ଷୁଦ୍ର ଯୁବକଟି ନିଶ୍ଚୟ ନିକୋଲାସ୍ ଉପରେ ପ୍ରଭାବ ବିସ୍ତାର କରିପାରିବ,ଆଉ କେହି ପାରିବେ ନାହିଁ । ଯେକୌଣସି ମୁହୂର୍ତ୍ତରେ ଇଚ୍ଛାକଲେ କାମୁଡ଼ିବାକୁ ଦଉଡ଼ି ଆସୁଥିବା ବଦମେଜାଜୀ କୁକୁର ପରି ଦେଖାଯାଉ ଥିବା ଏହି ବର୍ବର ଅମାର୍ଜିତ ଯୁବକକୁ କେବଳ ଖୁସୀ କରିବା ଲାଗି ହୁଏତ ନିକୋଲାସ୍ ପ୍ଲାସାକ୍ ଆଗାଥେ ଡି କାମ୍‌ରେନେସ୍‌କୁ ବିବାହ କରିବା ପାଇଁ ସମ୍ମତ ହୋଇପାରେ । ଖୁବ୍ ଚେଷ୍ଟାକରି ସେ ଆପଣାକୁ କହିବାକୁ ବାଧ୍ୟ କଲେ ।

"ତୁମ କଥା ଓ ମୋ କଥା ସମାନ ନୁହେଁ । ମେରୀକୁ ପ୍ରବର୍ତ୍ତାଇବା ପାଇଁ ତୁମର ଆଦୌ ପ୍ରୟୋଜନ ନାହିଁ । କେବଳ ବାହାରର କେତେଟା ବାଧା ଅତିକ୍ରମ କରି ପାରିଲେ ହେଲା.... କିନ୍ତୁ ମୋର...."

"କିନ୍ତୁ ମୋର ଚେଷ୍ଟାରେ ମୁଁ ସଫଳ ହେବି ବୋଲି ମୁଁ ଆପଣଙ୍କୁ ନିଶ୍ଚିତ କରି କହିପାରିବି ନାହିଁ"-ଅର୍ଦ୍ଧକ୍ଷୀଣ ସ୍ୱରରେ ଗିଲେସ୍ କହିଲା ।

ହଠାତ୍ ଗିଲେସ୍ ଅନୁଭବ କଲା ସତେ ଯେପରି ତା'ର ଚିବୁକ କ୍ରୋଧରେ ସ୍ଫୀତ ହୋଇ ଉଠୁଚି । ସେ ଉଠି କରି ଝରକା ପାଖକୁ ଫେରି ଗଲା । ସେ ଭୟଙ୍କର ଜନ୍ତୁଟି କ'ଣ ଏପରି ଭାବିବାକୁ ଆରମ୍ଭ କଲାଣି ଯେ ଗିଲେସ୍ ନିକୋଲାସ୍‌କୁ ଧରିଆଣି ତା' ପାଖରେ ଉପହାର ଦେବ, ତା'ର ହାତଗୋଡ଼ ବାନ୍ଧି ତା'ଆଗରେ ଥୋଇଦେଇ ଯିବ ? ଅବଶ୍ୟ ଗିଲେସ ସହିତ ମେରୀର ବାଗ୍‌ଦାନ ପକ୍‌କା ହୋଇଗଲା ପର୍ଯ୍ୟନ୍ତ ଯାହା ନିକୋଲାସ୍‌କୁ ଏହି ସ୍ତ୍ରୀଲୋକଟିର

ମନ ଭୁଲାଇ ରଖିବାକୁ ପଡ଼ିବ । ତା'ପରେ ତ ଗୋଟାଏ ମୁହୂର୍ତ୍ତ ପାଇଁ ସୁଦ୍ଧା ନୁହେଁ । ନିକୋଲାସ୍‌କୁ ଆଣି ଏଇଟା ପାଖରେ ସମର୍ପଣ କରିବା କଥା ତ ସେ ସ୍ୱପ୍ନରେ ସୁଦ୍ଧା ଭାବି ପାରିବ ନାହିଁ । ତା'ର ବନ୍ଧୁକୁ ତା'ର ଆପଣାର ସ୍ୱାର୍ଥସିଦ୍ଧି ପାଇଁ ଲଗାଇବା ଲାଗି ନିକୃଷ୍ଟ ଯୋଜନାମାନ କରୁକରୁ ସେ ହଠାତ୍ ଉପଲବ୍ଧି କଲା ଯେ ପୃଥିବୀରେ ସମସ୍ତଙ୍କ ଠାରୁ ସେ ନିକୋଲାସ୍‌କୁ ହିଁ ସବୁଠାରୁ ଅଧିକ ଭଲପାଏ । ଏପରିକି କହିବାକୁ ଗଲେ ନିକୋଲାସ୍ ବ୍ୟତୀତ ସେ ଆଉ କାହାରିକୁ କେବେ ଭଲ ପାଇନାହିଁ । ଏହି ଉପଲବଧିଟିର ସ୍ମୃତି ସହିତ ବର୍ଷାସିକ୍ତ ପିଟୁନିଆ ଫୁଲର ସୁଗନ୍ଧ ତା'ର ମନ ଭିତରେ ସବୁଦିନ ପାଇଁ ଜଡ଼ିତ ହୋଇ ରହିଥିବ । ଏହି ଘରର କଣରେ ଯେଉଁ ସ୍ତ୍ରୀଲୋକଟି ବର୍ତ୍ତମାନ ବସିଚି, ସେ ବିଷୟରେ ଗିଲେସ୍ ସଂପୂର୍ଣ୍ଣ ଭାବରେ ବିସ୍ମୃତ ହୋଇ ପଡ଼ିଥିଲା । ଝରକା ଉପରର ପର୍ଦ୍ଦାରେ ଆଉ କଣ ଗୋଟାଏ ବାଦୁଡ଼ି ଲାଖିକରି ରହିଚି କି ? ବେଶ୍ ଅନେକ ସମୟ ପରେ ସେ ମୁଣ୍ଡ ବୁଲାଇ ଏଣେ ଚାହିଁଲା । ତା'ର ପରବର୍ତ୍ତୀ ପ୍ରଶ୍ନଟି ପଚାରିବା ଆଗରୁ ଗିଲେସ୍ ମାଡାମ୍ ଆଗାଥେଙ୍କ ଆଡ଼କୁ କଟମଟ କରି ଅନାଇ ରହିଥାଏ ।

"ତେବେ ଆଉ କେବେ ତା' ସହିତ ସାକ୍ଷାତ ହୋଇ ପାରିବ ? - ଅର୍ଥାତ୍ ମେରୀ ସହିତ ...ମେରୀ ସହିତ ମୋର କେବେ ଦେଖା ହୋଇ ପାରିବ ?"

'ପାଗଳ ! ତା' ସହିତ ତୁମର ଦେଖା ହେବାର ପ୍ରଶ୍ନ ହିଁ ଉଠୁ ନାହିଁ - ବର୍ତ୍ତମାନ ପର୍ଯ୍ୟନ୍ତ ନୁହେଁ । କେତେ ପିଲାଙ୍କ ପରି ତୁମେ କଥା କହୁଚ ! ...."

ଗିଲେସ୍‌କୁ ଅନାଇ ସେ ହସୁଥାନ୍ତି, ଟିକିଏ ଉପହାସ କଲା ପରି ।

ଯେଉଁ ସବୁ କଥା ସେ କହିବାକୁ ଆସି ଥିଲେ, ସେ ସମସ୍ତ ତ ଶେଷ ହୋଇଗଲା । ତେଣୁ ସେ ଆସନରୁ ଉଠି କରମର୍ଦ୍ଦନ କରିବାକୁ ଗିଲେସ୍ ଆଡ଼କୁ କର ବଢ଼ାଇଲେ । ଗିଲେସ୍ ଠିକ୍ କରମର୍ଦ୍ଦନ କଲାବୋଲି ଆଦୌ କହିହେବ ନାହିଁ । ଆପଣା ଆଙ୍ଗୁଠିରେ ଟିପ ଦେଇ ଯେପରି ସେ ମାଡାମ୍ ଆଗାଥେଙ୍କର ହାତଟିକୁ କେବଳମାତ୍ର ଛୁଇଁ ଦେଲା ।

"ମୋତେ ବୋଧ ହୁଏ ତୁମେ ଜଣେ ଅତି ନିର୍ବୋଧ ରମଣୀ ବୋଲି ମନେ କରୁଥିବ ।"

ରାଗିଗଲା ପରି ଗିଲେସ୍‌ର ମୁହଁ ରଙ୍ଗା ପଡ଼ିଗଲା । ସେ ବାହାରକୁ ଅନାଇ ଥାଏ । ବେଶ୍, ତା'ସହିତ ତାଙ୍କର ଯାହା କାମ ଥିଲା, ଶେଷ ହେଲା । ଆଉ ତ ବେଶୀ କିଛି କହିବାର ନାହିଁ । ଆଉ ଗୋଟିଏ ଶବ୍ଦ ମଧ୍ୟ ନୁହେଁ ।



# ଆଠ

ବଗିଚା ଭିତରେ ଡୁବେର୍ନେଟ୍ ପରିବାର ଡିନର୍ ଖାଇ ବସୁଥିଲେ । ବଡ଼ବଡ଼ ଟୁଲିପ୍ ଗଛର ଫାଙ୍କ ଦେଇ ଚନ୍ଦ୍ରର କିରଣ ଅଜାଡ଼ି ହୋଇ ପଡୁଥାଏ । ତେଣୁ ସେଠାରେ ଆଉ ଆଲୁଅ ଜଳାଇବାର କୌଣସି ଆବଶ୍ୟକତା ନଥିଲା । ଶ୍ରୀଯୁକ୍ତ ଡୁବେର୍ନେଟ୍ ଚିଜ୍ ଖାଇବାରେ ବ୍ୟସ୍ତ ଥାନ୍ତି । ମେରୀ ଯେପରି କେଉଁ ଅଦୃଶ୍ୟ ଡେଣାର ସାହାଯ୍ୟ ନେଇ ତା'ର ଚେୟାରଟି ଉପରେ ଲାଖିକରି ରହିଥାଏ, ଗୋଟାଏ ପ୍ରକାରର ସ୍ନାୟବିକ ଉଦ୍‌ବିଗ୍ନତାର ବଶବର୍ତ୍ତୀ ହୋଇ ସେ ଥରଥର ହୋଇ କମ୍ପୁଥାଏ । ମାଡାମ୍ ଆଗାଥେଙ୍କ ସହିତ କଥାବାର୍ତ୍ତା କରିବାକୁ ଏପର୍ଯ୍ୟନ୍ତ ସେ କୌଣସି ସୁଯୋଗ ପାଇ ନଥିଲା, କାରଣ ଯେମିତି ସେ ଆଗାଥେଙ୍କ ଘରକୁ ଯାଇଛି, ମାଆ ମଧ୍ୟ ତା'ର ପଛେ ପଛେ ଯାଇ ସେଠାରେ ପହଞ୍ଚିଗଲେ । ବୋଧହୁଏ ହଠାତ୍ ମାଆଙ୍କ ମନରେ ନିଶ୍ଚୟ କିଛି ସନ୍ଦେହ ଜନ୍ମିଥିଲା ।

ହଠାତ୍ ଗୋଟାଏ ଅପ୍ରତ୍ୟାଶିତ ପ୍ରଶ୍ନ ଉତ୍‌ଥାପନ କରି ଆର୍‌ମାଣ୍ଡ ଡୁବେର୍ନେଟ୍ ସମସ୍ତଙ୍କୁ ଚକିତ କରିଦେଲେ । ସମସ୍ତେ ତ ଭାବିଥିଲେ ସେ ବାସ୍ ଆରାମରେ ତାଙ୍କର ଖାଦ୍ୟ ହଜମ କରିବାରେ ବ୍ୟସ୍ତ ଅଛନ୍ତି । କିନ୍ତୁ ପ୍ରକୃତରେ ସେ ଖୁବ୍ ଗଭୀର ଚିନ୍ତାରେ ନିମଗ୍ନ ହୋଇ ରହିଥିଲେ ।

"ଆଗାଥେ, ଲା ରିଭ୍ୟୁରେ ନୂଆ ବାହାରିଥିଲା ମଣ୍ଟେସ୍କୁ ବିବରଣୀମାନ ତୁମେ ପଢ଼ିବ ?"

"ଏ ଜାଗାଟାରେ କ୍ରମେ ବେଶ୍ ଥଣ୍ଡା ଥଣ୍ଡା ଲାଗୁଚି, -" ଜୁଲିଆ ଡୁବେର୍ନେଟ କଥା କାଟିଲା ପରି କହିଲେ ।

ପନ୍ଦର ବର୍ଷ ପୂର୍ବେ, ଆରମାଣ୍ଡ ଏପରି ମନ୍ଥର, ଶିଥିଳ ଓ ପ୍ରାଣଶୂନ୍ୟ ହେବା ପୂର୍ବରୁ ଜୁଲିଆଙ୍କଠାରୁ ଏପରି ଏକ ମନ୍ତବ୍ୟ ଶୁଣିଥିଲେ ସେ ଏହାକୁ ଜୁଲିଆର ଗୋଟାଏ 'ହରିଣ-ନାଡ' ବୋଲି ନିଶ୍ଚୟ କହିଥାନ୍ତେ । ଏପରି ଗୋଟାଏ କଥାର ନାତ ମାରି ଅତ୍ୟନ୍ତ ଅବ୍ୟର୍ଥ ସଫଳତାର ସହିତ ସେ ଡୋରି ଛାଡ଼ି ପୂରାଦମ୍‌ରେ ଉଡ଼ିବୁଲୁଥିବା କଥୋପକଥନର ପକ୍ଷୀକୁ ସଙ୍ଗେସଙ୍ଗେ ତଳକୁ ନେଇଆସି ପାରୁଥିଲେ । ସୁବନ୍ଦିନେ ଯାହା ହୁଏ, ଆଜି ମଧ୍ୟ ତାହା ହିଁ ହେଲା । ବାଧ୍ୟହୋଇ ଶ୍ରୀଯୁକ୍ତ ଡୁବେର୍ନେଟ୍ ଆଲୋଚନାରୁ ନିରସ୍ତ ହେଲେ ଓ ଆପଣାର ରକ୍‌ପୋର୍ଟ ଚିଜ୍ ଉପରେ ପୁଣି ମନ ଦେଲେ । ସ୍ଥାନତ୍ୟାଗ କରି ଅନ୍ୟତ୍ର ଯିବାକୁ ଉଚ୍ଛନ୍ନ ହେଲାପରି ମେରୀ ଉଠି ଠିଆ ହେଲା କିନ୍ତୁ ତା'ର ମାଆ ତାକୁ ପଛରୁ ଡାକିଲେ ।

"ମୁଁ ନ କହିବା ପର୍ଯ୍ୟନ୍ତ ତୋତେ ସେହିଠାରେ ହିଁ ବସି ରହିବାକୁ ହେବ ।"

ମେରୀ ପୁନରାୟ ତା'ର ଆସନରେ ବସି ପଡ଼ିଲା । ଆରମାଣ୍ଡ ଡୁବେର୍ନେଟ୍ ଗିଲାସ ଖାଲି କରି ନିଶ ପୋଛିବାକୁ ଲାଗିଲେ ।

"ଶୁଣ ଗୋ, ମୋ' ଲାଗି ଆଉ ଅପେକ୍ଷା କରନାହିଁ, -" ତାଙ୍କର ଉଏଷ୍ଟକୋଟ୍ ପକେଟ୍‌ରୁ ଖଣ୍ଡେ ଚୁରୁଟ୍ ବାହାରକରି ସେ ଦୁଇହାତରେ ଆଙ୍ଗୁଠି ଭିତରେ ଗଡ଼ାଇବାକୁ ଲାଗିଲେ । ସେତେବେଳକୁ ମେରୀ ଅନ୍ତର୍ହିତ ହୋଇ ଯାଇଥାଏ । କୂଦଉପରେ ଅପେକ୍ଷା କରିଥିବ ବୋଲି ସେ ଗଲାବେଳେ ମାଡାମ୍ ଆଗାଥେଙ୍କୁ କହି ଯାଇଥିଲା । କିନ୍ତୁ ତାକୁ ଭେଟିବାଲାଗି ମାଡାମ୍ ଆଗାଥେ ତରତର ହେବା ପରି ଆଦୌ ମନେ ହେଉ ନଥିଲା। ଜୁଲିଆ ବସି ମନେ ମନେ ଲକ୍ଷ୍ୟ କରୁଥାନ୍ତି । କୋଉଠି ଗୋଟାଏ କିଛି ଘଟିବାକୁ ଯାଉଥିବାର ଗନ୍ଧ ସେ ହୁଏତ ପାଇଲେଣି .... କିନ୍ତୁ ତାହା କଦାପି ନୁହେଁ । କାରଣ ଆଗାଥେଙ୍କୁ ସେ କହିଲେ :

"ମୁଁ ଯାଉଛି ଟିକିଏ ବିଶ୍ରାମ ନେବି । ଯନ୍ତ୍ରଣାଟା ବର୍ତ୍ତମାନ, ପୂରାପୂରି ଚାଲି ଗଲାଣି । କିନ୍ତୁ ଭାରି କ୍ଳାନ୍ତ ଲାଗୁଚି । କିନ୍ତୁ ଦେଖ, ମେରୀକୁ କଦାପି ଏକୁଟିଆ ଛାଡ଼ିବ ନାହିଁ । କାରଣ ଘଟଣାମାନ ଯେତେଦୂରକୁ ଗଲାଣି, ସେ ଟୋକାଟା ବୋଧହୁଏ ବର୍ତ୍ତମାନ କୂଦତଳେ ନଈକୂଳରେ ଆସି ନଙ୍ଗର ପଙ୍ଗର ହେଉଥିବ ଆଉ ନାକରେ ଶବ୍ଦ କରି ଇସାରା ଦେଉଥିବ । ତା'ର ବର୍ତ୍ତମାନ ଯେଉଁ ବୟସ, ସେହି ବୟସରେ ଟୋକାମାନେ ଠିକ୍ ପଲେ କୁକୁରଙ୍କ ପରି ହୁଅନ୍ତି ।"

ଆଗାଥେ କିଛି କ୍ଷଣ ପାଇଁ ସେଠାରେ ଆରମାଣ୍ଡଙ୍କ ସହିତ ବସି ରହିଲେ । "ଆପଣଙ୍କର ବୁଝିବା ଉଚିତ," ଆଗାଥେ ତାଙ୍କୁ କହିଲେ, "ଝିଅଟା ଉପରେ ମତେ ନିଶ୍ଚୟ ଟିକିଏ ଆଖି ରଖିବାକୁ ହେବ ।"

ମାଡ଼ାମ୍ ଆଗାଥେଙ୍କୁ ଅଟକାଇ ରଖିବାଲାଗି ଆରମାଣ୍ଡ ଆଉ କୌଣସି ଚେଷ୍ଟା କଲେନାହିଁ । କିନ୍ତୁ ଅପ୍ରସନ୍ନ ହେବା ପରି ସେହିଠାରେ ବସି ରହିଲେ । କାରଣ ତାଙ୍କର ଚୁରୁଟ୍‌ଟି ସେତେବେଳେକୁ ଲିଭି ଯାଇଥିଲା ।

"ମୁଁ ଏହିଠାରେ ଅଛି," - ଅନ୍ଧକାର ଭିତରୁ ମେରୀ କହିଲା ।

ମେରୀ ପାଖକୁ ଯାଇ ସିଡ଼ିରେ ଥିବା କାନ୍ଥଉପରକୁ ଆଉଜି ମାଡାମ୍ ଆଗାଥେ ଠିଆହେଲେ । ସେତେବେଳକୁ ଜହ୍ନ ଉଠୁଥାଏ । ଲେରୋଟ୍ ନଦୀ ସେଠାରୁ ଦୃଷ୍ଟିଗୋଚର ହେଉ ନଥାଏ, କିନ୍ତୁ ପଡ଼ିଆର ଘାସ ଓ ଧାଡ଼ିଧାଡ଼ି ଆଲ୍‌ଡର ଗଛରୁ ନଦୀର ଶୀତଳ ପବନ ବେଶ୍ ଅନୁଭୂତ ହେଉଥାଏ ।

"ମତେ ଆଉ ବସାଇରଖିବା ଉଚିତ ନୁହେଁ" -ମେରୀ କହିଲା, "କ'ଣ ସବୁ ହେଲା ମତେ ଶୀଘ୍ର କହନ୍ତୁ ।''

ଗୃହଧାତ୍ରୀଙ୍କ ପ୍ରତି ମେରୀ ହଠାତ୍ ସପ୍ରତିଭ ହୋଇ ଉଠିଲା । ମତେ ଯେପରି ସେ ସାକ୍ଷାତ୍ ଗିଲେସ୍ ସହିତ କଥାବାର୍ତ୍ତା କରୁଛି । ଘଣ୍ଟାକରୁ ଅଳ୍ପ ସମୟ ପୂର୍ବରୁ ମାଡାମ୍ ଆଗାଥେ

ତ ଗିଲେସ୍‌କୁ ଦେଖିଚନ୍ତି ଓ ତା'ସହିତ କଥାବାର୍ତ୍ତା ହୋଇଚନ୍ତି ।

"ଆପଣ କେଡ଼େ କୁନି ପୁସି ବିଲେଇଟିଏ ।"

କନିଷ୍ଠାର କଥା ଶୁଣି ସେ ହସୁଥାନ୍ତି । ତାଙ୍କୁ ଭାରି ଉଶ୍ୱାସ ଲାଗୁଥାଏ, ସତେ ଯେପରି କାହାର କୌଣସି ଆବେଶର ସ୍ପର୍ଶ ତାଙ୍କୁ ଭାରି କୋମଳ କରି ପକାଇଚି । ସେହି ଆବେଶକୁ ସୁଖ ବା ଆସନ୍ନ ସୁଖର ଆଦେଶ ବୋଲି କୁହାଯାଇ ପାରିବ ନାହିଁ । ସୁଖର ଲେଶମାତ୍ର ସମ୍ଭାବନା ମଧ୍ୟ ତାଙ୍କ ମନର ସମସ୍ତ ଆକର୍ଷ ବିକର୍ଷକୁ ଦୂର କରିଦେବା ପାଇଁ ଯଥେଷ୍ଟ ଥିଲା । ବିଚାରୀ ଗାଲିଗାଇ । ଡୋର୍ଥେର ଲୋକମାନଙ୍କୁ ତ୍ରସ୍ତ କରାଇ ଦେବାର ଶକ୍ତି ତାଙ୍କ ଭିତରେ ଥିଲା । କିନ୍ତୁ ଟିକିଏ ଆଉଜି ପଡ଼ିବାକୁ ଯେତେବେଳେ ତାଙ୍କୁ କୌଣସି ପୁରୁଷର କାନ୍ଧ ମିଳିଯାଇଥିଲା, ଯେତେବେଳେ କୌଣସି ପୁରୁଷର ବାହୁ ବନ୍ଧନ ତାଙ୍କୁ ନିବିଡ଼ କରି ଧରୁଥିଲା, ସେତେବେଳେ କେତେ ସଂପୂର୍ଣ୍ଣ ଓ ନିଃଶେଷ ଭାବରେ ସେ ନିଜକୁ ସମର୍ପଣ କରି ଦେଉଥିଲେ, କେଡ଼େ ବାଧାହୀନ ଭାବରେ ତାଙ୍କର ଆଖିରୁ ପ୍ରେମର ଅଶ୍ରୁ ବୋହି ଆସୁଥିଲା ।

"ଆଜି କହିବାକୁ କିଛି ନାହିଁ, ସେ କହିଲେ, "ସବୁବେଳେ ସେ ତୋହରି କଥା ଭାବୁଛି, ସେ ତା'ର ସାହସ ଆଦୌ ହରାଇ ନାହିଁ । ଏତିକି କହିବା ବ୍ୟତୀତ ମୁଁ ଆଉ ଅଧିକ କ'ଣ କହିପାରିବି ?"

ତରବର ହୋଇ ସେ ମେରୀ ପାଖରୁ ଦୂରେଇ ଠିଆହୋଇ ପଡ଼ିଲେ "ହେଇ ତୋର ମାଆ ଆସିଲେଣି ।"

ଜୁଲିଆ ପରା ବିଶ୍ରାମ ନେବାକୁ ଯାଉଚନ୍ତି ବୋଲି କହି ଯାଇଥିଲେ ? ଆଉ କଣ ସେ ଜାଲ ପକାଇ ଏମାନଙ୍କୁ ଧରିବାକୁ ଚେଷ୍ଟା କରୁଚନ୍ତି କି ? ତାଙ୍କର ମନରେ କୌଣସି ପ୍ରକାର ସନ୍ଦେହ ଜାତ ହୋଇଚି କି ?

"ତୋ'ଲାଗି ମୁଁ ଗୋଟିଏ କୋଟ୍ ଆଣିଚି," ସେ ମେରୀକୁ ଲକ୍ଷ୍ୟକରି କହିଲେ "ସେହି ଗୋଟାଏ ସାଲ୍ ଏ ଶୀତ ପାଇଁ ଯଥେଷ୍ଟ ହେଉ ନ ଥିବ । ସେଇଟାକୁ ତୁ ମାଡାମ୍ ଆଗାଥେଙ୍କୁ ଦେଇଦେ ।''

ସିଡ଼ି ଉପରେ ଥିବା କାନ୍ଥ ଉପରେ ହାତ-ଭରା ଦେଇ ମାଡାମ୍ ଡୁବେର୍ନେଟ୍ ଠିଆ ହୋଇଥାନ୍ତି । ମେରୀ ଆଉ ଗୃହଧାତ୍ରୀଙ୍କ ମଝିରେ ସେ ଠିଆ ହୋଇଥାନ୍ତି । କୌଣସି ପ୍ରକାର ସନ୍ଦେହ ବା ଈର୍ଷାପରବଶ ହୋଇ ସେ ଏଠାକୁ ଆସିଚନ୍ତି କି ? କିନ୍ତୁ ତାଙ୍କର କୌଣସି କଥାରୁ ସେପରି କୌଣସି ଗନ୍ଧ ମିଳିଲା ନାହିଁ ।

"ଆଜି ତ ଚନ୍ଦ୍ର ଚାରିପାଖରେ କୌଣସି ମଣ୍ଡଳ ପଡ଼ି ନାହିଁ," ସେ କହିଲେ, "ବଡ଼ଅଶୁଭ କଥା । ଆଉ ଟିକିଏ ବର୍ଷା ହୋଇଥିଲେ କଦାପି କୌଣସି କ୍ଷତି ହୋଇ ନଥାନ୍ତା । ମାଟି କେତେ ଟାଣ ଅଛି, ଅନାଇଲ...ଯାହାବର୍ଷା ହେଉଚି, ସିଏ ତ ମାଟିରେ ଏତେ ଟିକିଏ ଭେଦୁ

ନାହିଁ.... ମେରୀ, ତୁ ପରା ଡଟ୍ରିଉକସ୍ ଘରର ସେ ପିଲାଟିକୁ ଧର୍ମାନୁଶାସନ ପୁସ୍ତକଟି ପଢ଼ାଇ ଦେଇଥାନ୍ତୁ ? ତୋର କ'ଣ ମନେ ନାହିଁ କି ? ତା'ର ପ୍ରଥମ କମୁନିଅନ୍ ଉତ୍ସବଟି ଆଉ ଅଧିକ ଦିନ ଘୁଞ୍ଚାଇବା ତା'ର ବାପ ମାଆଙ୍କର ଆଦୌ ଇଚ୍ଛା ନୁହେଁ । ମୋର ତ ବ୍ୟକ୍ତିଗତ ମତ ଯେ ଧର୍ମଯାଜକମାନେ ଟିକିଏ ଟିକିଟା ପ୍ରକୃତିର, ସେମାନେ ଟିକିଏ ଅତିରିକ୍ତ ଦାବୀ କରୁଚନ୍ତି । ଦିନରାତି ମଦ ପିଇ ମାତାଲ ହୋଇ ପଡ଼ିଥିବା ଲୋକଙ୍କର ପିଲାମାନଙ୍କ ଠାରୁ ପ୍ରକୃତରେ ଆଉ କ'ଣ ଆଶା କରାଯାଇ ପାରିବ ? - ଭଗବାନଙ୍କର ଅର୍ଥ ସେ ନ ଜାଣିବା ପର୍ଯ୍ୟନ୍ତ...କ'ଣ କହିଲୁ ? ଓଃ, ମୁଁ ଭାବିଲି ତୁ ମତେ କ'ଣ କହିବାକୁ ଯାଉଚୁ ।''

ମେରୀ ପାଟିରୁ ପଦେ ହେଲେ କଥା ବାହାରି ନଥିଲା । ସେଠାରୁ ଅନ୍ୟତ୍ର ନଯିବା ପାଇଁ ଯେପରି ତା'ର ମାଆ ସଂକଳ୍ପ କରି ଆସିଥିଲେ । ତାହା ହେଲେ ବର୍ତ୍ତମାନ ଶୋଇବାକୁ ଯିବା ଦରକାର । ମାଡାମ୍ ଆଗାଥେ ତ ତାକୁ 'ଶୁଭରାତ୍ରି'ର ଚୁମ୍ବନ ଦେବାକୁ ଅବଶ୍ୟ ଆସିବେ ।

ନିକୋଲାସ୍ ଆଉ ଗିଲେସ୍ କାଷ୍ଟଲନ୍ ରାସ୍ତାରେ ପରସ୍ପରକୁ ଭେଟିବେ ବୋଲି ସ୍ଥିର କରିଥିଲେ, ସହରଠାରୁ ଟିକିଏ ବାହାରକୁ । ଆକାଶ ଆଡ଼କୁ ଅନାଇ ଅନାଇ ନିକୋଲାସ୍ ଚାଲିଥାଏ । ତାକୁ ବେଶ୍ ଗୋଟାଏ ଅନ୍ଧକାରର ଜୀବ ବୋଲି କୁହାଯାଇ ପାରେ । ଗ୍ରୀଷ୍ମକାଳର ରାତ୍ରୀ ତା'ର ସମ୍ମୁଖରେ ଜଗତର ଯେଉଁ ରୂପଟିକୁ ଉଦ୍‌ଘାଟିତ କରି ଦେଉଥିଲା, ତାହା ସହିତ ସେ ସୁପରିଚିତ ଥିଲା, ଅବଶ୍ୟ ପତ୍ରର ମର୍ମର ଶବ୍ଦକୁ ସେ ଆଦୌ ଶୁଣି ନଥିଲା, ଦୂରରୁ ଆସୁଥିବା କୁକୁର ଭୁକିବାର ଶବ୍ଦ ତା'ର କାନରେ ବାଜୁ ନଥିଲା । ଚନ୍ଦ୍ରର ଆଲୋକକୁ ଦିନର ଆଲୁଅ ବୋଲି ଭ୍ରମ କରି କୁକୁଡ଼ା ଗୁଡ଼ାକ ମଧ୍ୟ ରାବ ଦେବାରେ ଲାଗିଥିଲେ କିନ୍ତୁ ନିକୋଲାସ୍ ସେହି ଶବ୍ଦକୁ ମଧ୍ୟ ଶୁଣିପାରୁ ନଥିଲା । ରାସ୍ତାର କଠିନ ସମତଳ ଉପରେ ଗିଲେସ୍‌ର ଜୋତା ଦ୍ୱାରା ଉତ୍ପନ୍ନ ହେଉଥିବା ଶବ୍ଦକୁ ହିଁ ସେ ଶୁଣୁଥିଲା, ତା'ର ଆପଣା ଚାଲି ସହିତ ତାଳ ମିଳାଇ କିପରି ତା'ର ବନ୍ଧୁର ଚାଲି ଏକ ପରିମିତ ଛନ୍ଦ ସୃଷ୍ଟି କରି ପାରୁଥିଲା, ନିକୋଲାସ୍ ତାହାହିଁ ଶୁଣୁଥିଲା । ଲମ୍ବ ହୋଇ ପଡ଼ିଥିବା ସେମାନଙ୍କର ଯୁଗଳ ଦେହଛାୟା ଅନେକ ସମୟରେ ପରସ୍ପର ସହିତ ମିଶିଯାଉଥିଲେ, ଯେପରି କୌଣସି ରହସ୍ୟମୟ ନିୟମର ସଂକେତକୁ ମାନି ଛାଇ ଦୁଇଟି ସେମାନଙ୍କର ଗତି ପଥରେ ଚାଲିଥିଲେ । ଏହି ଦୁଇଜଣ ଯୁବକ ସତେ ଯେପରି ଦୁହିଁଙ୍କ ମଧ୍ୟରେ ରାତ୍ରି ଆକାଶର ଏକ ତାରା ପୁଞ୍ଜ ସୃଷ୍ଟି କରି ଯାଉଥିଲେ । ଗିଲେସ୍ କଥା କହୁଥାଏ, ଅବାରିତ ଗତିରେ ସେ କଥା କହି ଚାଲିଥାଏ, ଆଉ ସେହି କଥାର ପରିମାପକରେ ନିକୋଲାସ୍ ସତେ ଅବା ସାକ୍ଷାତ୍ ଭଗବତ ଶାନ୍ତି ସଦୃଶ ରାତ୍ରିର ପ୍ରାଣବନ୍ତ ନୀରବତାକୁ ମାପି ମାପି ଯାଉଥାଏ । ଗିଲେସ୍ ତାକୁ କ'ଣ ସବୁ ପଚାରୁଚି ବା ପଚାରିବ, ସେ ବିଷୟରେ ଯେପରି ସେ କଥାରେ 'ନାହିଁ' ବୋଲି ଉତ୍ତର ଦେବାର ମୁହୂର୍ତ୍ତକୁ ସେ ଯଥା ସମ୍ଭବ ବିଳମ୍ବିତ କରି ରଖିବାକୁ ଚେଷ୍ଟା କରୁଥିଲା ।

"ମୁଁ ତାକୁ ଭଲପାଏ ବୋଲି ତୁ ବିଶ୍ୱାସ କରି ପାରୁନାହୁଁ, ତା'ର କାରଣ ହେଉଚି ଯେ ମୁଁ ଭଲ ପାଇବାକୁ ଅସମର୍ଥ ବୋଲି ତୁ ଆଗରୁ ଧରି ନେଇଚୁ। ତୁ ମୋତେ କଦାପି ବିଶ୍ୱାସ କରି ପାରିବୁ ନାହିଁ ହୁଏତ ତୁ ଜାଣିପାରିବୁ ନାହିଁ। ଶୁଣ, ତୁ' ତ ଭଲ ପାଇବାର ଆବଶ୍ୟକତା ହିଁ କେବେ ଅନୁଭବ କରିନାହୁଁ। କବିତା ତୋତେ ପରିପୂର୍ଣ୍ଣ ସନ୍ତୋଷ ଦାନ କରେ, କବିତା ଆଉ ବନ୍ଧୁତା..ତାହାର ପରିଣାମରେ ଏତିକି ହୁଏ ଯେ କେବଳ ମୁଇଁ ତୋତେ ସନ୍ତୋଷ ଦିଏ ଏବଂ ତୁ ମୋ' ବ୍ୟତୀତ ଆଉ କୌଣସି ବ୍ୟକ୍ତି ବା କୌଣସି ପଦାର୍ଥର ଅଭାବ ହିଁ ଅନୁଭବ କରି ପାରୁ ନାହିଁ। ନୁହେଁ ?"

ନିକୋଲାସ୍‌ଠାରୁ କୌଣସି ଉତ୍ତର ପାଇବାକୁ ସେ ଅପେକ୍ଷା କଲା ନାହିଁ। ବରଂ କହିବାକୁ ଲାଗିଲା :

"ଏଇଟା ଅତି ସ୍ୱାଭାବିକ କଥା ଯେ ମୋର ବିବାହ କରିବାଟାକୁ ତୁ କଦାପି ଇଚ୍ଛାହିଁ କରିବୁ ନାହିଁ। ସେଥିପାଇଁ ମୁଁ କଦାପି ତୋତେ ଦୋଷ ଦେଉନାହିଁ। ଆମ ଦୁହିଁଙ୍କ ଭିତରେ ବର୍ତ୍ତମାନ ଯେଉଁ ସମ୍ପର୍କ ଅଛି ମୋର ବିବାହ ହୋଇଗଲେ ଠିକ୍ ସେହି ସମ୍ପର୍କ ଆଉ କଦାପି ରହି ପାରିବ ନାହିଁ।"

"ଓଃ, ଗିଲେସ୍!" -ନିକୋଲାସ୍ କେବଳ ଏତକି କହିଲା। ରାସ୍ତା ଯେଉଁଠାରେ ଲେରୋଟ୍ ନଦୀକୁ ଅତିକ୍ରମ କରି ଯାଇଚି, ସେମାନେ ଯାଇ ଠିକ୍ ସେହିଠାରେ ପହଞ୍ଚିଲେ। ସବୁଦିନ ପରି ଦୁହେଁ ପୋଲର ବାଡ଼ା ଉପରକୁ ଆଉଜି ଠିଆହେଲେ। କାରଣ ବହିଯାଉଥିବା ପାଣିର ଗନ୍ଧ ସେମାନଙ୍କୁ ଭାରି ଭଲ ଲାଗୁଥିଲା। ସିଗାରେଟ୍‌ବତୀ କାଢ଼ି ଗିଲେସ୍ ଖଣ୍ଡେ ସିଗାରେଟ୍ ଲଗାଇଲା। ସେହି ବତୀର ଆଲୁଅରେ ମୁହୂର୍ତ୍ତକ ପାଇଁ ତା'ର ଯୁବକ ମୁହଁର କପାଳରେ ଓ ପାଟିର ଦୁଇ କଣରେ ଅଦ୍‌ଭୁତ ଭାବରେ ଖୋଦା ହୋଇଥିବା ରେଖାଗୁଡ଼ିକ ଏବଂ ତା'ର ଚିବୁକ ଉପରେ ନୂଆ ହୋଇ ଗଜୁରି ଆସୁଥିବା ଦାଢ଼ିର ଈଷତ୍ ଚିହ୍ନଗୁଡ଼ିକ ଦୃଶ୍ୟ ହୋଇ ଉଠିଲା। ତା'ପରେ ନିଆଁଟା ନିଭିଗଲା, ଛାଇଭିତରେ ଅର୍ଦ୍ଧଗୁପ୍ତ ହୋଇ ରହିଥିବା ଏକ କ୍ଷୀଣ ସଂକେତ ଛଡ଼ା ଚନ୍ଦ୍ରାଲୋକରେ ଆଉ କିଛି ଦେଖାଗଲା ନାହିଁ।

ସେ କହିଲା :

"ମୋତେ କ୍ଷମା କରିବାକୁ ହେବ। ପ୍ରକୃତରେ ମୁଁ ଭଲ ପ୍ରକୃତିର ମଣିଷ ନୁହେଁ, ପୁଣି ଦୁଃଖ ମୋର ଦୁର୍ଦ୍ଦଶାକୁ ଆହୁରି ବଢ଼ାଇ ଦିଏ।...."

ସେମାନେ ପୋଲର ବାଡ଼ା ଉପରେ ବସିଥିଲେ। ପଥର ଉପରେ କଳକଳ ଶବ୍ଦକରି ପାଣି ବୋହି ଯାଉଥାଏ, ପିଲାଦିନେ ସେହି ପାଣି ଭିତରେ ଚାଲବୁଲ କରିବା ପାଇଁ ସେମାନେ ସେଠାରେ କେତେଥର ଗୋଡ଼ରୁ ଜୋତାମୋଜା ବାହାର କରିଛନ୍ତି।

ନିକୋଲାସ୍ ତା'ର ବନ୍ଧୁର ମୁଣ୍ଡ ଉପରେ ହାତ ରଖିଲା।

"ତୋ'ର ବୟସ ଏତେ କମ୍," -ସେ ଦୀର୍ଘ ନିଶ୍ୱାସ ପକାଇ କହିଲା ।

"ମେରୀ -ମେରୀ ଡୁବେର୍ନେଟ୍.."ଗିଲେସ୍ କହିଲା । "ତୋତେ ସବୁକଥା ଭାରି ଅଦ୍‌ଭୁତ ଲାଗୁଛି, ନୁହେଁ ? କହ, ଲାଗୁଚି କି ନାହିଁ ?"

ନିକୋଲାସ୍ ନୀରବ ରହିଲା । ଗିଲେସ୍ ପୁଣି କହିଲା :

"ମୁଁ ମଧ୍ୟ ସ୍ୱୀକାର କରିବି ଯେ, ମୋତେ ମଧ୍ୟ ବ୍ୟାପାରଟା ବଡ଼ ଅଦ୍‌ଭୁତ ଲାଗୁଚି । ମୁଁ ମଧ୍ୟ ତାହା ସହଜରେ ବିଶ୍ୱାସ କରିପାରୁ ନାହିଁ ।" ହୁଏତ ଏହାର ଅର୍ଥ ହେଉଚି ଯେ ମୁଁ ରକ୍ଷା ପାଇଯାଇଚି । "

"କିନ୍ତୁ ଅନ୍ୟମାନଙ୍କ ଅପେକ୍ଷା ରକ୍ଷା ପାଇବାର କୌଣସି ଅଧିକ ଆବଶ୍ୟକତା ତୋ'ର ନାହିଁ ।"

"ଥାଉ ସେକଥା । " -କ୍ଷୀଣ କଣ୍ଠରେ ଗିଲେସ୍ କହିଲା... "ମୋ' ବିଷୟରେ ପ୍ରତ୍ୟେକ କଥା ନ ଜାଣିଥିଲା ପରି ତୁ ଆଉ କିଛି କହନାହିଁ, ଏପରିକି ଯେଉଁସବୁ କଥା ତୋ' ଆଗରେ ମୁଁ ଖୋଲି କହିନାହିଁ ତାହା ମଧ୍ୟ ତୁ ଜାଣିଚୁ ।...."

"ତୋ' ବୟସର ଅନ୍ୟାନ୍ୟ ଯୁବକମାନଙ୍କଠାରୁ ତୁ ଆଦୌ ଭିନ୍ନ ନୋହୁ । "

"ପ୍ରକୃତରେ କ'ଣ ତୁ ତାହାହିଁ ଭାବୁଚୁ ?" -ଗିଲେସ୍ କହିଲା ।

ତା'ପରେ କିଛି ସମୟ ଉତ୍କଣ୍ଠିତ ଭାବରେ ନୀରବ ରହିବା ପରେ :

"ତୋତେ କେବଳ ଆଉ କିଛି ସମୟ ପାଇଁ ତାକୁ ଟିକିଏ ଖେଳାଇବାକୁ ପଡ଼ିବ. ତା'ସହିତ ଟିକିଏ ଅଭିନୟ କରି ତାଙ୍କର ମନକୁ ଖୁସୀ ରଖିବାକୁ ହେବ, ଏ ବ୍ୟାପାରଟିରେ ଡୁବେର୍ନେଟ ପରିବାର ମନେଇଗଲା ପର୍ଯ୍ୟନ୍ତ ।...."

ତାହାର ବନ୍ଧୁ କାହା ବିଷୟରେ କହୁଚି, ସେକଥା ନଜାଣିଥିଲା ପରି ଛଳନା କରିବାକୁ ନିକୋଲାସ୍ ପୁଣି ଥରେ ଚେଷ୍ଟା କଲା । ଗିଲେସ୍‌ର ଆଉ ଧୈର୍ଯ୍ୟ ରହିଲା ନାହିଁ ।

"କାହିଁକି ? ମୁଁ ପରା ଗାଲିଗାଇ କଥା କହୁଚି ।" ସେ ହଠାତ୍ କହି ଉଠିଲା । "ତାକୁ ସହଜରେ ବୁଝାଇ ହେବ ନାହିଁ । ମୁଁ ସେ କଥା ଭଲ କରି ଜାଣେ । ହୁଏତ ଆମେ ଗୋଟାଏ କିଛି ଶପଥ କରିବା ଲାଗି ସେ ଜିଦ୍ ଧରି ବସିବ, -ହୁଏତ ଗୋଟା ନିର୍ଦ୍ଦିଷ୍ଟ ବାଗ୍‌ଦାନ୍, ଯେଉଁଥିରେ ସମ୍ମତ ହେବାଭଳି ଓ ଯାହାକୁ ଲୁଚାଇ ରଖିବା ପାଇଁ ତୋତେ ଟିକିଏ ଛଳନା କରିବାକୁ ପଡ଼ିବ ।

ନିକୋଲାସ୍ ଏ କଥାର ପ୍ରତିବାଦ ନକରି ଆଉ ରହିପାରିଲା ନାହିଁ ।

"ନାଁ ।...ତୁ ଏପରି ଏକ ଅଦ୍ଭୁତ ପରାମର୍ଶ ଦେଇ ପାରୁଚୁ କିପରି ? ମୋତେ କେହି ସାରା ସଂସାରଟାକୁ ଯାଚିଲେ ମଧ୍ୟ ମୁଁ ସେକଥା କରି ପାରିବି ନାହିଁ । ତୁ ଜାଣୁ ମୁଁ ତାକୁ

ଅନେକ ଦୁଃଖ ଦେଇଲିଣି ।"

ଗିଲେସ୍ ଟିକିଏ ଦୂରକୁ ଘୁଞ୍ଚିଗଲା । ତା'ର ମନଟା ଭାରି ଖରାପ ହୋଇଗଲା ବୋଲି ନିକୋଲାସ୍ ସ୍ପଷ୍ଟ ଅନୁଭବ କରି ପାରିଲା । ସେ କହିଲା :

"ଗିଲେସ୍, ତୋ'ର ଅନ୍ତତଃ ବୁଝିବାକୁ ଚେଷ୍ଟା କରିବା ଉଚିତ । ତୁ' ନୁହଁ, ମୁଇଁ ହେଉଚି ଖରାପ । ମୋର ମନ ଅନ୍ୟମାନଙ୍କ ପାଇଁ ସହାନୁଭୂତିରେ ବିଗଳିତ ହୋଇଯାଏ, - କେବଳ ଯେଉଁ ରମଣୀ ମୋତେ ଭଲ ପାଏ, ତାହାରି ପାଇଁ ହୋଇପାରେ ନାହିଁ । ଏହି ଦୁର୍ଭାଗ୍ୟ ପ୍ରାଣୀଟିର ମନରେ ମୁଁ କେତେ ବାସନା ଓ ଆକାଂକ୍ଷାର ଉଦ୍ରେକ କରିଚି, ଅଥଚ ମୁଁ ନିଜେ ସେ ସବୁରେ କୌଣସି ଅଂଶ ଗ୍ରହଣ କରିନାହିଁ । କିନ୍ତୁ ଖାସ୍ ଏକ କଥାଟି ମୋତେ ଆଦୌ ବିଚଳିତ କରୁନାହିଁ । କିନ୍ତୁ ସମସ୍ତ ଘଟଣାଟା ମୋତେ ବଡ଼ ବିରକ୍ତ କରି ପକାଇଚି । ମୋ' ମୁଣ୍ଡକୁ ବିଲ୍‌କୁଲ୍ ଗରମ କରି ଦେଇଚି...ଆଉ ପୁଣି ବର୍ତ୍ତମାନ । ତୁ ପରାମର୍ଶ ଦେଉଚୁ..."

"ବୋକାଙ୍କ ପରି ହେବାକୁ ଆଉ ଚେଷ୍ଟା କରନା ।" ଗିଲେସ୍ ଅଧୀର ଭାବରେ କହିଲା, "ତୁ କ'ଣ ଦେଖି ପାରୁନୁ ଯେ ଅନ୍ତତଃ ଏହା ଦ୍ୱାରା ତୁ ତାକୁ ଆଉ କେତେ ସପ୍ତାହ ପାଇଁ କେତେ ସୁଖ ଦେଇ ପାରିବୁ ? ଅବଶ୍ୟ ତୋତେ ଧନ୍ୟବାଦ ଦେବାକୁ ପଡ଼ିବ, ନହେଲେ ସେହି ସୁଖ ତ ତା'ର ଉଚିତ ପ୍ରାପ୍ୟ । ପ୍ରକୃତରେ ଦେଖିବାକୁ ଗଲେ ସୁଖ ଓ ସୁଖର ମାୟା ଭିତରେ ଆଉ କି ପ୍ରଭେଦ ରହିଚି ?"

"ପ୍ରକୃତରେ ତୁ କ'ଣ ମୋତେ ଏଡ଼େ ବଡ଼ ଓସ୍ତାଦ୍ ବୋଲି ଭାବୁଚୁ ?"

ନିକୋଲାସ୍ ବଡ଼ ଗଭୀର ଭାବରେ ଆହତ ହୋଇ ପଡ଼ିଲା । ତା'ର ଅଧିକାର ଉପରେ କିଏ ଅନଧିକାର ଆକ୍ରମଣ କଲା ପରି ସେ ବୋଧ କଲା । ବୋଧ୍ୟ ଭାବରେ କିଛି କହି ପାରିବାର ସାମର୍ଥ୍ୟ ଆଉ ତା'ର ରହିଲା ନାହିଁ । ଗିଲେସ୍ ପୋଲର ବାଡ଼ା ଉପରୁ ଖଣ୍ଡେ ଦୂରକୁ ଚାଲିଗଲା ଏବଂ ପୁଣି ପୂର୍ବ ଜାଗାକୁ ଫେରି ଆସିଲା । ତା'ର କଣ୍ଠସ୍ୱରରେ ଏକ କଠିନ ମୁଦ୍ରା ପ୍ରକାଶ ପାଉଥିଲା ।

"ତୁ ଆଉ ବ୍ୟସ୍ତ ହୁଅ ନା । ତୁ ଏ କାମ କରିପାରିବୁ ବୋଲି ମଧ୍ୟ ମୁଁ ପ୍ରକୃତରେ କେବେ ଭାବି ନଥିଲି । ତୁ ପ୍ରକୃତରେ କ'ଣ ମୁଁ କହିବି ? ତୋ'ପରି ଏପରି ବିରକ୍ତ ପ୍ରକୃତିର ମଣିଷ ସଂସାରରେ କୌଣସିଠାରେ ନଥିବେ । ନିଜକୁ ତୁ ଖୁବ୍ ଧର୍ମପରାୟଣ ବୋଲି ଭାବୁ, ଯେପରି ଭଗବାନଙ୍କର ଦରବାରରେ ଯେଉଁଦିନ ପାପ ପୁଣ୍ୟର ବିଚାର ହେବ, ସେହି ଦିନଟି ତୁ ଆପଣାର ସମସ୍ତ ପୁଣ୍ୟ ହିସାବ ଖାତା ନିଖୁଣ ଓ ନିର୍ଭୁଲ ଭାବରେ ପ୍ରସ୍ତୁତ କରି ରଖିବୁ । ଧର୍ମ ବା ନ୍ୟାୟକୁ ଭଲ ପାଇ ଯଦି କେବେ ମୁଁ ବିନଷ୍ଟ ହୋଇଯାଏ, ତେବେ ତାହା ତୋହରି ସକାଶେ ହେଲା ବୋଲି ମୁଁ କହିବି ।"

ନିକୋଲାସ୍ ତାର ଦୁଇଟି ଯାକ ହାତ ଉପରକୁ ଉଠାଇ କହିଲା :

"ମୋତେ ତୁ ଧର୍ମ ପରାୟଣ ବୋଲି କହୁଚୁ ? ତୁ କ'ଣ ପାଗଳ ହୋଇଗଲୁ କି ?"

ସେ ହସିଲା : ଆପଣାକୁ ବାଧ୍ୟ କରି ସେ ହସିଲା।

"ନିଶ୍ଚୟ ! ଆପଣାର ମୁଣ୍ଡ ଭିତରେ ତିଆରି କରି ରଖିଥିବା ପରି ପୂର୍ଣ୍ଣତାର ଗୋଟାଏ ତଥ୍ୟ ବ୍ୟତୀତ ତୁ'ତ କୌଣସି କଥାକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୋହୁ। ମୁଁ ଯାହା କହୁଚି, ତାହା କ'ଣ ସତ ନୁହେଁ ?"

"କିନ୍ତୁ ତୁ କ'ଣ ?" ନିକୋଲାସ୍ କହିଲା, "ମୋର ଅନୁମାନ, ପ୍ରବଳ ଅଧ୍ୟବସାୟ ସହକାରେ ତୁ କ୍ରମେ ଗୋଟାଏ ଘୁଷୁରି ହେବାର ଉଦ୍ୟମ କରିବାକୁ ଯାଉଚୁ।"

"ମୁଁ ? ମୋର ବନ୍ଧୁମାନଙ୍କ ପାଇଁ ମୁଁ ଯାହା ସବୁ କରିଚି, ତାହା ମୁଁ କେବେ କୌଣସିଠାରେ ଉଲ୍ଲେଖ କରିବି ନାହିଁ। ନଦୀ ଭିତରକୁ ଗୋଟାଏ ମୁର୍ଦ୍ଦାର ଫୋପାଡ଼ି ଦେବାରେ ଯିଏ ତୁମକୁ ସାହାଯ୍ୟ କରିବ, ଅଥଚ ଗୋଟିଏ ବୋଲି ପ୍ରଶ୍ନ ପଚାରିବ ନାହିଁ, ମୁଁ ତାହାକୁହିଁ ବନ୍ଧୁ ବୋଲି କହିବି। "

"ହଉ, ତେବେ ମୁଁ ଯେ ତୋତେ ଗୋଟିଏ ମୁର୍ଦ୍ଦାର ଆଣି ଯୋଗାଇ ଦେବି, ସେକଥା ବିଶ୍ୱାସ ନକରିବାକୁ ମୁଁ ତୋତେ ଅନୁରୋଧ କରୁଚି।" — ନିକୋଲାସ୍‌ର କଣ୍ଠସ୍ୱରରେ ବେଶ୍ ଗୋଟାଏ ତୀକ୍ଷ୍ଣତା ରହିଥିଲା। ମୁହୂର୍ତ୍ତକ ପାଇଁ ଖୁବ୍ ଅଧୀର ହୋଇ ଗିଲେସ୍ କ'ଣ ଗୋଟାଏ କହିଲା ପରି ମନେ ହେଲା ଓ ତା'ପରେ ଡ୍ରୋର୍ଥେ ଅଭିମୁଖରେ ଯିବାକୁ ଆରମ୍ଭ କଲା। ନିକୋଲାସ୍ ତଥାପି ପୋଲର ବାଡ଼ା ଉପରେ ବସି ଗିଲେସ୍‌ର ପଦ ଶବ୍ଦ ଗୁଡ଼ିକ ଦୂରରେ ମିଳାଇ ଯାଉଥିବାର ଶୁଣୁଥିଲା। ସେହି ଶବ୍ଦଗୁଡ଼ିକ ତା'ର ସଂସାରକୁ ପୂର୍ଣ୍ଣକରି ରଖିଥିଲେ। ସେ ସେଠାରୁ ଉଠି ହଠାତ୍ ଦଉଡ଼ିବାକୁ ଲାଗିଲା। ଗିଲେସ୍ ପାଖରେ ପହଞ୍ଚିଲା ବେଳକୁ ସେ ପ୍ରାୟ ଅଣନିଶ୍ୱାସୀ ହୋଇ ପଡ଼ିଥାଏ। ତାକୁ ଦେଖିବାକ୍ଷଣି ତା'ର ବନ୍ଧୁ ଥରେ ହେଲେ ଫେରି ଚାହିଁଲା ନାହିଁ।

"ଦେଖ୍" ଧଇଁସଇଁ ହୋଇ ନିକୋଲାସ୍ କହିଲା, "ମୁଁ ଗୋଟାଏ କଥା ବିଚାର କରିଚି...ମୁଁ ଭାବୁଚି ମୁଁ ସବୁକଥା ଠିକ୍ କରି ଦେଇ ପାରିବି। କିନ୍ତୁ ଚିନ୍ତାକରି ସବୁକଥା ସ୍ଥିର କରିବା ଲାଗି ମୋତେ ଟିକିଏ ସମୟ ଦେବାକୁ ପଡ଼ିବ ।...."

ଅଧିକ ଆଶ୍ୱସ୍ତି ହେଲାପରି ଗିଲେସ୍ ନିଶ୍ୱାସ ମାରିଲା। ନିଜେ ସମ୍ପୃକ୍ତ ଥିବା କୌଣସି ବ୍ୟାପାରରେ ନିକୋଲାସ୍ ଯେ ଏପରି ଦୁର୍ବଳତାର ପରିଚୟ ଦେବ, ଏହି କଥା ଭାବି ସେ ଭାରି ବିଚଳିତ ହୋଇ ପଡ଼ିଥିଲା। କିନ୍ତୁ ଆପଣାର ଅନୁଭୂତିକୁ ସେ ପ୍ରକାଶ କଲା ନାହିଁ।

"ବର୍ତ୍ତମାନ ତ ଆସି ସେପ୍ଟେମ୍ବର ହେଲାଣି" ସେ କହିଲା, "ଆଉ ଅଧିକ ସମୟ

ପର୍ଯ୍ୟନ୍ତ କଥାଟାକୁ ସେମିତି ପକାଇ ରଖିବା ଆଦୌ ଉଚିତ ହେବ ନାହିଁ। ଶେଷକୁ ହୁଏତ ଆମେ ଠିଆ ହୋଇଥିବା ଭୂମିଟି ମଧ୍ୟ ଭୁଷୁଡ଼ି ପଡ଼ିପାରେ। ସେ ସ୍ତ୍ରୀଲୋକଟି ଭାରି ଦୃଢ଼ ମନା, -ତୁ'ତ ସେକଥା ନିଶ୍ଚୟ ହୃଦୟଙ୍ଗମ କରିଥିବୁ, ନୁହେଁ ?"

ଖଣ୍ଡେଦୂର ପର୍ଯ୍ୟନ୍ତ ସେମାନେ କେହି କାହାକୁ କିଛି କହିଲେ ନାହିଁ, ପ୍ରତ୍ୟେକେ ଆପଣା ଆପଣାର ଗୋପନ ଚିନ୍ତା ଗୁଡ଼ିକରେ ନିମଜ୍ଜିତ ହୋଇ ରହିଥିଲେ। ହଠାତ୍ ଗିଲେସ୍ ପ୍ରଶ୍ନ କଲା :

"ତୁ କ'ଣ ଭାବୁଚୁ ଯେ ତୁ ପ୍ରକୃତରେ ଗାଲିଗାଇ ସହିତ ଜମାଇ ପାରିବୁ ?"

ସଂଗେ ସଂଗେ ନିକୋଲାସ୍ ଉତ୍ତର ଦେଲା :

"ବନ୍ଦ କର ସେସବୁ -ସେସବୁ ତୁଣ୍ଡରେ ଧରିବା ବଡ଼ କଦର୍ଯ୍ୟ !"

"ମୁଁ ଅବଶ୍ୟ ବନ୍ଦ କରନ୍ତି" ଚିନ୍ତାମଗ୍ନ ଭାବରେ ଗିଲେସ୍ କହିଲା :

"କିନ୍ତୁ ତାହା ଅବଶ୍ୟ ହାସଲ କରିବାକୁ ପଡ଼ିବ।"

ସେ ହସିଲା। ତା'ର ମୁହଁର ଭିତର ଦେଇ ଯେପରି ଅନେକ ଭୟଙ୍କର ଜିନିଷ ନିର୍ଗତ ହୋଇ ଯାଉଥାଏ। ଏ ରାତିଟିକୁ ଆଉ ରାତି ବୋଲି କହିହେବ ନାହିଁ। ଗିଲେସ୍ ତାହାକୁ ଅପବିତ୍ର କରି ପକାଇଚି। ଭୁବନବ୍ୟାପୀ ଅନ୍ଧକାର ଭିତରେ ଡ୍ରୋର୍ଥେର ଗୀର୍ଜାଟା ଠିକ୍ ନୋଆର ଜାହାଜ ପରି ଦେଖାଯାଉଥାଏ। ଭଙ୍ଗା ପଡ଼ିଥିବା ବନ୍ୟା ସ୍ରୋତରେ ଯେପରି ତାହା ପଠାରେ ଲାଖିଯାଇଛି, - ଧ୍ୱଂସକାରୀ ମୂଷାମାନଙ୍କର ରହିବା ପାଇଁ ଛାଡ଼ି ଦିଆଯାଇଥିବା ଦୁର୍ଦ୍ଦଶାଗ୍ରସ୍ତ ଗ୍ରାମାଞ୍ଚଳର ଗୋଟାଏ ଅଟ୍ଟାଳିକା ପରି। ସେମାନେ ଆସି ମାଡ଼ାମ୍ ପ୍ଲାସାକ୍‌ଙ୍କର ଦୁଆର ପାଖରେ ପହଞ୍ଚିଲେ।

"ନାଇଁ -ଯିବା ଦାରକାର ନାହିଁ । "-ନିକୋଲାସ୍ କହିଲା।



# ନଅ

ଘର ଭିତରେ ପଶି ସିଡ଼ିରେ ଉଠିଗଲା ବେଳକୁ ସେ ଆଲୁଅ ଲଗାଇଲା ନାହିଁ। ତା'ର ମାଆ ବୋଧହୁଏ ଶୋଇ ପଡ଼ିଥିଲେ। ନା, ସେ ଶୋଇ ନାହାନ୍ତି ତ ! ସେ ମାଆଙ୍କର କ୍ଷୀଣ ଅଥଚ କର୍କଶ ଡ଼ାକ 'ନିକୋଲାସ୍' ଶୁଣିବାକୁ ପାଇଲା। ନିକୋଲାସ୍ ଘରେ ଥିଲାବେଳେ ମାଆ ତଳ ମହଲାରେ ଥିବା ଗୋଟିଏ ଛୋଟିଆ ଘରେ ଶୁଅନ୍ତି। ଘରକୁ ପ୍ରବେଶ କଲାବେଳେ ସେ କବାଟ ଖଡ଼ଖଡ଼ କଲା ନାହିଁ - ଘର ଭିତରକୁ ଆସି ତାଙ୍କର ବିଛଣା ପାଖରେ ଠିଆହେଲା, ଠିକ୍ ତାଙ୍କର ତକିଆ ପାଖକୁ। ଶୋଇଲାବେଳେ ସେ ଆପଣାର ଦାନ୍ତଗୁଡ଼ିକୁ କାଢ଼ି ରଖି ଦେଇଥିଲେ, ତେଣୁ ତାଙ୍କର ଓଠ ଓ ଗାଲଗୁଡ଼ିକ ଭିତରକୁ ପଶିପଶି ଯାଇଥାଏ। ଆଖିରେ ଚଷମା ନଥିବାରୁ ଆଖି ଦୁଇଟା କଠିନ, ଉଜ୍ଜ୍ୱଳ ଓ ଅମାନୁଷିକ ଦେଖା ଯାଉଥିଲା। ଯେ କୌଣସି ମାଛ ବା ଚଢ଼େଇର ଆଖି ସହିତ ସେହି ଆଖିର ବେଶ୍ ତୁଳନା କରାଯାଇ ପାରନ୍ତା।

"ତୁ ଏତେ ରାତିଯାଏ ବାହାରେ ରହୁଚୁ ! ତୋ'ରି ପାଇଁ ମୁଁ କବାଟ ବନ୍ଦ କରି ପାରିଲି ନାହିଁ। ଯଦି କୋଉଦିନ କିଏ ଘରେ ପଶି ମୋତେ ହତ୍ୟା କରେ, ତେବେ ତୁଇ ସେଥିପାଇଁ ଦୋଷୀ ହେବୁ।"

ନିକୋଲାସ୍ ଦୀର୍ଘ ନିଶ୍ୱାସ ପକାଇଲା : "ମାଆ ତାକୁ ଗୋଟାଏ ଚାବି ଦେଇଦେଲେ ହୁଅନ୍ତା।"

"ହଁ ଦିଅନ୍ତି ଯେ, କିନ୍ତୁ ଦେଲେ ତ ତୁ ହଜାଇଦେବୁ।"

ହଁ, ଠିକ୍ କଥା। ବାରବର୍ଷ ତଳେ ପ୍ରକୃତରେ ସେ ଥରେ ଗୋଟାଏ ଚାବି ହଜାଇ ଦେଇଥିଲା, ସେହି ଦିନଠାରୁ ଆଜିଯାଏ ମାଡ଼ାମ୍ ପ୍ଲାସାକ୍ ସବୁବେଳେ ସେହି ଘଟଣାଟାର ଉଲ୍ଲେଖ କରୁଥିଲେ। ସେହିଥର ତାଙ୍କୁ କୋଳପଟାକୁ ବଦଳାଇବାକୁ ପଡ଼ିଥିଲା । କୋଳପ ତିଆରି କରିବା ବାଲାର ରସିଦ୍‌ଟା ମଧ୍ୟ ସେ ଏପର୍ଯ୍ୟନ୍ତ ସାଇତି ରଖିଥିଲେ। ବିରକ୍ତ ହୋଇ ନିକୋଲାସ୍ କହିଲା :

"ତା'ହେଲେ ମୋତେ ତୁ କ'ଣ କରିବାକୁ ଚାହୁଁଚୁ ? ମୁଁ କ'ଣ ତେବେ ଝରକାବାଟେ ଚଢ଼ିକରି ଆସିବି ?"

"କାହିଁକି, ସନ୍ଧ୍ୟାବେଳଟା ତୋ'ର ମାଆ ପାଖରେ ଘରେ ରହିଲେ କ'ଣ ହୁଅନ୍ତା ନାହିଁ ? ତୋ ପାଇଁ କାମ କରିକରି ଯୋଉ ମାଆର ଅଣ୍ଟା ଭାଙ୍ଗିଗଲାଣି ! ତାକୁ ତ କେତେ କେତେ ଜାଗାରେ କେତେ ସୁବିଧା ମିଳୁଥିଲା, ତଥାପି ସେ ଦ୍ୱିତୀୟଥର ପାଇଁ ବିବାହ କରିବାକୁ ନିଷେଧ କରିଦେଲା, -ତୋ'ର ସ୍କୁଲ ଦରମା ଦିଆଯିବ ବୋଲି ଯିଏ ଏ'ଦୁଆର ସେ'ଦୁଆର

ବୁଲୁଥିଲା, ଧନୀ ଲୋକଙ୍କର ଲୁଗା କାଚି ଯିଏ ପୁଅ ପାଇଁ ପଇସା ରୋଜଗାର କରୁଥିଲା। ଶେଷକୁ ଗୀର୍ଜା ଅଫିସ୍, ଦୟାକରି ଗୀର୍ଜାରେ ମୋତେ ଖଣ୍ଡେ ଚାକିରି ଦେଲେ ବୋଲି ସିନା ମୁଁ ତ୍ରାହି ପାଇଲି। ଚାକିରିଟି ମୋତେ ଦିଆଗଲେ ଧର୍ମ କଉଡ଼ି ଯେ ଜଣେ ଉପଯୁକ୍ତ ଲୋକ ହାତରେ ପଡ଼ିବ, ସେକଥା ସେମାନେ ଅବଶ୍ୟ ହୃଦୟଙ୍ଗମ କରିଥିବେ। ”

“ମୁଁ କଣ ଅକୃତଜ୍ଞ ପୁତ୍ରର କୌଣସି ପରିଚୟ ତୋ' ପାଖରେ ଦେଇଛି ?” - ରସହୀନ ଭାବରେ ନିକୋଲାସ୍ ପଚାରିଲା।

“ନାଁ -ତୁ ମୋର ସୁନାପୁଅ। ମୋ' ରାଣ ପକାଉଚି, ମୁଁ କଦାପି ସେ କଥା ଅସ୍ୱୀକାର କରିବି ନାହିଁ। ତଥାପି ରାତି ହେଲେ ଅଢ଼ ବୟସର ସେହି ଅପଦାର୍ଥଟା ସାଙ୍ଗରେ ଯାଡ଼େସାଡ଼େ ବୁଲିବାକୁ କାହିଁକି ଯେ ତୋତେ ଏତେ ଭଲ ଲାଗୁଚି। ”

“ତୋ'ର ଏପରି କହିବାଟା ଆଦୌ ସୁନ୍ଦର ହେଉ ନାହିଁ ମାଆ।..ତୁ ସବୁଦିନେ କହି ଆସିଚୁ ଯେ ସେ ଭାରି ଭଲ ପିଲା...।”

ତୋ' ମନରେ କୌଣସି କଷ୍ଟ ନଦେବା ପାଇଁ ମୁଁ ସେପରି କହିଥିଲି..ତୋତେ ମୁଁ ଠିକ୍ ଖଣ୍ଡେ ବହିପରି ପଢ଼ିନେଇ ପାରିବି। ” ତାଙ୍କର ଆଖିରେ ଗୋଟାଏ ପ୍ରକାର ହିଂସ୍ରଭାବ ଫୁଟି ଉଠୁଥାଏ, ନିଜେ ଥରେ ରଚନା କରିଥିବା ଗୋଟାଏ କବିତା ନିକୋଲାସ୍‌ର ମନେ ପଡ଼ିଗଲା। ତାହାର ମର୍ମ ହେଉଚି - ଗାର ପଡ଼ିଯାଇଥିବା ଆଖିପତା ଶୋଭିତ ସେହି ଅକିଞ୍ଚନ ରମଣୀଟି ସେ ହେଉଚି ମାଆ, - ସେଇ, ଯିଏ ମୋତେ ଭଲ ପାଏ।” — ମାଆ କହିଲେ :

“ଡ଼ୋର୍ଥେରେ ସମସ୍ତେ କହୁଛନ୍ତି ଯେ ଡ଼ାକ୍ତର ସାଲୋନଙ୍କର ପୁଅଟି ଆଦୌ ଭଲ ପିଲା ନୁହେଁ। ତୁ ସେହି ପୁଅଟିଠାରୁ କଣ ଯେ ପାଉ ମୁଁ ତାହାର ଅନ୍ତ ଖୋଜି ବାହାର କରିପାରେ ନାହିଁ।”

ମାଆଙ୍କର ସେହି ଭୟଙ୍କର ମୁଖ ଉପରକୁ ନିକୋଲାସ୍ ଆପଣାକୁ ଆନତ କରି ଆଣିଲା ଏବଂ ଅତି ପ୍ରୀତିପୂର୍ଣ୍ଣ ଭାବରେ ଆପଣାର ଓଠ ଦୁଇଟିରେ ସେହି ମୁଖକୁ ସ୍ପର୍ଶ କଲା।

“ଏଥର ତୁମେ ଶୋଇବ ଯାଆ -” ସେ କହିଲା। ତଥାପି ସେ ବଡ଼ ଅସନ୍ତୁଷ୍ଟ ହେଲାପରି ଦେଖା ଯାଉଥାନ୍ତି :

“ଯେତେବେଳେ ମୁଁ ତୋତେ ଗୋଟାଏ ପ୍ରଶ୍ନ ପଚାରୁଛି, ତୁ ଅନ୍ତତଃ ତା'ର ଉତ୍ତର ଦେବା ଉଚିତ। ମୋତେ କଣ ତୁ ଏତେ ଶୀଘ୍ର ଗୋଟାଏ ନିର୍ବୋଧ ବୁଢ଼ୀ ବୋଲି ଭାବି ସାରିଲୁଣି ?”

ପ୍ରବଳ ଚେଷ୍ଟା କରି ନିକୋଲାସ୍ ଆପଣାର ମୁହଁ ଉପରେ ଈଷତ୍ ହାସ୍ୟଭାବ ପ୍ରକଟ କଲା, ଦୁଆର ଆଡ଼କୁ ଯିବା ପୂର୍ବରୁ ଆହୁରି ଗୋଟିଏ ଚୁମ୍ବନ ଦେଇଗଲା।

ଧୀରେ ଧୀରେ ସେ ସିଡ଼ି ଉପର ଦେଇ ଯାଉଥାଏ, ସତେ ଯେପରି ପିଠି ଉପରେ

ଗୋଟାଏ କ'ଣ ଭାରି ବୋଝ ନେଇ ସେ ଯାଉଚି। ସତେ ଯେପରି ଚାରିକୋଣିଆ ହୋଇ କଟା ଯାଇଥିବା ଗୋଟାଏ କାଠ କଡ଼ି ତା'ର କାନ୍ଧକୁ କାଟି କାଟି ଯାଉଚି । ଘର ଭିତରକୁ ଯାଇ ସେ ତେଲର ବତୀଟି ଲଗାଇଲା। ଆଜି ରାତିରେ ଆପଣାକୁ ଗୋପନ କରି ରଖିବାର ସମସ୍ତ ଶକ୍ତି ସେ ହରାଇ ବସିଥିବା ପରି ତାକୁ ବୋଧ ହେଉଥାଏ। ସେ ଆଜି ତା'ର ମାଆର ପ୍ରକୃତ ରୂପ ଦେଖିବାକୁ ପାଇଲା -ଆପଣାର ରହିବା ଘରଟି ମଧ୍ୟ ତାକୁ ଠିକ୍ ସେହିପରି ଦେଖା ଯାଉଥାଏ।

ଘରର ଛାତ ଉପରେ ଅଳନ୍ଧୁ ବସିଯାଇଥାଏ, ଦିନକୁ ଦିନ ତା' ଉପରେ ସନ୍ତସନ୍ତିଆ ଦାଗ ଗୁଡ଼ାକ ବଢ଼ି ବଢ଼ି ଚାଲିଥାଏ। କାନ୍ଥର କାଗଜ ଉପରେ ଦଳାହୋଇ ମରାଯାଇଥିବା ମାଛି ଗୁଡ଼ାକର ଚିହ୍ନ ପୂରି ରହିଥିଲା। ସେ କେବେ ବ୍ୟବହାର କରୁ ନଥିବା କମୋଡ଼୍ ଉପରେ ଥିବା ମାହୋଗଳିରୁ ଯେଉଁ ଗନ୍ଧ ଆସୁଥିଲା, ସେଥିରୁ ବେଶ୍ ପ୍ରମାଣ ମିଳୁଥିଲା ଯେ ମାଡ଼ାମ୍ ପ୍ଲାସାକ୍ ଘରକୁ ଭଡ଼ା ଲଗାଇଲା ବେଳେ କମୋଡ଼୍‌ଟି ରାତିରେ ବ୍ୟବହାର କରିବାକୁ ଦିଆଯାଇଥିଲା। ଭାରି ମୂଲ୍ୟବାନ୍ ବୋଲି ସେ ଛଳନା କରି ଆସିଥିବା ଭାରତ ତିଆର ସାଲଟିକୁ ପୋକଖାଇ କଣା କରି ଦେଇଥିଲେ। ସେଇଟିକୁ ସେ ଟେବୁଲ ଉପରେ ପକାଇ ଥିଲା, ଆପଣାର କବିତା ଭିତରେ ସେ ତାହାର କେତେ ଗୁଣଗାନ ନକରିଚି । ତା' ଉପରେ ପୁଣି ଏଠି ସେଠି ଠୋପା ଠୋପା ହୋଇ ମହମ ବତୀ ପଡ଼ି ଦାଗ ବସି ଯାଇଥିଲା। ସେହି ଦାଗକୁ ଆଉ ଲିଭାଇ ପାରିବାର କୌଣସି ସମ୍ଭାବନା ନଥିଲା। ଆରାମ ଚଉକିର ପିଠି ଉପରେ, ତେଲ ଦାଗ ଲାଗି ଯାଇଥିଲା। ସେହି ଦାଗକୁ ଆଉ ଲିଭାଇ ପାରିବାର କୌଣସି ସମ୍ଭାବନା ନଥିଲା। ତା'ଉପରେ ବସିଲାବେଳେ ଗିଲେସ୍ ଠିକ୍ ସେହି ଜାଗାରେ ଆପଣାର ମୁଣ୍ଡ ଦେଇ କରି ବସେ। ଗିଲେସ୍ । ଗିଲେସ୍ । ତା'ର ଯୌବନରକ୍ରମକ୍ଷୀଣ କୁହେଳି ଭିତରୁ ଆଗାମୀ ଦଶ ବର୍ଷ ଭିତରେ ସେ ହେବାକୁ ଯାଉଥିବା ପୁରୁଷଟିର ଅତି ସ୍ପଷ୍ଟ ସଂକେତମାନ ସେ ଦେଖି ପାରୁଥିଲା।

ନିକୋଲାସ୍ ବତି ଲିଭାଇ ଦେଲା। ଗରମ ତେଲର ଗନ୍ଧ କ୍ରମେ କ୍ରମେ ମିଳେଇ ମିଳେଇ ଯାଉଥାଏ। ଘର ଭିତରେ ଜମି ରହିଥିବା ଅର୍ଦ୍ଧସ୍ପଷ୍ଟ ଅନ୍ଧାର ସହିତ ସେ ଆପଣାକୁ ମଣେଇ ଆଣୁଥାଏ। ଚନ୍ଦ୍ର ସେତେବେଳକୁ ଅସ୍ତ ହୋଇ ଗଲେଣି, ଆକାଶ ଉପରେ ଏକ ଦୁଗ୍ଧାଭ ପଥ ପଡ଼ିଥିଲା ପରି ଦେଖା ଯାଉଥାଏ। ଅନସ୍ତିତ୍ୱ-ସାଗରର ଅନିଶ୍ଚିତ ଉପକୂଳ ପରି କେତେଖଣ୍ଡ ମେଘ ଅସ୍ପଷ୍ଟ ଭାବରେ ଭାସି ଯାଉଥାନ୍ତି, ତାହାରି ଭିତରେ ଗୋଟିଏ ମାତ୍ର ତାରା ମିଟିମିଟି କରୁଥାଏ। ନିକୋଲାସ୍ ପ୍ଲାସାକ୍ ସେହି ତାରାଟି ଆଡ଼କୁ ଅନାଇଲା। ଡ଼ୋର୍ଥେକୁ ଯିବା ରାସ୍ତାରେ ଗିଲେସ୍‌କୁ ଚପିବା ଲାଗି ଦଉଡୁଥିବା ସମୟରେ ତା' ମନରେ ଯେଉଁସବୁ

ଭାବନାର ଉଦୟ ହୋଇଥିଲା ଆଉ ଥରେ ସେହି ଭାବନାର ସମ୍ମୁଖୀନ ହେବାର ମୁହୂର୍ତ୍ତକୁ ସେ ଯଥା ସମ୍ଭବ ଏଡ଼ି ରଖିବାକୁ ଚେଷ୍ଟା କରୁଥିଲା। ... "ମୁଁ ଗୋଟାଏ କଥା ବିଚାର କରିଚି, -କିନ୍ତୁ ସେଥିପାଇଁ ମୋତେ ଟିକିଏ ସମୟ ଦେବାକୁ ହେବ.."। ଗୋଟାଏ କଥା ବିଚାର କରିଚି...କି କଥା ଏହି ଭାବନାର ଭୟାବହତା ତାକୁ ବିସ୍ମିତ କରି ରଖିଥାଏ। ଅବଶ୍ୟ ଗିଲେସ୍‌ର ନିର୍ଦ୍ଦେଶକୁ ସେ କଦାପି ଅନ୍ୟଥା କରିବ ନାହିଁ। -କିନ୍ତୁ ମିଛ ମଧ୍ୟ ସେ କଦାପି କହି ପାରିବ ନାହିଁ। ଗାଲିଗାଇକୁ ଯଦି ସେ କୌଣସି କଥା ଦିଏ, ତେବେ ସେ କଦାପି ମିଥ୍ୟା କଥା ହୋଇ ପାରିବ ନାହିଁ।

ଗର୍ଭ ଭିତରକୁ ଯାଇ ନିଜ ଆଖିରେ ସେହି ଗର୍ଭର ଗଭୀରତା ମାପିବାର କୌଣସି ପ୍ରୟୋଜନ ସେ ଦେଖି ପାରିଲା ନାହିଁ। ଆଉ କେତେ ମାସ ପାଇଁ, ହୁଏତ କେତେ ବର୍ଷ ପାଇଁ ତା'ର ମାଆ ତାକୁ ନିଶ୍ଚୟ ସେହି ଗର୍ଭ ପାଖରୁ ଦୂରରେ ରଖିବେ। ସେ ତ ଆଗାଥେକୁ ଭାରି ଘୃଣା କରୁଥିଲେ, କିନ୍ତୁ ତାଙ୍କର ବିରୋଧକୁ ତଥାପି ଅତିକ୍ରମ କରିବାକୁ ପଡ଼ିବ। ସେଥିପାଇଁ ତାକୁ ନିଶ୍ଚୟ ଦରିଦ୍ର ରହିବାକୁ ପଡ଼ିବ। କାରଣ କି ଉପାୟରେ ସେ ଆଉ ତା'ର ସଂସାର ଚଳାଇବ ? ତା'ର ଆପଣା କ୍ଷୁଧା ନିବାରଣ କରିବାଲାଗି ମଧ୍ୟ ଯେତିକି ଖାଦ୍ୟ ଦରକାର ସେତିକି କିଣିବାର ସମ୍ବଳ ମଧ୍ୟ ତା' ପାଖରେ ନାହିଁ।

କିନ୍ତୁ ମାଡ଼ାମ୍ ଆଗାଥେଙ୍କ ସହିତ ତା'ର ଯେଉଁ ବାଗ୍‌ଦାନ ହେବ ତାହା ଏକ ପ୍ରକୃତ ବାଗ୍‌ଦାନ ହେବା ଉଚିତ। ଦୁହିଁଙ୍କ ମଧ୍ୟରେ ପ୍ରାୟ ଚାରିଶହ ମାଇଲର ବ୍ୟବଧାନ ରହିବ ଏବଂ ଗାଲିଗାଇ ଠାରୁ ସେ କେବଳ ଚିଠିର ଅପେକ୍ଷା ହିଁ କରିବ। ଆଗାଥେ ଭାରି ସୁନ୍ଦର ଚିଠି ଲେଖି ପାରନ୍ତି। ସେ ମଧ୍ୟ ତାଙ୍କ ପାଖକୁ ଚିଠି ଲେଖିବ, ସେ ଯେତିକି ଥର ଇଚ୍ଛା କରିବେ, ସେତିକି ଥର ସେ ନିଶ୍ଚୟ ଲେଖିବ। ସେ ସବୁ ବେଶ୍ ହେବ, କିନ୍ତୁ ଶୀଘ୍ର ହେଉ ବା ବିଳମ୍ବରେ ହେଉ, ଦିନେ ନା ଦିନେ ତାକୁ ଅନିବାର୍ଯ୍ୟ ଅଦୃଷ୍ଟର ସମ୍ମୁଖୀନ ହେବାକୁ ପଡ଼ିବ। ..ଆପଣା ଇଚ୍ଛା ଦ୍ୱାରା ଚାଳିତ ହୋଇ ସେ ସେହି ଆଗାମୀ ମୁହୂର୍ତ୍ତର କଳ୍ପନା କରିବାକୁ ଲାଗିଲା...ଅଲଗା ଅଲଗା ବିଛଣା ?... ଅଲଗା ଅଲଗା ଶୋଇବା ଘର ?..ନା, ସେ ସବୁ କୌଣସି କାର୍ଯ୍ୟ ସାଧନ କରି ପାରିବ ନାହିଁ, -ମଝିରେ ଗୋଟାଏ କାନ୍ଥ ରଖିବାକୁ ପଡ଼ିବ, ସେହି କାନ୍ଥରେ ଗୋଟାଏ କବାଟ ରହିବ, ଯାହାକୁ କି କୋଳପ ଲଗାଇ ବନ୍ଦ କରି ରଖିହେବ। ତଥାପି ସମସ୍ତ ବ୍ୟାପାର ସହିତ ଉତ୍ତମ ରୂପେ ଅଭ୍ୟସ୍ତ ହୋଇଯିବା ଲାଗି ଢ଼େର ସମୟ ଲାଗିବ...ତା'ର କଳ୍ପନା ତାକୁ ତା'ର ସନ୍ତାନଠାରୁ ଅସଂଲଗ୍ନ କରି ରଖିଥିବା ଶୂନ୍ୟ ସ୍ଥାନଟିକୁ ଡ଼ିଆଁଇନେଇ ଚାଲିଗଲା, -କାରଣ ସନ୍ତାନ ତ ଅବଶ୍ୟ ହେବ। ସନ୍ତାନ ହିଁ ତା'ର ସମସ୍ତ କ୍ଷତିର ପୂରଣ କରି ଦେଇ ଯିବ। ମାଡ଼ାମ୍ ଆଗାଥେଙ୍କର ସନ୍ତାନ ..କିନ୍ତୁ ସେ ପୁଣି

କିପରି ସନ୍ତାନଟିଏ ହେବ ? ଦେଖିବାକୁ ଅବଶ୍ୟ ଆଗାଥେ ଖୁବ୍ ବେଶୀ କୁରୂପା ନୁହନ୍ତି, ତାକୁ ଟିକିଏ ସୁଖ ଦେଇ ପାରିଲେ ସେ ପ୍ରାୟ ସ୍ୱରୂପ ଓ ସୁନ୍ଦର ଦେଖାଯାଇ ପାରିବେ। ଗିଲେସ୍ ମେରୀ ସହିତ କିଛି ସମୟ ଏକାନ୍ତରେ କଟାଇ ପାରିବ ବୋଲି ଯେଉଁଦିନ ମାଡ଼ାମ୍ ଆଗାଥେଙ୍କୁ ସାଙ୍ଗରେ ନେଇ ସେ ଜଙ୍ଗଲ ଭିତରକୁ ବୁଲି ବାହରି ଯାଇଥିଲା, ସେଦିନ ସତେ ସେ କିପରି ପ୍ରସ୍ଫୁଟିତ ହୋଇ ଉଠିଥିବା ପରି ଦେଖାଯାଉ ନଥିଲେ ? ସେତେବେଳେ ତାଙ୍କୁ ଦେଖି ଏକାବେଳକେ ଅନ୍ୟ ଏକ ଜୀବ ବୋଲି ମନେ ହେଉଥିଲା..ହଁ, ତାଙ୍କର ମନଟା ଅବଶ୍ୟ ଟିକିଏ ଅଧିକ ଟାଣକରି ବନ୍ଧାଯାଇଚି। ତାଙ୍କ ସହିତ ସ୍ଥିର ଭାବରେ କଥାବାର୍ତ୍ତା କରିବା ଆଦୌ ସମ୍ଭବ ନୁହେଁ, କୌଣସି ସଂକେତ ନ ଦେଇ ସେଦିନ ତାଙ୍କର ନିଶ୍ୱାସ କ୍ରମେ କ୍ଷୁଦ୍ର ଓ କ୍ଷିପ୍ର ହୋଇ ଆସିଥିଲା। ତାଙ୍କ ଆଖିର ଡ଼ୋଳାଗୁଡ଼ାକ ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଥିଲା, ତାଙ୍କର ଗଳାଟି ଫୁଲି ଉଠିଥିଲା। ଆପଣାର କଳ୍ପନା ଚକ୍ଷୁ ଆଗରେ ଭାସୁଥିବା ଗୋଟାଏ ଛବି ପ୍ରତି ଅଧିକ ସହନଶୀଳ ହେବା ଲାଗି ନିକୋଲାସ୍ ଖୁବ୍ ଚେଷ୍ଟା କଲା - ଏହିପରି ଏକ ଛବି ପାଖରୁ ଦୂରକୁ ଚାଲିଯିବାକୁ ସେ ସବୁବେଳେ ଚେଷ୍ଟାକରି ଆସିଚି - ବୋର୍ଦ୍ଦୋ ସହର ମେରିଆଡ଼େକ୍ ଅଞ୍ଚଳରେ ଥିବା ସେହି ଘରଟିରେ ପ୍ରଥମେ ସେ ଏହି ଚେଷ୍ଟା କରିଥିଲା..ସେଦିନ ସ୍ତ୍ରୀଲୋକଟା କହିଥିଲା - "ଏତେବେଶୀ କାର୍ଯ୍ୟବ୍ୟସ୍ତ ରହିବା ଉଚିତ ନୁହେଁ " ଅବଶ୍ୟ ପରେ ସବୁ ଠିକ୍ ହୋଇଗଲା। ଗିଲେସ୍‌କୁ ରକ୍ଷା କରିବାକୁ ହେବ, ଗିଲେସ୍‌କୁ ସୁଖୀ କରିବାକୁ ହେବ। ନା -ସେଇଟା ପୂରା ସତକଥା ନୁହେଁ, ସେ ସୁଖୀ ହେବ ନାହିଁ, କିନ୍ତୁ ତାକୁ ଅନ୍ତତଃ ଟିକିଏ ଶକ୍ତି ମିଳିବ, ବିଶ୍ରାମ ମିଳିବ। ଗୀର୍ଜା ଭିତରେ ଅନେକ ସମୟରେ ନିକୋଲାସ୍ ଯେଉଁଭଳି ଲୋକଙ୍କୁ ଦେଖେ, ଗିଲେସ୍ କ୍ରମେ ସେହିଭଳି ଗୋଟିଏ ଲୋକରେ ରୂପାନ୍ତରିତ ହୋଇଯିବ। ତା'ର ଚର୍ବି ବଢ଼ିଯାଇ ବେକର ପଛ ପାଖଟା ମୋଟା ହୋଇ ଓହଳି ପଡ଼ିବ, କାରଣ ଆପଣାର କମିଜ ଉପରେ ସେ ଗୋଟାଏ ଟାଣୁଆ କଲାର୍ ବ୍ୟବହାର କରୁଥିବ। ଗିଲେସ୍, ବନ୍ଧୁତାର ସେହି ପ୍ରଥମ ଦିନଗୁଡ଼ିକର ସ୍ମୃତି ଭିତରକୁ ନିକୋଲାସ୍ ତା'ର ମନକୁ ଉଡ଼ାଇ ନେଲା। ପାରିସ୍ ସହରରେ ଏକତ୍ର ଚାଲିକରି ବୁଲିଥିବା ଦୀର୍ଘ ପଥଗୁଡ଼ିକ ତା'ର ମନେ ପଡ଼ିଗଲା। ମାଡ଼ୋଲାଇନ୍ ସମ୍ମୁଖରେ ଥିବା ବେଞ୍ଚ ଉପରେ ଯେଉଁଦିନ ରାତିରେ ଭାରି କ୍ଳାନ୍ତ ହୋଇ ସେମାନେ ବସି ପଡ଼ିଥିଲେ, ହଠାତ୍ ସେହି ରାତିଟିର କଥା ମନେ ପଡ଼ିଲା, ଥିରିଥିରି କରି ଯେଉଁ କବିତାଟି ସେ ଗିଲେସ୍‌କୁ ଆବୃତ୍ତି କରି ଶୁଣାଇଥିଲା, ସେ କଥା ମଧ୍ୟ ସେ ଭାବିବାକୁ ଲାଗିଲା। ଗିଲେସ୍ ସେଦିନ କହିଥିଲା "ସକାଳ ହେବା ପୂର୍ବରୁ ଏହିଠାରେ ଆମ ଦୁହିଁଙ୍କର ଏକାଠି ମୃତ୍ୟୁ ହୋଇଗଲେ କେଡ଼େ ମନୋରମ ନ ହୁଅନ୍ତା !"

# ଦଶ

"ମେରୀ ସହିତ ଯିବା ମୋର ନିତାନ୍ତ ଉଚିତ ଥିଲା" ମାଡ଼ାମ୍ ଡୁବେର୍ନେଟ୍ କହିଲେ, "ମଙ୍ଗିଙ୍କ ଘରେ ସେ ଏକୁଟିଆ ରହିବା ମୁଁ ମୋଟେ କଳ୍ପନା ହିଁ କରିପାରିବି ନାହିଁ। "

ପ୍ରତିବାଦ କରି ଆରମାଣ୍ଡ କହିଲେ:

"ତୁମକୁ ବିଶ୍ରାମ କରିବାକୁ ହେବ ବୋଲି ପରା ଡ଼ାକ୍ତର କହିଛନ୍ତି ?"

ଝରକା ଉପରେ କହୁଣୀରେ ଭରାଦେଇ ସେ ଠିଆ ହୋଇଥିଲେ। ଝରକାଟି ଅଧା ଖୋଲା ଥିଲା, ଅବଶ୍ୟ ସେତେବେଳକୁ ଚାରିଟା ବାଜି ନଥିଲା। କିନ୍ତୁ ସେହି ଭୀଷଣ ଝଡ଼ତୋଫାନ୍ ହେବା ଦିନଠାରୁ ଉତ୍ତାପ କ୍ରମେ କମିକମି ଯାଉଥିଲା। ସେ ଖଣ୍ଡେ ସିଗାରେଟ୍ ଲଗାଇଲେ, କିନ୍ତୁ ସେଇଟି ଲଗାଇଲା ବେଳକୁ ମାଡ଼ାମ୍ ଡୁବେର୍ନେଟ୍‌ଙ୍କର ଅଭିଯୋଗ ଆରମ୍ଭ ହୋଇଗଲା।

"ଅନୁଗ୍ରହ କରି, -ମୋ' କୋଠରୀ ଭିତରେ ନୁହେଁ। "

ସିଗାରେଟ୍ ଖଣ୍ଡକ ସେ ବଗିଚା ଭିତରକୁ ଫୋପାଡ଼ି ଦେଲେ। ମାଡ଼ାମ୍ ଡୁବେର୍ନେଟ୍‌ଙ୍କ ହାତକୁ ଖାଲି କପ୍‌ଟା ଆଗାଥେ ନେଇଗଲେ।

"ମୁଁ ଯାଉଚି, ତାକୁ ଶୀଘ୍ର ସାଙ୍ଗରେ ନେଇ ଆସିବି।"

"ସାଲୋନ୍ ଘରର ସେ ଟୋକାଟା ମଧ୍ୟ ସେଠାକୁ ଯେ ନିମନ୍ତ୍ରିତ ହୋଇ ଆସିଥିବ, ଏଇଟା ତ ପ୍ରାୟ ଜଣାଶୁଣା କଥା। ତାହାକୁ ନିମନ୍ତ୍ରଣ କରିବା ଉଚିତ ବା ଅନୁଚିତ ସେ ବିଷୟରେ ମଙ୍ଗିଙ୍କ ଘରେ କେହି କୌଣସି ବିଚାର କରୁଥିବା ପରି ମୋର ମନେ ହୁଏନାହିଁ। "

ମାଡ଼ାମ୍ ଆଗାଥେ କହିଲେ : "ମେରୀ ମତେ ଜବାବ୍ ଦେଇ ଯାଇଚି ଯେ ସେ ଟୋକାଟା ସେଠାକୁ ଆସିଥିଲେ ସେ ତା' ସହିତ ପଦେ ହେଲେ କଥାବାର୍ତ୍ତା କରିବ ନାହିଁ। "

"କିନ୍ତୁ ସେମାନେ ପରସ୍ପର ଆଡ଼କୁ ତ ନିଶ୍ଚୟ ଚାହିଁବେ.ଆଉ ଚାହାଣୀରେ ତ ଅନେକ କିଛି କଥାବାର୍ତ୍ତା ହୋଇ ପାରିବେ। ..ତାହାରି ସକାଶେ ମତେ ପ୍ରକୃତରେ ଭାରି ଲଜ୍ଜିତ ଲାଗୁଚି। ସେ ମୋର ଝିଅ ବୋଲି ଭାବିଲା ବେଳକୁ..."

"ମୁଁ ଅବଶ୍ୟ କହିବି ଯେ..."

ଆର୍‌ମାଣ୍ଡ ଅଧା ବାକ୍ୟରେ ଚୁପ୍ ହୋଇଗଲେ ଏବଂ ପୁଣି ଝରକା ପାଖକୁ ଫେରିଗଲେ। କିଛି ସମୟ ପର୍ଯ୍ୟନ୍ତ ସମସ୍ତେ ନୀରବ ରହିଲେ, ସେଉଠୁ ପୁଣି ମାଡ଼ାମ୍ ଡୁବେର୍ନେଟ୍‌ଙ୍କର ଅଭିଯୋଗ ଆରମ୍ଭ ହେଲା।

"ସେହି ନିକୃଷ୍ଟ ଶ୍ରେଣୀର ଗାଉଁଲି ଡ଼ାକ୍ତରଟା ପ୍ରତି ଯେ କାହିଁକି ମୁଁ ଏତେ ଟିକିଏ ମଧ୍ୟ ଧ୍ୟାନ ଦେବି, ସେକଥା ମୁଁ ଜାଣି ପାରୁନାହିଁ। ଯେତେବେଳେ ମଣିଷ ତାଙ୍କ ପାଖକୁ ଯିବ ଓ ତାଙ୍କୁ କିଛି ପଚାରିବ, ବହି ଖୋଲାଇ ନଦେଖିଲେ ସେ ଗୋଟିଏ ହେଲେ ଉତ୍ତର ଦେଇ ପାରିବେ ନାହିଁ। ତାଙ୍କ ସହିତ କଥାବାର୍ତ୍ତା ହେଲାବେଳେ ତାଙ୍କୁ ଠିକ୍ ଗୋଟିଏ ପକ୍କା ନିର୍ବୋଧ ପରି ମୋର ମନେ ହୁଏ। "

"କିନ୍ତୁ ଚାଲିଲା ବେଳକୁ ତୁମକୁ ଯେଉଁ ଭାରି ଭାରି ଲାଗୁଚି ବୋଲି ତୁମେ କହୁଚ,..ଅବଶ୍ୟ ମୁଁ ସ୍ୱୀକାର କରୁଚି ଯେ," ଶ୍ରୀଯୁକ୍ତ ଡୁବେର୍ନେଟ୍ କହିବାକୁ ଲାଗିଲେ, "ତାଙ୍କଭଳି ଅଳ୍ପ ବୟସର ଜଣେ ଡ଼ାକ୍ତରଙ୍କର କଦାପି ଡ଼ାକ୍ତର ସାଲୋନଙ୍କ ଭଳି ଅଭିଜ୍ଞତା ନଥିବ। "

କୁଶନ୍ ଭିତରୁ ଗୋଟାଏ ଚିଡ଼ିଚିଡ଼ା ଲମ୍ବା ମୁହଁ ବାହାର କରି ସ୍ତ୍ରୀ କହିଲେ :

"ତୁମେ କଣ କହୁଚ ମୁଁ ସେହି ଠକଟା ପାଖକୁ ପରାମର୍ଶ କରିବାକୁ ଯିବି ?"

ଶ୍ରୀଯୁକ୍ତ ଡୁବେର୍ନେଟ୍ କହିଲେ "ତୁମେ ଜାଣିଚ, ସେ ଏହି ବିବାହ ବିଷୟରେ ତୁମଠାରୁ ଏତେ ଟିକିଏ ଅଧିକ ଆଗ୍ରହୀ ନୁହନ୍ତି। "

"କେତେ ବାଜେ କଥା ତୁମେ କହୁଚ ! ତୁମେ ଏସବୁ କାହାଣୀ ଶୁଣିଲ କେଉଁଠାରୁ ?"

ସେ ଉତ୍ତର ଦେବାକୁ ବସିଥିଲେ - "କାହିଁକି, ମାଡ଼ାମ୍ ଆଗାଥେଙ୍କ ଠାରୁ" - କିନ୍ତୁ ଗୃହଧାତ୍ରୀ ଓଠଉପରେ ଆଙ୍ଗୁଠି ଚାପାଦେଇ ଅତ୍ୟନ୍ତ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇ ରହିଥିଲେ। ସେ କହିଲେ : "ସହରରେ ତ ସେ ବିଷୟରେ ସମସ୍ତେ କଥାବାର୍ତ୍ତା କରୁଚନ୍ତି। ମୁଁ ଶୁଣିବାକୁ ପାଇଲି ଯେ ବାଲୁଜ୍‌ଠାରେ ନୂଆ ଘରବାଡ଼ି କିଣି ସାରିବା ପରେ ଆମ ଡ଼ାକ୍ତରବାବୁ ଆହୁରି ଆଗକୁ ଯୋଜନାମାନ କରିଚନ୍ତି। ...ସେହି ସଂକ୍ରାନ୍ତରେ ମଧ୍ୟ ଅନେକ ଲୋକଙ୍କର ନାମ ଶୁଣାଯାଉଚି। ଲୋକମାନେ କହୁଚନ୍ତି ଯେ ସେସବୁ ବିଷୟ ଜାଣିଲେ କୁଆଡ଼େ ଆମେମାନେ ମଧ୍ୟ ଅବାକ୍ ହୋଇଯିବା। ..ବୋର୍ଦୋର ବଡ଼ ବଡ଼ ବ୍ୟବସାୟୀମାନେ ଏହିସ୍ଥାନର ଭୂସମ୍ପତ୍ତି ଉପରେ ଲୋଭ ଦୃଷ୍ଟି ପକାଇବାକୁ ଆରମ୍ଭ କରି ଦେଲେଣି। "

"ଏଥିରେ ସେମାନଙ୍କର ଯାହା ଲାଭ ହେବାର ହେଉଥାଉ। " - ଜୁଲିଆ ଡୁବେର୍ନେଟ୍ ସତେ ଯେପରି ପରାସ୍ତ ହୋଇଗଲା ପରି ଅନୁଭବ କରୁଥିଲେ। ମାତ୍ର ସେ କହିଲେ, "ବୋର୍ଦୋର ଲୋକମାନେ ଯାହା କରନ୍ତୁ ପଛକେ, ଆମେ ସେଥିରେ ମୁଣ୍ଡ ପୁରାଇବା କାହିଁକି ? ସେ ଯାହା ହେଉ, ସେମାନେ ଆଗ ଅନୁସନ୍ଧାନ କରି ଦେଖନ୍ତୁ। ...ଡ଼ୋର୍ଥେର ଲୋକମାନେ ଯାହା କହିବେ ସେଥିରେ ମୋର କିଛି ଯାଏ ଆସେ ନାହିଁ। କହିସାରିବା ବେଳକୁ ତାଙ୍କୁ ରାଗିବା ପରି ଦେଖାଯାଉଥିଲା।

"ଆପଣ ଆଉ କ'ଣ ଆଶା କରୁଛନ୍ତି ?" -କଥାବାର୍ତ୍ତାରେ ଯୋଗ ଦେଇ ଆଗାଥେ କହିଲେ : "ଟଙ୍କା ପଇସାକୁ ଜୀବନର ଏକମାତ୍ର ଜିନିଷ ବୋଲି ମନେ ନକରୁଥିବା ଲୋକ ଯେ ସଂସାରରେ ଅଛନ୍ତି, ସେଭଳି ଲୋକ ତ ଆଉ ସେକଥା ବୁଝିବେ ନାହିଁ ! -ସେମାନେ ଏବଂ ଆପଣ ଭିନ୍ନ ଭିନ୍ନ ପ୍ରକୃତିର ମଣିଷ। ସମ୍ପୂର୍ଣ୍ଣ ଗମ୍ଭୀର ଭାବରେ ହୁଏତ ମୁଁ ସେମାନଙ୍କୁ କହିବି ଯେ ଦୁଇଜଣଙ୍କ ଲାଗି ଯଥେଷ୍ଟ ହେବା ଭଳି ଅର୍ଥ ମୋରୀର ଦରକାର। କେଡ଼େ ନିର୍ବୋଧ ଭାବରେ ସେମାନେ କଥା କହନ୍ତି, ତାହା ତ ଆପଣ ଜାଣନ୍ତି, - ଅଳପ ଥିବା ଲୋକମାନେ ବେଶୀ ପାଇଁ ଇଚ୍ଛା କରନ୍ତି" -ସେମାନଙ୍କର ବୁଦ୍ଧି ତ ଯାଇଯାଇ ଏଇ ପର୍ଯ୍ୟନ୍ତ !"

"ତଥାପି ଏଥିରେ ନିଶ୍ଚୟ କିଛି ରହିଚି, " —ଚାପିଚାପି ଆର୍‌ମାଣ୍ଡ୍ ଡୁବେର୍ନେଟ୍ ଆରମ୍ଭ କଲେ, "ହଁ ମୁଁ ଶୁଣିବାକୁ ପାଇଲି ଯେ ଯେଉଁ ନିର୍ବୋଧ ଲୋକମାନେ ବାଲୁଜ୍ ଘରବାଡ଼ିକୁ ବିକ୍ରୀ କଲେ, ସେମାନେ ତାହା ସହିତ ଗ୍ରନ୍ଥାଗାରଟିକୁ ମଧ୍ୟ ଦେଇ ଦେଇଛନ୍ତି। ସୋସ୍-ପ୍ରିଫେକ୍‌ଟ୍‌ର କହିବା ଅନୁସାରେ ଜଣାପଡୁଚି ଯେ ସେହି ଗ୍ରନ୍ଥାଗାରରେ ଅନେକ ମୂଲ୍ୟବାନ୍ ସାମଗ୍ରୀ ରହିଚି। "

"ହଁ ମୁଁ ଜାଣିଚି " -ମାଡ଼ାମ୍ ଆଗାଥେ କହିଲେ, " କଲେଜ୍ ଆଡ଼େ ଶୁଣା ଯାଉଛି ଯେ ତା' ଭିତରେ 'ପ୍ରୋଭିନ୍‌ସିଆଲ୍'ର ଗୋଟିଏ ପ୍ରଥମ ସଂସ୍କରଣ ମଧ୍ୟ ରହିଚି, -ସେଥିରେ ମାର୍ଜିନ ଉପରେ ନିଜେ ଆର୍ନୋଲଡ୍ ଆପଣାର ମନ୍ତବ୍ୟମାନ ଲେଖିଛନ୍ତି।"

"ସେକଥା ସମ୍ଭବ ହେଲାପରି ମୁଁ ଅନୁମାନ କରୁନାହିଁ, କାରଣ..." ମାଡ଼ାମ୍ ଡୁବେର୍ନେଟ୍ ତାଙ୍କ କଥାକୁ ମାଡ଼ିବସି କହିଲେ :

"ବୁଝିଲ ଆଗାଥେ, ମୁଁ ଭାବୁଚି ପାଞ୍ଚଟା ବାଜିବା ପର୍ଯ୍ୟନ୍ତ ଅପେକ୍ଷା ନକଲେ ବରଂ ଭଲ ହୁଅନ୍ତା। ତୁମେ ଶୀଘ୍ର ମଙ୍ଗିଙ୍କ ଘରକୁ ଯାଆନ୍ତ କି !"

"ମୁଁ ତୁମ ସହିତ କ୍ଲବ୍ ପର୍ଯ୍ୟନ୍ତ ଯାଇ ପାରିବି" -ଆର୍‌ମାଣ୍ଡ କହିଲେ।

"ନାଇଁ, ତୁମେ ଏଇଠି ଥାଅ। ଘରେ ମୁଁ ଏକୁଟିଆ ରହିବାକୁ ଆଦୌ ଚାହୁଁନାହିଁ। ମୁଁ ଉପରେ ଘଣ୍ଟି ବଜାଇଲେ ତଳେ ତାହାକୁ କେହି ଶୁଣିପାରନ୍ତି ନାହିଁ। ଆଉ କ୍ଲବ୍‌କୁ ଗଲେ ତ ତୁମେ ସେଠାରେ ବସି ଖାଲି ମଦ ପିଇବ !..."

ସତେ ଯେପରି ଗୋଟାଏ କିଛି ଅନୁଗ୍ରହ ଦେଖାଉ ଥିବା ପରି ମୁଖଭଙ୍ଗୀ କରି ସେ କହିଲେ, "ତୁମର ଇଚ୍ଛା ହେଲେ ତୁମେ ଏଠାରେ ବସି ଧୂମ୍ରପାନ କରି ପାରିବ। କିନ୍ତୁ ମନେ ରଖ, ଝରକାଟାକୁ ନିଶ୍ଚୟ ଖୋଲା ରଖିବାକୁ ହେବ"

ଗୋଟିଏ ଛୋଟିଆ ଟୁଲ ଉପରେ ନଇଁପଡ଼ି ଆପଣାର ପକେଟରୁ ସେ ଗୋଟାଏ ପ୍ୟାକେଟ୍ କାପୋରାଲ୍ ସିଗାରେଟ୍ ବାହାର କରିନେଲେ।

ପ୍ରଥମ ଦୃଷ୍ଟି ପକାଇବା ମାତ୍ରକେ ମାଡ଼ାମ୍ ଆଗାଥେ ଦେଖି ପାରିଲେ ଯେ ମେରୀ ଯାହା କଥା ଦେଇ ଯାଇଥିଲା, ଠିକ୍ ସେହି ଅନୁସାରେ ସେ କାମ କରୁଚି। ଗିଲେସ୍ ଠାରୁ ଖଣ୍ଡେ ଦୂରରେ ଟେନିସ୍ ଖେଳ ଦେଖୁଥିବା ଦଳେ ଅତିଥିଙ୍କ ସହିତ ମେରୀ ଠିଆ ହୋଇଥିଲା। ସେଠାରେ ଉପସ୍ଥିତ ଥିବା ଝିଅମାନଙ୍କ ଭିତରୁ ତାକୁ ସବୁଠାରୁ ଅଧିକ ସମ୍ଭ୍ରାନ୍ତ ଘରର ବୋଲି ମନେ ହେଉଥିଲା, ତାହାରି ଉପରେ ଆଗ ଆଖି ପଡ଼ି ଯାଉଥିଲା। ମାଡ଼ାମ୍ ଆଗାଥେ ଭାବିଲେ, ତାର ଚେହେରା ଖୁବ୍ ଚମତ୍କାର ଦେଖା ଯାଉଚି। ତଥାପି ତା'ର ଚାହାଣୀରେ କାମାତୁରତା ଭରି ରହିଚି, -ତାହାକୁ ବେଶ୍ ସଙ୍ଗତ ଭାବରେ ଏକ ମୃଣ୍ମୟ ଭଙ୍ଗୁରତା ବୋଲି କୁହାଯାଇ ପାରିବ। ଅନ୍ୟ ସବୁ ଝିଅଗୁଡ଼ାକ ଖାଲି ଥାକୁଲି ଥାକୁଲି ଆଉ ଗେଡ଼ା ଗେଡ଼ା, - କେବଳ ନିତମ୍ବ -ମୁଣ୍ଡରେ ଗୋଛାଏ ଗୋଛାଏ ବାଳ ଆଉ ଫିକାନାଲି ଓ ନୀଳ ରଙ୍ଗର ମୁଣ୍ଡଫିତା, - ସେମାନଙ୍କ ଭିତରେ ମେରୀ ବେଶ୍ ଢ଼େଙ୍ଗା ଆଉ ପତଳା ଦେଖା ଯାଉଥାଏ, ତା'ର ନିତମ୍ବ ଗୁଡ଼ାକ ଆଦୌ ସ୍ଥୂଳ ନୁହେଁ, - ସ୍ତନ ଦୁଇଟି ଛୋଟ ଓ ଉଚ୍ଚ ଉଚ୍ଚ, ଯାହା ଉପରେ ଆଖି ପଡ଼ିଲାକ୍ଷଣି ମେରୀ ଦେହରେ ଥିବା ଅନ୍ୟ ସମସ୍ତ ଅଙ୍ଗକୁ ଭୁଲି ହୋଇ ଯାଉଥିଲା। ବଗିଚାର ବିଲ୍‌କୁଲ୍ ସେଇ ଆଡ଼କୁ ଜଳ ଯୋଗର ବ୍ୟବସ୍ଥା କରାଯାଇଥିବା ଜାଗାରେ ଗିଲେସ୍ ଛିଡ଼ା ହୋଇଥିଲା। ତା'ର ମୁହଁ ଉପରେ ଗୋଟାଏ ପ୍ରକାର ଅସନ୍ତୋଷର ଭାବ, କାରଣ ତାକୁ ଭଲ ଲାଗୁ ନଥିଲା। ତା'ର ମୁଣ୍ଡରେ ସେ କେତେ ବାସନା ତେଲ ଢ଼ାଳି କରି ଆସିଥିଲା, ତଥାପି ତା'ର ବାଳ ଗୁଡ଼ାକ କୁକୁଡ଼ା ପୁଚ୍ଛ ପରି ଠିଆ ହୋଇ ରହିଥାଏ। ସେ ପରିଧାନ କରିଥିବା କଲାର୍‌ରେ ଗୁଡ଼ାଏ ଷ୍ଟାର୍ଚ୍ଚ ଦିଆ ଯାଇଥିଲା, ତେଣୁ କଲାର୍‌ଟା ଭିଡ଼ି ହୋଇ ରହିଥିବାରୁ ତା'ର ମୁହଁଟା ବେଶ୍ ରଙ୍ଗା ପଡ଼ି ଯାଇଥିଲା। ସେଠାରେ ଉପସ୍ଥିତ ଥିବା ଅନ୍ୟାନ୍ୟ ଯୁବକମାନଙ୍କ ସହିତ ତା'ର ମଧ୍ୟ କୌଣସି ସାମଞ୍ଜସ୍ୟ ନଥିଲା। ସେମାନଙ୍କ ଭିତରୁ କେତେକ ବେଶ୍ ମୋଟା ହେବାକୁ ଆରମ୍ଭ କରିଥିଲେ। ସେମାନଙ୍କର ବେକ, ହାତ ସବୁ ଏକାପରି ଦେଖା ଯାଉଥିଲା। ଗିଲେସ୍‌ର ଚେହେରାରେ ଦେବଦୂତର ଆଭା ପରି ଗୋଟାଏ ଆଭା ରହିଚି ବୋଲି ନିକୋଲାସ୍ ତାଙ୍କ ଆଗରେ ଥରେ ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲା, ସେ କଥା ଆଗାଥେଙ୍କର ମନେ ପଡ଼ିଗଲା। "ଅତି ନିବିଡ଼ ଭାବରେ ଦେବ ସୁଲଭ," -ନିକୋଲାସ୍ ଠିକ୍ ଏହି ଶବ୍ଦଗୁଡ଼ିକ ବ୍ୟବହାର କରିଥିଲା। ସାଲୋନ୍ ପରିବାରର ଏହି ଯୁବକଟିକୁ ଦେଖିବାକୁ ତାଙ୍କୁ ଆଉ ବିରକ୍ତ ଲାଗିଲା ନାହିଁ। ସେ ତାଙ୍କର ସମସ୍ତ ଈର୍ଷା ଦ୍ୱେଷ ପାଶୋରି ପକାଇଲେ। ମାଡ଼ାମ୍ ମର୍ଗୀ ଓ ତାଙ୍କୁ ବେଷ୍ଟିତ କରି ରହିଥିବା ସ୍ତ୍ରୀଲୋକମାନଙ୍କ ସହିତ ସେ ପଦେ ଦୁଇପଦ କଥାବାର୍ତ୍ତା ହେଲେ। ବସିବା ଲାଗି ତାଙ୍କୁ କେହି ଅନୁରୋଧ କଲେ ନାହିଁ। ଆଗାଥେ ତାଙ୍କ ବାପାଙ୍କର ଝିଅ ହୋଇ ପାରନ୍ତି କିନ୍ତୁ ବର୍ତ୍ତମାନ ତ ସେ ଗୋଟିଏ ପରିବାରର ଧାତ୍ରୀ ହିସାବରେ ଏଠାକୁ ଆସିଥିଲେ। ସେ ଚାଲିଗଲା ବେଳକୁ ଜଣେ କିଏ କହିଲା :

"ମାଡ଼ାମ୍ ଆଗାଥେଙ୍କର କଣ ହେବ କେଜାଣି ? ତାଙ୍କର ଚେହେରାଟା କାହିଁକି ଭାରି କାମୋଦ୍ଦୀପକ ଦେଖା ଯାଉଚି।"

"ମୋତେ ସବୁ କଥା ଜଣା ଅଛି। ସେ ତ ଆଜିକାଲି ବୁଡ଼ି ବୁଡ଼ି ପାଣି ପିଉଚନ୍ତି...।"

"ମୁଁ ଭାବୁଚି, ନିଶ୍ଚୟ ଗୋଟାଏ କିଛି ଘଟିବାକୁ ଯାଉଚି। ଲୋକମାନେ ବି ସେ ବିଷୟରେ ଫୁସ୍‌ଫାସ୍ ହେଲେଣି..।"

ସମସ୍ତଙ୍କ ଭିତରେ ଉଚ୍ଛୁଳାଏ ହସ ଖେଳିଗଲା। ମାଡ଼ାମ୍ ଆଗାଥେ ବିଭିନ୍ନ ଦଳ ଭିତରେ ଆପଣାର ବାଟ କାଟି କାଟି ଚାଲିଗଲେ। ବାଟରୁ ଟିକିଏ ବଙ୍କେଇ ଯାଇ ସେ ଜଳଯୋଗର ବ୍ୟବସ୍ଥା କରା ହେଉଥିବା ଜାଗାରେ ଯାଇ ପହଞ୍ଚିଲେ। ଗିଲେସ୍ ତାଙ୍କ ପାଖକୁ ଆସି ପଚାରିଲା, "ଆପଣ କିପରି ଅଛନ୍ତି ?" ଅଳ୍ପ କଥାରେ ତା'ର ଜବାବ ଦେଇ ସେ ତା' ପାଖରୁ ବିଦାୟ ନେଲେ। କିନ୍ତୁ ତା'ର କାନରେ ଫୁସ୍ କରି ଏତକ କଥା କହିବାକୁ ଅବଶ୍ୟ ସେ ଯଥେଷ୍ଟ ସମୟ ପାଇଲେ : "ଆଜି ରାତି ନଅଟାବେଳେ ମୁଁ କାଷ୍ଟଲନ୍ ରାସ୍ତା ପାଖରେ ଥିବି, ନିକୋଲାସ୍‌କୁ କହିଦେବ। ମେରୀ ତୁମ ଲାଗି କୂଦ ପାଖରେ ଅପେକ୍ଷା କରିଥିବ। " ଗିଲେସ୍ ତାଙ୍କର କଥାଟା ଠିକ୍ ଠିକ୍ ବୁଝି ପାରିଲା ତ ? କାହାରି ମନରେ କାଳେ କୌଣସି ସନ୍ଦେହ ଜାତ ହେବ, ସେଥିପାଇଁ ସେ ତା'ପାଖରେ ଆଉ ମୁହୂର୍ତ୍ତେ ମଧ୍ୟ ଠିଆ ହୋଇ ରହିପାରିଲେ ନାହିଁ। ତାଙ୍କର ମନେହେଲା, ସେପରି ଅନେକ ବିଳମ୍ୱ ହୋଇ ଗଲାଣି। ସେ ମେରୀ ପାଖକୁ ଯାଇ କହିଲେ,- "ଆସ, ଯିବା।" ବାଳିକାଟି 'ଆଉ ଦୁଇଦଣ୍ଡ' ଅପେକ୍ଷା କରିବାକୁ ଅନୁରୋଧ କଲା । ଧୀର ସ୍ୱରରେ ମାଡ଼ାମ୍ ଆଗାଥେ କହିଲେ :

"ଆଜି ରାତିରେ ତୋ' ସହିତ ତା'ର ସାକ୍ଷାତ ହେବ।" "ସତେ ?" ଦୀର୍ଘ ନିଶ୍ୱାସ ପକାଇ ବାଳିକା ପଚାରିଲା।

ତା'ର ମୁହଁ ବିଲ୍‌କୁଲ୍ ଶେତା ପଡ଼ି ଯାଇଥାଏ। ଗୃହଧାତ୍ରୀଙ୍କର ବାହୁପାଖରେ ଲାଖି ରହିବା ପରି ସେ ଠିଆ ହୋଇଥାଏ। ମାଡ଼ାମ୍ ଆଗାଥେ କହିଲେ :

"କେଡ଼େ ନିର୍ବୋଧ ଛୁଆ ତୁ....।"

"ମୁଁ ତୁମକୁ ଭାରି ଭଲପାଏ"—ମେରୀ ଉତ୍ତର ଦେଲା।

"ଆଉ ତା" ଆଡ଼କୁ ଅନାଇବା ଦରକାର ନାହିଁ। ଆମେ ଇଆଡ଼େ ଇଆଡ଼େ ଚାଲିଯିବା।"

"ବୁଢ଼ୀ ବିଲେଇଟା ଆସି ତାକୁ ଝାମ୍ପିନେଇ ଚାଲି ଯାଉଚି....।" ମାଡ଼ାମ୍ ମଙ୍ଗୀ କହିବାକୁ ଲାଗିଲେ।

# ଏଗାର

କୃଷ୍ଣ ପକ୍ଷରେ କ୍ଷୟିଷ୍ଣୁ ଜହ୍ନରୁ ଏତେ ଆଲୁଅ କିପରି ବିଛି ହୋଇ ପଡୁଥିଲା, ସେ କଥା ଭାବିବାକୁ ବଡ଼ ଅବାକ୍ ଲାଗୁଥାଏ। କାହାର ଆଖିରେ ପଡ଼ିଯିବା ଭୟରେ ମାଡ଼ାମ୍ ଆଗାଥେ ଲୁଚି ଲୁଚି ଯାଉଥାନ୍ତି। ଏ ପାଖରେ ଗୋଟିଏ ଧଳା ପଥରର ଗଦା ଅପର ପାଖରେ ଖାଲ। ସେ ଭାରି ବିବ୍ରତ ଅନୁଭବ କରୁଥାନ୍ତି। ସହରର ବାହାରେ ନିକୋଲାସ୍ ତାଙ୍କ ପାଇଁ ଅପେକ୍ଷା କରିଥିବ ବୋଲି ସେ କେତେ ଆଶା କରିଥିଲେ ! ହୁଏତ ଗିଲେସ୍ ତାଙ୍କର କଥା ବୁଝି ପାରିଲା ନାହିଁ, ବା ଭୁଲ ଖବର ଦେବା ଉଦ୍ଦେଶ୍ୟରେ ଖବରଟାକୁ ଅତି ସଂକ୍ଷିପ୍ତ କରି ସେ ନିକୋଲାସ୍ ଆଗରେ ଯାଇ କହିଚି !

ରାସ୍ତାଟି ଯେଉଁଠାରେ ଲେରୋଟ୍ ନଦୀକୁ ଅତିକ୍ରମ କରିଚି, ସେହି ପର୍ଯ୍ୟନ୍ତ ଯିବା ଲାଗି ସେ ନିଷ୍ପତ୍ତି କଲେ। ନଈଆଡ଼େ ସନ୍ତସନ୍ତିଆ ଦୁର୍ଗନ୍ଧ ଆସୁଥାଏ, ବେଙ୍ଗଗୁଡ଼ାଙ୍କର ଚିତ୍କାର ମଧ୍ୟ ଶୁଣିବାକୁ ମିଳୁଥାଏ। ଠିକ୍ ତାଙ୍କର ମୁଣ୍ଡ ଉପରେ ପେଚାଟିଏ ବୋବାଉଥାଏ। ହଠାତ୍ ସେ ନିକୋଲାସ୍‌କୁ ଦେଖିବାକୁ ପାଇଲେ। ପୋଲର ବାଡ଼ା ଉପରେ ସେ ଛାଇ ଉଡୁଆଳରେ ବସିଥିଲା। ନିକୋଲାସ୍ ଉଠି ଠିଆ ହେଲା। ସିଧା ଯାଇ ସେ ତା' ପାଖରେ ପହଞ୍ଚିଲେ। ସେ କହିଲା :

"ବସନ୍ତୁ ! ରାସ୍ତା ଉପରୁ ଆଉ ଆପଣଙ୍କୁ କେହି ଦେଖି ପାରିବେ ନାହିଁ।" ମାଡ଼ାମ୍ ଆଗାଥେ ଅପେକ୍ଷା କରିଥାନ୍ତି, -କିନ୍ତୁ କାହିଁ, ନିକୋଲାସ୍ ତାଙ୍କୁ ଚୁମ୍ବନ ଦେଲା ନାହିଁ ତ। ନିକୋଲାସ୍ ମନରେ ସେହି କଥାର ଖିଆଲ ହିଁ ହେଲା ନାହିଁ।

"ସେମାନେ କଣ ଏକାଠି ଅଛନ୍ତି ?" ସେ ପଚାରିଲା। "କୌଣସି ବିପଦର ଆଶଙ୍କା ଅଛି ବୋଲି ଆପଣ ଅନୁମାନ କରୁଚନ୍ତି କି ?"

"ନାଇଁ, ଆଉ କି ବିପଦ ?"- ସେ ଶୁଷ୍କଭାବରେ କହିଲେ, ମାଡ଼ାମ୍ ଡୁବେର୍ନେଟ୍ ଘରେ ପୀଡ଼ିତ ଅଛନ୍ତି। ତା'ପରେ ଯଦି ସେମାନଙ୍କ ଉପରେ କାହାରି ଆଖି ପଡ଼ିଯାଏ, ତା'ହେଲେ ସବୁଠାରୁ ସହଜ ଉପାୟରେ ସମସ୍ୟାର ସମାଧାନ ହୋଇଯିବ...ତେବେ ତ ବାଧ୍ୟ ହୋଇ ତାହାର ପିତାମାତା ସମ୍ମତ ହୋଇ ଯିବେ। "

ତଥାପି ନିକୋଲାସ୍ କିଛି କହିଲା ନାହିଁ। ତାକୁ ଦେଖି ସେହି ପୋଲ ଦେହରେ ଥିବା ଖଣ୍ଡିଏ ପଥର ପରି ବୋଧ ହେଉଥିଲା। ପାଣି ଭିତରକୁ ଚେର ମଡ଼ାଇ ଠିଆ ହୋଇଥିବା ପାଇନ୍ ଗଛଟି ପରି ସେ ନିଶ୍ଚଳ ହୋଇ ରହିଥିଲା। ମାଡ଼ାମ୍ ଆଗାଥେ କହିଲେ :

'ହଁ, ଅବଶ୍ୟ ମୋର ଚାକିରୀଟି ମୋତେ ହରାଇବାକୁ ପଡ଼ିବ। କିନ୍ତୁ ଆଜି ହେଉ ବା କାଲି ହେଉ, ତୁମ ସହିତ ପାରିସ୍ ଗଲେ ଦିନେ ତ ମୋତେ ସେଠାରୁ ଯିବାକୁ ହିଁ ପଡ଼ିବ।'

ନିଦରୁ ଉଠିଲା ପରି ନିକୋଲାସ୍ କହିଲା :

"ନାଁ -ଆଗାଥେ-ନା...ମୋର ବିଶ୍ୱାସ ତୁମର ମନରେ ସେପରି କୌଣସି ଭାବନାକୁ ତୁମେ ସ୍ଥାନ ଦେଇ ନାହଁ। ତୁମେ ତୁମର ସ୍ଥାନଟି ତ୍ୟାଗ କରିବା ଆଦୌ ଉଚିତ ହେବନାହିଁ। ଏ ପର୍ଯ୍ୟନ୍ତ କିଛି ସ୍ଥିର ହୋଇ ନାହିଁ..ଏ ବିଷୟରେ ମୋର ମାଆକୁ ଏ ପର୍ଯ୍ୟନ୍ତ ମୁଁ ପଦେ ହେଲେ କଥା କହିନାହିଁ। "

"ତେବେ ତୁମେ ଆଉ କ'ଣ ପାଇଁ ଅପେକ୍ଷା କରିଚ ?" -ଆଗାଥେ ପଚାରିଲେ। ସେ ଖନିଖନି ହୋଇ କ'ଣ ଗୋଟାଏ ଉତ୍ତର ଦେଲା। ସେ ବିଷୟରେ ସେ ଗୋଟାଏ ପ୍ରାଥମିକ ଉଦ୍ୟମ କରିଚି, ବୋଧହୁଏ ଏହିକଥା ସେ କହିଲା। ସେ କହିଲା ଯେ ଖୁବ୍ ସାବଧାନତାର ସହିତ ତାକୁ ଅଗ୍ରସର ହେବାକୁ ପଡ଼ିବ।

ଝାମ୍ପମାରି ପଡ଼ିବାପରି ମାଡ଼ାମ୍ ଆଗାଥେ କହିଲେ :

"ତୁମ ମାଆର ଦାୟିତ୍ୱ ତୁମେ ମୋ ଉପରେ ଛାଡ଼ିଦେଇ ପାରିବ। ତାଙ୍କର ଆପତ୍ତିଗୁଡ଼ାକୁ ଅତିକ୍ରମ କରିବା ଲାଗି ମୋ ପାଖରେ ଉପାୟ ଓ ସାଧନ ରହିଚି। ସେଥିପାଇଁ ବେଶୀ ସମୟ ଲାଗିବ ନାହିଁ। "

ଆପଣା ବିଷୟରେ ସେ କେଡ଼େ ନିଶ୍ଚିତ ହୋଇ ରହିଥିଲେ ! ଅସଲ କଥା ପାଖକୁ ସେ କେତେ ସିଧାସଳଖ ଭାବରେ ଚାଲିଯାଇ ପାରୁଥିଲେ। ନିକୋଲାସ୍ ବଡ଼ ଶଙ୍କିତ ଅନୁଭବ କରିବାକୁ ଲାଗିଲା। ସେ ତ ଭାବିଥିଲା ଯେ ମାଆଙ୍କୁ ଆପଣା ପକ୍ଷକୁ ଆଣିବାକୁ ଅନେକ ସମୟ ଲାଗିବ। ମାଆ ମରିବା ପର୍ଯ୍ୟନ୍ତ ହୁଏତ ସେମାନଙ୍କୁ ଅପେକ୍ଷା କରିବାକୁ ପଡ଼ିବ। ସେହିପରି ଗୋଟାଏ କିଛି ଘଟିବବୋଲି ମଧ୍ୟ ସେ ଆଶା କରିଥିଲା। ସେତ ବେଶ୍ ନିଶ୍ଚିନ୍ତ ହୋଇ ରହିଥିଲା ଯେ ମାଆ ଏହି ବ୍ୟାପାରରେ ନିଶ୍ଚୟ 'ନାହିଁ' ବୋଲି କହିବେ – ସେ ଏଥିରେ ନିଶ୍ଚୟ ବାଧା ଦେବେ। ଆଉ ଏହି ଏକଜିଦିଆ ଦୃଢ଼ମନା ଜନ୍ତୁ ସେ ସମସ୍ତଙ୍କୁ ବିଲ୍‌କୁଲ୍ ବଦଳାଇ ଦେବାକୁ ବସିଚି !...ସେ କହିଲା :

"ତୁମେ ମୋର ମାଆଙ୍କୁ ଚିହ୍ନି ନାହିଁ !"

"କିନ୍ତୁ ତୁମେ ତ ମୋତେ ଜାଣିଚ..", ସେ ଉତ୍ତର ଦେଲେ : "ଆଉ ଯେତେବେଳେ ମୁଁ କୌଣସି ଉଦ୍ୟମରେ ହାତ ଦିଏ.."

ଗୋଟାଏ ପ୍ରକାର ଛଦ୍ମ ଉଦାସୀନତାର ଭାବ ପ୍ରକାଶ କରି ସେ ପଚାରିଲା :

"ମାଆଙ୍କୁ ତୁମେ କ'ଣ ବୋଲି ଭାବିଚ ?"

"ସେକଥା ତୁମକୁ ମୁଁ କହିପାରିବି ନାହିଁ " ସେ ଉତ୍ତର ଦେଲେ, "ଦେଖିବ, ଆଉ ସପ୍ତାହକ ପରେ ତୁମର ମାଆ ଦିନ ଠିକ୍ କରିବା ଲାଗି ତୁମକୁ ଉଚ୍ଛନ୍ନ କରି ବସିବେ। ଦେଖିବ, ସେ ତାହା କରିବେ କି ନାହିଁ !"

ନିକୋଲାସ୍ ଭୟରେ କମ୍ପିବାକୁ ଲାଗିଲା। ବୋଧହୁଏ ସେ କେବଳ ବଡ଼ାଇ କରି କହୁଚନ୍ତି -ବା, ହୁଏତ ତାକୁ ଫାନ୍ଦରେ ପକାଇବାକୁ ଚେଷ୍ଟା କରୁଚନ୍ତି।

କିଛି ସମୟ ପର୍ଯ୍ୟନ୍ତ ଦୁହେଁ ନୀରବ ରହିଲେ। ନିକୋଲାସ୍ ପ୍ରଥମେ ସେହି ନୀରବତା ଭଙ୍ଗ କଲା। "ଦିନ ଠିକ୍ କରିବାକୁ ? ମୁଁ ସେକଥା କିପରି କରିପାରିବି ? ଆମ ପାଇଁ ଗୋଟିଏ ସ୍ୱତନ୍ତ୍ର ସଂସାର ତିଆରି କରିପାରିବା ଭଳି ଅର୍ଥ ସଞ୍ଚୟ କଲା ପର୍ଯ୍ୟନ୍ତ ମୋତେ ଅବଶ୍ୟ ଅପେକ୍ଷା କରିବାକୁ ପଡ଼ିବ।"

ସେ କହିଥିଲା, "ଆମ ପାଇଁ "- ଏଇଥିରେ ମଧ୍ୟ ମାଡ଼ାମ୍ ଆଗାଥେ ଆପଣାକୁ କମ୍ ଭାଗ୍ୟବତୀ ମନେ କଲେ ନାହିଁ। "କିନ୍ତୁ ମୁଁ ମଧ୍ୟ କିଛି କାମ କରୁଥିବି, -ମୋ' ପାଇଁ ତୁମକୁ ପାହୁଲାଟିଏ ଖରଚ କରିବାକୁ ପଡ଼ିବ ନାହିଁ। ମୋ' ପାଇଁ କେବେ କାହାରିକୁ ପଇସାଟିଏ ଖରଚ କରିବାକୁ ପଡ଼ିନାହିଁ। ପାରିସ୍‌ରେ କୌଣସି ଏକ କାମ ପାଇବା - ଲାଗି ମୁଁ ଅନୁସନ୍ଧାନ କରୁଚି, ଗୋଟାଏ ଦୁଇଟା ଜାଗାରୁ ମୋ'ପାଖକୁ ଡ଼ାକରା ମଧ୍ୟ ଆସିଚି। ଏହାଛଡ଼ା ଏକ ଆବେଗରେ ବଶୀଭୂତ ହେଲା ପରି ସେ କହୁଥାନ୍ତି, "ଆମ ପାଇଁ ତ କେବଳ ଗୋଟିଏ ବଖରା ଘର ଦରକାର। କୌଣସି ଶସ୍ତା ହୋଟେଲକୁ ଯାଇ ଦିନରେ ଗୋଟିଏ ବକ୍ତ ଖାଇ ଆସିଲେ ତ ଆମର ଚଳିଯିବ। ମୁଁ ଭଲଭାବରେ ସବୁ ତାଲିମ ପାଇଚି। ସ୍ପିରିଟ୍ ଲ୍ୟାମ୍ପ ଉପରେ ନୁଡ଼ଲ୍ ରାନ୍ଧିରାନ୍ଧି ମୋର ଅଭ୍ୟାସ ହୋଇଯାଇଚି। ଏମିତି ନୁଡ଼ଲ୍ ଗରମ କରି ଖାଇ ଥରେ ମୁଁ ଗୋଟାଏ ଶୀତକାଳ କଟାଇ ଦେଇଚି।"

ଏହିପରି କଥାରେ ନିକୋଲାସ୍ ତା'ର ପ୍ରାଣର ଗୋପନ ତନ୍ତ୍ରୀରେ ଆଘାତ ପାଇଲା ପରି ଅନୁଭବ କଲା, ମନୁଷ୍ୟ ଜୀବନର ସାଧାରଣ ଶୁଦ୍ଧତା ଗୁଡ଼ିକୁ ସେ ପୂଜା କରୁଥିବା ଜାଗାରେ ଯେଉଁଠାରେ ସେହି ତନ୍ତ୍ରୀ ଗ୍ରଥିତ ହୋଇ ରହିଚି। ଦାରିଦ୍ର୍ୟ ପ୍ରତି ତା'ର ସବୁଦିନେ ମମତା ଥିଲା। କିନ୍ତୁ ସେହି ଦାରିଦ୍ର୍ୟ ସଜ୍ଜିତ ଏବଂ ସୌନ୍ଦର୍ଯ୍ୟ ମଣ୍ଡିତ ହେବା ଦରକାର। ସେ ଆପଣାକୁ ଏହିପରି ଏକ ଶୃଙ୍ଖଳିତ ସଂସାରରେ କେନ୍ଦ୍ର ବୋଲି ମନେ କରିବାକୁ ଆନନ୍ଦ ଅନୁଭବ କରୁଥିଲା, ଯେଉଁଥିରେ କି ପ୍ରତ୍ୟେକ ପଦାର୍ଥ ଏକ କାଳହୀନ ଜ୍ୟୋତିରେ ସ୍ନାତ ହୋଇ ରହିଥିବ। ପରିବାରରେ ଯେଉଁ ସୁପ୍ ରନ୍ଧା ହେଉଥିଲା, ଚୀନା ବାସନ ଉପରେ ଯେଉଁ ଫଳ ସଜାହୋଇ ରହୁଥିଲା, ଦୀର୍ଘ ସମୟ ଧରି ସମସ୍ତେ ଯେତେବେଳେ ନୀରବରେ ଭୋଜନରେ ବସୁଥିଲେ, ନିକୋଲାସ୍ ସେହିସବୁଥିରେ ଏକ ଈଶ୍ୱରୀୟ ମହତ୍ତ୍ୱର ଆରୋପ କରୁଥିଲା। ଆଉ ସ୍ପିରିଟ୍ ଲ୍ୟାମ୍ପ ଓ ନୁଡ଼ଲ୍ ବିଷୟରେ ଏହି ଗପ ଗୁଡ଼ାକ ! ଯେଉଁ କଥାଟା ଶୁଣିଲେ ନିକୋଲାସ୍ ମନରେ ତୀବ୍ର ବିରକ୍ତିଭାବ ଜାତ ହେବ, ଠିକ୍ ସେହି ବିଷୟଟି ଉତ୍‌ଥାପିତ କରିବାକୁ ଗାଲିଗାଇକୁ କେତେ କମ୍ ସମୟ ଲାଗିଲା।

ମାଡ଼ାମ୍ ଆଗାଥେ ଆଉ କିଛି କହିଲେ ନାହିଁ। ଦୁହିଁଙ୍କ ଭିତରେ ସେ ଭୀଷଣ ନୀରବତାର

ଯେଉଁ ପ୍ରାଚୀରଟି ଗଢ଼ି ଠିଆ କରାଇ ଦେଇଥିଲେ, ତାହାହିଁ ତାକୁ ଭୟ ପ୍ରଦର୍ଶନ କରୁଥିଲା। ଦରାଣ୍ଡିଲା ପରି ହୋଇ ସେ ତାଙ୍କର ଗୋଟିଏ ହାତ ବଢ଼ାଇଲେ। ନିକୋଲାସ୍ ତା'ର ହାତକୁ ଫେରାଇ ନେଲା ନାହିଁ। ମାଡ଼ାମ୍ ଆଗାଥେ ସେହି ହାତଟିକୁ ଧରି ପକାଇଲେ। ନଖମୂଳର ବିଷ ଭିତରେ ମୃତ୍ୟୁକୁ ଲୁକ୍‌କାୟିତ କରି ରଖିଥିବା ଏକ ଘୃଣ୍ୟ ଓ କ୍ଷୁଦ୍ର ପ୍ରାଣୀ ସହିତ ଆଗାଥେଙ୍କର ହାତକୁ ତୁଳନା କରାଯାଇ ପାରିବ। ଆଗାଥେ ତା'ର ହାତକୁ ଚିପୁଥିବାର ନିକୋଲାସ୍ ଅନୁଭବ କଲା। ତଥାପି ସେ ଅପସରି ଗଲା ନାହିଁ। ନିକୋଲାସ୍‌ର କାନ୍ଧ ଉପରକୁ ସେ ଆପଣାର ମୁଣ୍ଡଟିକୁ ଆଉଯାଇ ଆଣିଲେ। ମୁଣ୍ଡରେ ଥିବା ଟୋପିଟିକୁ ସେ ଆଗରୁ କାଢ଼ି ଦେଇ ଥିଲେ। ଠିକ୍ ଗୋଟାଏ ଗଛର ଗଣ୍ଡି ପରି ନିଶ୍ଚଳ ହୋଇ ନିକୋଲାସ୍ ସେହିଠାରେ ବସିଥାଏ। ସେ କହିଲେ - "ତୁମର ହୃଦଯନ୍ତ୍ରର ସ୍ପନ୍ଦନ ଅନୁଭବ କରିବାକୁ ମୋର ଇଚ୍ଛା ହେଉଚି।" ସତରେ କଣ ସେ ଏଡ଼େବଡ଼ ସାହସ କରିପାରିବେ ? ହଁ, ସେ ତ ସାହସ କରିବାକୁ ଉଦ୍ୟତ ହେଲେଣି ! ନିକୋଲାସ୍‌ର କମିଜ ତଳକୁ ସେ ଆପଣାର ଆଙ୍ଗୁଠି ଭର୍ତ୍ତି କରିନେଲେ। ହଠାତ୍ ସେ ଆପଣାର ଅନାବୃତ ଶରୀର ଉପରେ ତାଙ୍କର ଛୋଟିଆ ନଖଗୁଡ଼ିକର ସ୍ପର୍ଶ ଅନୁଭବ କରିପାରୁ ନାହିଁ। "..ପଥର ହୋଇ ଯାଇଥିବା ତା'ର ହୃଦୟଟା କିପରି ବା ସ୍ପନ୍ଦନ କରନ୍ତା ? ଆଗାଥେ ଖରବେଗରେ ନିଶ୍ୱାସ ପକାଉଥାନ୍ତି। ସେ ଏଥର କ'ଣ କହିବେ, ନିକୋଲାସ୍ ସେ କଥା ବେଶ୍ ଅନୁଭବ କରି ପାରୁଥିଲା।

"ମୋତେ ଚୁମ୍ବନଟିଏ ଦିଅ ! ତୁମେ ଆଜିଯାଏ ଦିନେ ହେଲେ ମୋତେ ଚୁମ୍ବନଟିଏ ଦେଇ ନାହିଁ। " - ସେ ଆପଣାର ସତୃଷ୍ଣ ଅଧରକୁ ସମର୍ପି ଧରିଲେ।

"ନାଇଁ " ନିକୋଲାସ୍ କହିଲା, "ତୁମର ଆଖି ଦିଓଟି...ତୁମର ଆଖି ଦିଓଟିକୁ ହିଁ ମୁଁ ଭଲପାଏ। "

କୌଣସି ପ୍ରକାର ଅଶ୍ୱସ୍ତି ଅନୁଭବ ନ କରି କେବଳ ତୁମର ଆଖି ଦିଓଟିକି ହିଁ ମୁଁ ମୋ'ର ଓଠରେ ସ୍ପର୍ଶ କରି ପାରିବି" - ସେ ଠିକ୍ ଏହାହିଁ କହିବାକୁ ଚାହୁଁଥିଲା।

ତଥାପି ତାଙ୍କ ଉପରକୁ ସେ ଯେଉଁ ଶବ୍ଦପୁଞ୍ଜ ନିକ୍ଷେପ କଲା, ସେଥିରେ ସେ ଆନନ୍ଦାତିଶଯ୍ୟରେ ବିହ୍ୱଳ ହୋଇ ପଡ଼ିଲେ।

ଠିକ୍ ସେହି ମୁହୂର୍ତ୍ତରେ, ଡୁବେର୍ନେଟ୍ ଘର ପାଖରେ ଥିବା କୁନ୍ଦଟିର ତଳକୁ, କାହାର ଅତି କୋମଳ ଦୀର୍ଘଶ୍ୱାସର ଶବ୍ଦ ଶୁଣାଯାଉ ଥିଲା। ଓଲଟା ହୋଇ ଦେଖା ଯାଉଥିବା କ୍ଷୟପ୍ରାପ୍ତ ବିଳମ୍ବିତ ଚନ୍ଦ୍ରାର ଦୃଷ୍ଟି ସେଠାରେ ଆଦୌ ପଡ଼ିପାରୁ ନଥିଲା। ସେହି ଦିର୍ଘଶ୍ୱାସକୁ ଚନ୍ଦ୍ର ହୁଏତ ପତ୍ରମର୍ମର ଶବ୍ଦ ବୋଲି ଭ୍ରମ କରୁଥିଲା। "ନାଁ -" ମେରୀ କହିଲା. "ଶେଷକୁ ତୁମେ ମୋର ବ୍ଲାଉଜ୍ ଚିରି ପକାଇବ..ହଁ ସେଇଠି ଇଏ ବରଂ ଭଲ।" ତା'ପରେ ପୁଣି କହିଲା: "ଓଃ ମୁଁ ଆଉ ନିଶ୍ୱାସ ମାରି ପାରୁନାହିଁ। " ଗୋଟାଏ ଚୁମ୍ବନ ଯେ ଏପରି ଦୀର୍ଘକାଳସ୍ଥାୟୀ

ହୋଇପାରେ, ସେ କଥା ମେରୀ ଆଗରୁ କଦାପି କଳ୍ପନା ହିଁ କରି ନଥିଲା। କୌଣସି ପ୍ରକାରେ ନିଶ୍ୱାସ ନେଇ ସେ କହିଲା :

"ତଳେ ଶୋଇ ପଡ଼ିଲେ ବରଂ ଦୁହିଁଙ୍କ ଲାଗି ଅଧିକ ଆରାମ ଦାୟକ ହୁଅନ୍ତା।"

"ନାଁ –" ଗିଲେସ୍ ପ୍ରତିବାଦ କଲା, "ନାଇଁ, ନାଇଁ।"

ଏହି କୁହୁକହିଁ ଚନ୍ଦ୍ରକୁ ବୃହତ୍ ଟୁଲିପ୍ ଗଛର ଡ଼ାଳ ଉପରେ ନିଶ୍ଚଳ କରି ରଖିଦେଇ ଥିଲା। ସେ -ସେଇ ଝିଅଟି ଆପଣାକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କରି ଦେଇଥିଲା। ହିଂସ୍ର ପୁରୁଷଟି କିନ୍ତୁ ଆପଣାକୁ ଏହି ଦିଗରୁ ସଂବୃତ କରି ରଖିଥିଲା। ଝିଅଟିର ଈଷତ ବିଭକ୍ତ ଅଧରର ବିମ୍ବଫଳ ଓ ଦ୍ରୁତ ସ୍ପନ୍ଦନ କରୁଥିବା ବେକଟି ବ୍ୟତୀତ ନାରୀ ଦେହର କୌଣସି ରହସ୍ୟକୁ ଜାଣିବାଲାଗି ତା'ର କୌଣସି ଅଭିଳାଷ ନଥିଲା। ଝିଅଟିର ବେକକୁ ସେ ତା'ର ଦୀର୍ଘ ଓ ବ୍ୟବହାର ଅକୁଶଳ ହାତ ଦ୍ୱାରା ସମ୍ପୂର୍ଣ୍ଣ ଭାବରେ ବେଷ୍ଟିତ କରି ଧରିଥିଲା।

"ତୁମେ ଦୁହେଁଯାକ କଣ ପାଗଳ ନା କ'ଣ ? -ରାତି କେତେ ହେଲାଣି ସେ ବିଷୟରେ କିଛି ହୋସ୍ ଅଛି ନା ନାହିଁ ?"

ଚନ୍ଦ୍ର ଅସ୍ତ ହୋଇ ଯାଇଥାଏ। କୂଦର ଉପରୁ ଗାଲିଗାଇର ଅସ୍ପଷ୍ଟ ଶରୀରଟା ବେଶ୍ ଦୃଷ୍ଟ ହେଉଥିଲା। ଦୁହିଁଙ୍କର ମୁହଁ ପରସ୍ପରଠାରୁ ଛାଡ଼ି ଆସିଲା, କିନ୍ତୁ ସେମାନେ ଯେଉଁଠି ଥିଲେ, ସେଇଠି ବସି ରହିଲେ।

"ପୁଣି କାଲିକି, ପ୍ରିୟତମେ।" ଅଧୀର ଆବେଗର ସହିତ ଗିଲେସ୍ କହିଲା। "ପୁଣି କାଲି ଅବଶ୍ୟ ଦେଖାହେବ -କେଉଁଠାରେ ହେବ, ମୁଁ ସେକଥା ଭାବିବାକୁ ଚାହେଁ ନାହିଁ, କିନ୍ତୁ ନିଶ୍ଚୟ ଭେଟ ହେବ। ତୁମକୁ ମୋର ବାହୁ ବନ୍ଧନରେ ବେଷ୍ଟିତ ନକରି ମୁଁ ଗୋଟିଏ ଦିନ ମଧ୍ୟ ଯିବାକୁ ଦେବି ନାହିଁ।"

"ହଁ, କାଲି" -ମେରୀ କହିଲା, ଓ ପୁଣି, "କାଲି।" କାଲି ଏବଂ ସେମାନଙ୍କର ଜୀବନର ପ୍ରତ୍ୟେକଟି ଦିନ। ଛୋଟିଆ ରାସ୍ତାଟିର ଧାରରେ ଥିବା ଉଇଲୋ ଗଛଗୁଡ଼ିକର ଅନ୍ତରାଳରେ ଗିଲେସ୍ ଅଦୃଶ୍ୟ ହୋଇଗଲା। ତୀଖ ବାଟଦେଇ ମେରୀ କୂଦ ଉପରକୁ ଉଠିଗଲା।

"ଭଗବାନଙ୍କ କୃପାରୁ ମାଆ ଶୋଇଥିବେ ବି !"

"ଚିନ୍ତାର କୌଣସି କାରଣ ନାହିଁ। ସେ ଆଜି ନିଦ – ଔଷଧରୁ ପାନେ ଖାଇ ନିଘୋଡ଼ ନିଦରେ ଶୋଇଚନ୍ତି।"

ମେରୀ ମ୍ୟାଡ଼ାମ୍ ଆଗାଥେଙ୍କର କୋଠରୀରେ ପ୍ରବେଶ କଲା। ବତୀଟି ସେତେବେଳେ ଯାଏ ସେଠି ଜଳୁଥାଏ। ଆଗାଥେ ତା'ଆଡ଼କୁ ଅନାଇଲେ। ସେ ଦେଖିଲେ, ତା'ର ବ୍ଲାଉଜ୍

ଲୋଚାକୋଚା ହୋଇ ଯାଇଚି, ଓଠ ଦୁଇଟା ଫୁଲାଫୁଲା ଦିଶୁଚି, ଅବିନ୍ୟସ୍ତ କେଶଭିତରୁ ତା'ର ମୁହଁର ଚେହେରାଟା କୁଆଡ଼େ କେତେ ଦୂରରେ ହଜିଯାଇ ଥିବା ପରି ସ୍ୱପ୍ନାବିଷ୍ଟ ଦେଖାଯାଉଚି। ତୀବ୍ର ଭର୍ତ୍ସନା ଶୁଣିବାର ଆଶଙ୍କା କରି ବା ଚୁମ୍ବନ ପାଇବାର ଓ ଗେହ୍ଲା ହେବାର ଆବଶ୍ୟକତା ଅନୁଭବ କରି, ଝିଅଟି ଜ୍ୟେଷ୍ଠାଙ୍କର ବେକକୁ ଆପଣାର ବାହୁ ଦୁଇଟି ଦ୍ୱାରା ବେଷ୍ଟିତ କରି ଧରିଲା, କିନ୍ତୁ ପ୍ରାୟ ତତ୍‌କ୍ଷଣାତ୍ ପୁଣି ବାହୁ ଦିଉଟିକୁ ଖସାଇ ଆଣିଲା।

"ତୁମେ କାନ୍ଦୁଚ, ମାଡ଼ାମ୍ ଆଗାଥେ! - ତୁମେ କାନ୍ଦୁଚ କାହିଁକି? ତାଙ୍କ ସହିତ ତ ତୁମର ଭେଟ ହୋଇଥିବ, ନୁହେଁ ? ଅତିଶୟ ଆନନ୍ଦରେ କ'ଣ ତୁମେ କାନ୍ଦୁଚ କି?"

ଧାତ୍ରୀ କୌଣସି ଉତ୍ତର ଦେଲେ ନାହିଁ। ସେ କୌଣସି ଈର୍ଷା ଅନୁଭବ କରୁଥିଲେ ବୋଲି କଦାପି କୁହାଯାଇ ପାରିବ ନାହିଁ। ତାଙ୍କର ତୁଷାର କୁଆରରେ ଭଟା ପଡ଼ିବା ଆରମ୍ଭ ହୋଇଥିଲା, ପଛରେ କେବଳ ଏକ ତିକ୍ତ କୋମଳତା ଅବଶିଷ୍ଟ ରହିଯାଇ ଥିଲା, ସେଥିରେ ଆଶାର କୌଣସି ଚିହ୍ନ ନଥିଲା। ସେ ଆପଣା ଆଖିର ଲୁହକୁ ପୋଛି ନେଲେ ନାହିଁ। ସେହି ଅଶ୍ରୁ ଉପରେ କାହାର ଦୃଷ୍ଟି ପଡୁଚି କି ନାହିଁ, ସେଥିପ୍ରତି ତାଙ୍କର କୌଣସି ଦୃଷ୍ଟି ନଥିଲା।

## ବାର

ତହିଁ ଆରଦିନ ସଞ୍ଜବେଳେ ପୁଣି ଯେତେବେଳେ ସେହି ବଡ଼ ଟୁଲିପ ଗଛର ଡ଼ାଳ ଭିତରୁ ଖଣ୍ଡିଆ ଜହ୍ନଟା ମୁହଁ ଦେଖାଉଥିଲା, ସେତେବେଳେ କୌଣସି ମାନବ ପ୍ରାଣୀର ଦୀର୍ଘ ନିଶ୍ୱାସ ଆଉ ପତ୍ରମର୍ମର ସହିତ ମିଶି ଯାଉଥିବାର ଶୁଣାଗଲା ନାହିଁ। ଘାସ ଉପରେ କାଲିଠାରୁ ମଣିଷ ପାଦର ମଡ଼ା ଏପର୍ଯ୍ୟନ୍ତ ରହିଥିଲା। କିନ୍ତୁ ଆଜି ମେରୀ ଓ ଗିଲେସ୍ ଆଉ ଏଠାକୁ ଆସି ନଥିଲେ। ଇତିମଧରେ ଗୋଟାଏ ଘଟଣା ମଧ ଘଟି ଯାଇଥିଲା। ନିକୋଲାସ୍‌ର କୋଠରୀରେ ବସି ମାଡ଼ାମ୍ ଆଗାଥେ ଦୁଇ ବନ୍ଧୁଙ୍କୁ ତାହାରି ବିବରଣୀ ଶୁଣାଉଥିଲେ। ସେଦିନ ବଡ଼ି ଭୋରରୁ ଜୁଲିଆ ଡୁବେର୍ନେଟ ପୁଣି ସେହି ଯନ୍ତ୍ରଣା ଦ୍ୱାରା ଏଡ଼େ ପ୍ରବଳ ଭାବରେ ପୀଡ଼ିତ ହୋଇ ପଡ଼ିଲେ ଯେ, ସେହି ଯୁବକ ଡ଼ାକ୍ତରଙ୍କୁ ପୁଣି ଡ଼କାଇ ପଠାଇବାକୁ ହେଲା। ଅଳ୍ପ ବୟସର ଡ଼ାକ୍ତରଙ୍କର ଏଥିକୁ ବୁଦ୍ଧି ପାଇଲା ନାହିଁ ଏବଂ ସେ ଯାଇ ଡ଼ାକ୍ତର ସାଲୋନଙ୍କ ସହିତ ଏହି ବିଷୟରେ ପରାମର୍ଶ କଲେ। ଏଥିଲାଗି ଯନ୍ତ୍ରଣାରେ ପୀଡ଼ିତ ହୋଇ ପଡ଼ିଥିବା ଭଦ୍ରମହିଳାଙ୍କର ଅନୁମତି ନେବା କଥାଟା କେହି ଭାବି ପାରିନଥିଲେ। ଡ଼ାକ୍ତର ସାଲୋନ୍ ରୋଗୀକୁ ସିଧା ବୋର୍ଦୋ ନେଇ ଯିବାର ବ୍ୟବସ୍ଥା କରି ଦେଲେ। ସେ କହିଲେ, ସେମାନେ ଅନେକ ଦିନରୁ ଅପେକ୍ଷା କରି ରହିଥିଲେ। ମେରୀ ମଧ୍ୟ ବାପାଙ୍କ ସାଙ୍ଗରେ ଘରୁ ଚାଲି ଯାଇଥିଲା।

"ଆର୍‌ମାଣ୍ଡ୍ କେତେ ଅନୁନୟ ବିନୟ କରି କହିଲେ, କିନ୍ତୁ ସେଥିରେ କୌଣସି ଲାଭ ହେଲା ନାହିଁ। ଘରେ ରହି ମୁଁ ଘରର ଯାବତୀୟ ଜିନିଷ ଉପରେ ଆଖି ରଖିଥିବି ବୋଲି ଜୁଲିଆ ଜିଦ୍ କରି କହିଲେ। ସେ ମୋତେ ଯେଉଁ ସବୁ ନିର୍ଦ୍ଦେଶ ଦେଇ ଯାଇଚନ୍ତି, ସେଥିରୁ ପରିଷ୍କାର ଜଣା ଯାଉଚି ଯେ ସେ ଆଉ ଘରକୁ ଫେରି ଆସିବେ ବୋଲି ନିଜେ ମଧ୍ୟ ବିଶ୍ୱାସ କରୁ ନାହାନ୍ତି। ତାଙ୍କର ଶେଷେ ସମୟ ଆସି ପହଞ୍ଚିଲାଣି ବୋଲି ବୋଧହୁଏ ସେ ଅନୁଭବ କରୁଚନ୍ତି। ଏତେ ଧୀର ଓ ଶାନ୍ତ ଭାବରେ ଆଉ କେହି ମୃତ୍ୟୁର ସମ୍ମୁଖୀନ ହୋଇ ପାରନ୍ତେ ନାହିଁ ।"

ଗିଲେସ୍ ପାଇଁ ସବୁଦିନେ ଉଦ୍ଦିଷ୍ଟ ଥିବା ବିଶେଷ ଚେୟାରଟି (ସେ ଗନ୍ଧୀ ପୁଣି ମୋ ଚେୟାରରେ ବସିଚି।) ଉପରେ ସେ ଆସନ ମାଡ଼ି ବସିଥାନ୍ତି, ସତେ ଅବା ସେ ଆପଣା ଘରେ ବସିଚନ୍ତି, ଯେପରି ସେ ନିକୋଲାସ୍ ପାଖରୁ ମୁକ୍ତି ପାଇଚନ୍ତି, ତା'ର ସମସ୍ତ ବ୍ୟକ୍ତିଗତ ସଂସାରରୁ ମୁକ୍ତି ପାଇଚନ୍ତି। ନିକୋଲାସ୍ ଏଥିରେ କୌଣସି ପ୍ରକାର ବିଚଳିତ ହେବାର ଜଣା ପଡୁନାହିଁ।

"ତୁମେ କଣ ଭାବୁଚ ଧର୍ମ ସମ୍ବନ୍ଧୀୟ ଜୀବନରେ ତାଙ୍କର କୌଣସି ସ୍ଥାନରେ କୌଣସି କଳୁଷ ନାହିଁ ?"

ଜୁଲିଆ ଡୁବେର୍ନେଟ୍‌ଙ୍କର ? ସେ ବିଷୟରେ ଚିନ୍ତା କରିବାର କିଛି ନାହିଁ। ତାଙ୍କର ଦୃଢ଼ ବିଶ୍ୱାସ ଯେ ଭଗବାନ ଓ ତାଙ୍କ ଭିତରେ ଯାହା ଯେପରି ଭାବରେ ରହିବା ଉଚିତ, ସବୁ ଠିକ୍ ସେହିପରି ଭାବରେ ରହିଚି। ସେ ତ ଟିକିନିଖି କରି ସବୁ ବ୍ୟବସ୍ଥା କରି ଯାଇଚନ୍ତି, କୋଉଁଠି କିଛି ବାଦ୍ ଦେଇ ନାହାନ୍ତି। କେତୋଟି ଅତ୍ୟନ୍ତ ପୁଣ୍ୟପ୍ରଦ ଦାନକର୍ମ ବିଷୟରେ ସେ ବ୍ୟବସ୍ଥା କରିଚନ୍ତି। ସେ ବିଷୟ କେବଳ ଭଗବାନ ଓ ତାଙ୍କ ବ୍ୟତୀତ ଆଉ କାହାରିକୁ ଜଣା ନାହିଁ। ଭଗବାନଙ୍କ ବିଷୟରେ ସେ କୌଣସି ଚିନ୍ତା କରୁ ନାହାନ୍ତି। ପ୍ରକୃତରେ ଭଗବାନ ନାହାନ୍ତି ବୋଲି ଆବିଷ୍କାର କଲେ ମଧ୍ୟ ସେ ଆଦୌ ବିସ୍ମିତ ହେବେ ନାହିଁ। ଏହିସବୁ ବୃଦ୍ଧ ବୟସ୍କା କାଥୋଲିକ୍ ସ୍ତ୍ରୀଲୋକମାନଙ୍କ ଅପେକ୍ଷା ଅଧିକ ବାସ୍ତବ ବୁଦ୍ଧି - କୁଶଳ ଆଉ କେହି ନାହାନ୍ତି, ଏହି ଗୁଣଟା ଯେପରି ସେମାନଙ୍କର ମଜ୍ଜାଗତ ହୋଇ ଯାଇଚି।"

"ତଥାପି ଜୁଲିଆ ଡୁବେର୍ନେଟଙ୍କ ଭିତରେ ଏକ ଅମର ଆତ୍ମା ବିଦ୍ୟମାନ ରହଚି" ନିକୋଲାସ୍ କହିଲା, "ସେ କଥା ଭାବିଲାବେଳକୁ ପ୍ରକୃତରେ ବଡ଼ ଆଶ୍ଚର୍ଯ୍ୟ ଲାଗେ।

ଗିଲେସ୍ କହିଲା, "ମୋର ବାପା ମୋତେ କହୁଥିଲେ ଯେ ମାଡ଼ାମ୍ ଡୁବେର୍ନେଟ୍‌ଙ୍କ ବିଷୟରେ ସେ ଯାହା ଭାବୁଚନ୍ତି, ତାହାହିଁ ଯଦି ସତ୍ୟ ହୁଏ, ତେବେ ତ ତାଙ୍କର ଆଶା ଛାଡ଼ି ଦେବାକୁ ହେବ। ତଥାପି ସେ ଆହୁରି କେତେ ଦିନ ନିଶ୍ଚୟ ବଞ୍ଚି ରହିବେ। ତଥାପି ଯାହା ଘଟୁ ନା କାହିଁକି," -ଆପଣାର ଆନନ୍ଦକୁ ଗୋପନ କରି ରଖିବାରେ କୌଣସି ଚେଷ୍ଟା ନକରି

ସେ କହିଲା, "ଭାଗ୍ୟଦେବୀ ଆମ ପକ୍ଷରେ ଅଛନ୍ତି। ବର୍ତ୍ତମାନ ସବୁକଥା ପାଣିରେ ପହଁରି ଗଲା ପରି ଠିକ୍ ଓ ସହଜ ହୋଇଯିବ। "

"ଆମେ ଆଉ ତୁମର ସାହାଯ୍ୟ ଦରକାର କରିବୁ ନାହିଁ " - ଗିଲେସ୍‌ର କଥାକୁ ଗାଳିଗାଇ ଏହିପରି ଅର୍ଥ କଲେ।

"ନିଶ୍ଚୟ" ସେ କହିଲେ - ତାଙ୍କର କଥାରେ ଏକ ତୀକ୍ଷ୍ଣତା ଅତି ସ୍ପଷ୍ଟ ହୋଇ ଯାଉଥିଲା, "ଭାଗ୍ୟଦେବୀ ନିଶ୍ଚୟ ତୁମ ପକ୍ଷରେ ଅଛନ୍ତି, କାରଣ ବର୍ତ୍ତମାନ୍ କେବଳ ତୁମର କାରବାରଟା ବାକୀ ଅଛି। "

ଗିଲେସ୍ ପ୍ରାୟ ବାକ୍‌ରୁଦ୍ଧ ହୋଇ ଆସିଲା। ସେ ଫଣ ଫଣ କରି କହିଲା, "ତୁମର କି ଅଧିକାର ଅଛି.." ଆଗାଥେ ଆସନରୁ ଉଠି ଟେବୁଲ ଉପରୁ ବ୍ୟାଗ୍‌ଟି ଉଠାଇଲେ।

"ସେ କଥା ଜାଣିବାକୁ ବେଶୀ ଡ଼େରି ଲାଗିବ ନାହିଁ, ତୁମେ ନିଜେ ନିଜେ ଜାଣିବ।"

ନିକୋଲାସ୍ ସଂକେତ ଦେଇ ଆଗାଥେଙ୍କୁ ଅଟକାଇ ରଖିଲା। "ତୁମ କଥାର କୌଣସି ଅର୍ଥ ମୁଁ ବୁଝି ପାରୁ ନାହିଁ " ସେ କହିଲା "ସବୁକଥା ତ ଠିକ୍ ହୋଇ ଯାଇଚି, ନୁହେଁ ?"

ଅନେକ ସମୟ ପର୍ଯ୍ୟନ୍ତ ଗାଳିଗାଇ ସିଧା ତାହାରି ଆଡ଼କୁ ଅନାଇ ରହିଲେ। ନିକୋଲାସ୍ ଆଦୌ ଅପସରି ଗଲା ନାହିଁ। "ଯାହା ଘଟିଲେ ଘଟୁ ପଛକେ, ସେଥିରେ କିଛି ଯାଏ ଆସେ ନାହିଁ ? -ଆଗାଥେ ପଚାରିଲେ, ସମ୍ମତି ଜଣାଇ ନିକୋଲାସ୍ ମୁଣ୍ଡ ହଲାଇଲା। ଆଗାଥେ ତାକୁ ପାଖକୁ ଟାଣି ନେଲେ ଓ ଏକ ଅସଣ୍ଢଣା ଆଲିଙ୍ଗନରେ ତାକୁ ଆବୃତ କରି ପକାଇଲେ। ଗିଲେସ୍ ଝରକା ଆଡ଼କୁ ଅପସରି ଯାଇଥିଲା। ଆଗାଥେ ଆପଣାର ବ୍ୟାଗ୍‌ରୁ ରୁମାଲଟିଏ ବାହାର କରି ଆଖି ପୋଛିବାକୁ ଲାଗିଲେ।

"ପ୍ରିୟ ନିକୋଲାସ୍, ପ୍ରକୃତରେ ମୁଁ କେବେହେଲେ ତୁମକୁ ସନ୍ଦେହ କରି ନାହିଁ। ତୁମର ମାଆ ମୋ' ପାଇଁ ତେଣେ ଅପେକ୍ଷା କରୁଥିବେ -" ଆଗାଥେ କହିଲେ, " ସମୟ ପାଇବା ମାତ୍ରକେ ତାଙ୍କୁ ଯାଇ ଦେଖା କରିବି ବୋଲି ମୁଁ ପ୍ରତିଶ୍ରୁତି ଦେଇଥିଲି। ଡୁବେର୍ନେଟ୍ ପରିବାର ବିଷୟରେ ସବୁ ବିଷୟ ଶୁଣିବା ଲାଗି ତାଙ୍କର ଭାରି ଇଚ୍ଛା..କିନ୍ତୁ ପ୍ରକୃତରେ ଆମ ଦୁହିଁଙ୍କ ବିଷୟରେ ତାଙ୍କ ସହିତ କଥାବାର୍ତ୍ତା କରିବାକୁ ମୁଁ ଇଚ୍ଛା କରୁଚି। "

"ନା - ନା - ବର୍ତ୍ତମାନ ନୁହେଁ।"

ବାଧ୍ୟ ହୋଇ ସେ ଏହିପରି ଚିତ୍କାର କରି କହିଲା। କିନ୍ତୁ ସିଏ ଅଟଳ ରହିଲେ। ଅପେକ୍ଷା କରିବାର ଆଉ କି କାରଣ ରହିଚି ? ଆଉ ସମୟ ମଧ୍ୟ ବେଶୀ ନାହିଁ। ଡୁବେର୍ନେଟ୍ ପରିବାର ପାଖକୁ ତାଙ୍କୁ ବୋର୍ଦୋ ଯିବାକୁ ହେବ। ଯିବା ପାଇଁ ସେ ଆର୍‌ମାଣ୍ଡ୍‌କୁ ନିର୍ଭର ପ୍ରତିଶ୍ରୁତି ଦେଇଚନ୍ତି। ରାତିଦିନ ତାଙ୍କୁ ରୋଗୀ ପାଖରେ ଡ଼ାକ୍ତରଖାନାରେ ରହିବାକୁ ପଡ଼ିବ। ସେ ନ ଗଲେ ଆର୍‌ମାଣ୍ଡ୍ ଭାରି ହଇରାଣ ହେବେ।

"ମୋ'ର ମାଆଙ୍କୁ ତୁମେ କ'ଣ କହିବ ବୋଲି ଭାବିଚ ?" - ନିକୋଲାସ୍ ବାହାରକୁ ଅନାଇଲା।

"ସେହି କଥାଟି ତୁମ ପାଖକୁ ଏକ ଛୋଟିଆ ବିସ୍ମୟ ପରି ଆସୁ ମୁଁ ଏହା ହିଁ ଚାହେଁ। ଆଜି ରାତିରେ ତୁମେ ମାଆଙ୍କ ପାଖରୁ ସବୁ କଥା ଶୁଣିବାକୁ ପାଇବ। ...ଶୁଣିବ କି ନାହିଁ ଦେଖିବ। "

ମାଡ଼ାମ୍ ଆଗାଥେ ନାସିକା କୁଞ୍ଚନ କଲେ। ହସିବାକୁ ଯାଇ ତାଙ୍କର ଅଧର ବିସ୍ତାରିତ ହୋଇଗଲା ଏବଂ ତାଙ୍କର ପାଟି ଭିତରେ ଥିବା ପ୍ରଧାନ ଦାନ୍ତଗୁଡ଼ିକୁ ପ୍ରକଟ କରିଦେଲା।

"ଆମ ଦୁହିଁଙ୍କର ବାଗ୍‌ଦାନ ହୋଇ ସାରିଚି ବୋଲି ତୁମେ କହିବ ନାହିଁ ତ ?"

ବାସ୍ କଥାଟା ଏତିକିବେଳେ ଧରା ପଡ଼ିଗଲା।

ସେ ଅତି ଖଳ ଭାବରେ ନିକୋଲାସ୍ ଆଡ଼କୁ ଅନାଇଁଲେ।

"ଆଃ - ସେ କଥାଟା ମୋର ଅତି ଗୋପନକଥା -ତାହା କେବଳ ମୁଇଁ ଜାଣିଚି। "

ଅବଶ୍ୟ ବିଜୟ ଲାଭ କରିବାକୁ ସେ ଅଟଳ ହୋଇ ରହିଥିଲେ। ସେ କ'ଣ କରିବାକୁ ଯାଉଚନ୍ତି, ଅତି ନିଷ୍ଠୁର ଭାବରେ ତାହା ସେ ଜାଣିଥିଲେ।

"ଆଚ୍ଛା, ମୁଁ ତଳ ମହଲାକୁ ଯାଉଚି, ତୁମର ମାଆଙ୍କ ସହିତ ଦେଖା କରିବି। ଆଜି ସନ୍ଧ୍ୟା ପର୍ଯ୍ୟନ୍ତ -ରାତି ନଅଟାବେଳେ କାଷ୍ଟିଲନ୍ ରାସ୍ତାରେ। "

ଆଗାଥେ ଗୃହ ପରିତ୍ୟାଗ କରି ଚାଲିଯିବା ମାତ୍ରକେ ଆଉ ଗିଲେସ୍ ସମ୍ଭାଳି ପାରିଲା ନାହିଁ - "କୁତୀ, ଗନ୍ଧୀ କୋଉଠିକାର !" -ସେ ଗର୍ଜନ କରି ଉଠିଲା।

ତା' ପାଟିରେ ହାତ ଦେଇ ନିକୋଲାସ୍ ତାକୁ ବନ୍ଦ କରିବାକୁ ବସିଲା।

"ତାକୁ ତ ସମ୍ପୂର୍ଣ୍ଣ ଭୁଲ ବୁଝିଚୁ ", ସେ କହିଲା ; ସେଇଠୁ ଟିକିଏ କ୍ଷୀଣ ସ୍ୱରରେ, "ସେ ପ୍ରକୃତରେ କ'ଣ, ତାହା ଆବିଷ୍କାର କରିବା ଲାଗି ତ ବର୍ତ୍ତମାନ ମୁଁ ଜୀବନଯାକ ସମୟ ପାଇବି।"

"ତୁ ତାକୁ ଭୟ କରୁଚୁ ! ସେ ତୋତେ ଭୀତତ୍ରସ୍ତ କରି ପକାଇଚି, ତୁ ଯେତେ ନାହିଁ କଲେ ମଧ୍ୟ ମୁଁ ମାନିବି ନାହିଁ। "

"ଏପରି କଥାମାନ କହିବାକୁ ତା'ର ଆଦୌ ଇଚ୍ଛା ନ ଥିଲା। ତଥାପି ଆପଣାର ସମ୍ମତି ଦେଲାବେଳେ କଦାପି ସେ ଭୟ ପରବଶ ହୋଇ ତାହା ଦେଇ ନଥିଲା। ସ୍ଥିର ଭାବରେ ସେ ଗିଲେସ୍ ଆଡ଼କୁ ଅନାଇ ରହିଲା। ଆଖି ଫେରାଇ ଗିଲେସ୍ ଝରକା ବନ୍ଧ ଉପରେ କହୁଣୀ ଭରା ଦେଇ ଠିଆ ହେବାକୁ ଗଲା। ଚାତକ ପକ୍ଷୀମାନେ ଏବର୍ଷ ଟିକିଏ ଶୀଘ୍ର ବସା ଭାଙ୍ଗିବା ଆରମ୍ଭ କରି ଦେଇଚନ୍ତି। ସେମାନେ ପଞ୍ଝା ପଞ୍ଝା ହୋଇ ଲାଇମ୍ ଗଛ

ଉପରେ ବସୁଥାନ୍ତି, ଚିତ୍କାର କରୁଥାନ୍ତି, କୌଣସି ଏକ ଅଦୃଶ୍ୟ ଶିକାର ନେଇ କେଁକଟର ଆରମ୍ଭ କରିଦେଇ ଥାନ୍ତି। ତା'ର ଶିକାର ତ ମେରୀ ! କିନ୍ତୁ ଏ ପର୍ଯ୍ୟନ୍ତ ତାହା ହସ୍ତଗତ ହୋଇ ନାହିଁ। ଏ ପର୍ଯ୍ୟନ୍ତ ମଧ୍ୟ ଗାଲିଗାଇ ଗୋଟାଏ ବିପଦ ହୋଇ ରହିଚନ୍ତି। ସେ ବର୍ତ୍ତମାନ ଯେଉଁସବୁ ଧମକ ଦେଇଗଲେ, ସେ ସବୁକୁ ଏକାବେଳେକେ ଫମ୍ପା ବୋଲି କୁହାଯାଇ ପାରିବ ନାହିଁ। ତାଙ୍କର କଥା ନ ମାନି ପ୍ରକୃତରେ ସେ କେଡ଼େ ବୋକାମି କରିଚି। ବରଂ କୌଣସି ପ୍ରକାର ବିପଦକୁ ବରଣ ନ କରିବାହିଁ ଭଲ। ବିଚାରା ନିର୍ବୋଧ ମାଛିଟା ଜାଲ ଭିତରେ ପଡ଼ିଲେ ପତ୍ରୁ ପଛକେ, ଶେଷ ମୁହୂର୍ତ୍ତରେ ମଧ୍ୟ ତାକୁ ସେହି ଜାଲରୁ ଉଦ୍ଧାର କରିବାର ଅବସର ସବୁବେଳେ ମିଳିବ। ଘର ଭିତରକୁ ଫେରିଆସି ସେ ଚେୟାର ଉପରେ ବସିପଡ଼ିଲା। ନିକୋଲାସ୍ ଗୋଟାଏ ବହି ଖୋଲି ବସିଥିଲା, କିନ୍ତୁ ପଢୁ ନଥିଲା। ଘରର ଚଟାଣ ଭିତର ଦେଇ ତଳ ମହଲାରୁ ସେ ଗୋଟାଏ ହସ -ଗାଲିଗାଇର ହସ-ଶୁଣିବାକୁ ପାଇଲା। ସେହି ହସ ମଝିରେ କୌଣସି ପୁରୁଷର କଣ୍ଠ ପରି କାହାର କଣ୍ଠ ଶୁଣା ଯାଉଥିଲା। ବୟସ ବଢ଼ିବା ସଂଗେ ସଂଗେ ତା'ର ମାଆର କଣ୍ଠସ୍ୱର ବଡ଼ ଘାଗଡ଼ା ହୋଇ ଯାଇଚି।

କେଁକଟର ଶବ୍ଦ କରି ଉଡ଼ୁଥିବା ଚାତକ ପକ୍ଷୀଙ୍କର ପଲ ଉପରେ ତା'ର ଆଦୌ ଆଖି ନଥିଲା, ଫାନ୍ଦରେ ପଡ଼ିଯାଇଥିବା ପରି ସୂର୍ଯ୍ୟର ଏକ ରଶ୍ମି ଭିତରେ ଭଣଭଣ ହୋଇ ବୁଲୁଥିବା ପଲେ ଛୋଟିଆ ମାଛି ଆଡ଼କୁ ସେ ଅନାଇ ରହିଥିଲା। ସେମାନଙ୍କୁ ଦେଖି ସୂର୍ଯ୍ୟାଲୋକିତ ଗୋଟିଏ ଗୋଟିଏ ଚଞ୍ଚଳ ପ୍ରାଣବିନ୍ଦୁ ପରି ମନେ ହେଉଥିଲା। ଠିକ୍ ଏହିପରି ଆମର ଦୃଶ୍ୟମାନ ଜଗତର ଆବର୍ତ୍ତ ଭିତରେ ଏହିସବୁ ତ୍ରୁବେର୍ନେଟ୍, କାମ୍ବ୍ଲେନେସ୍, ପ୍ଲାସାକ୍, ସାଲୋନ୍ ଓ ମର୍ଗି ପ୍ରଭୃତି ପରିବାରର ଏକ ଅହରହ ଉତ୍ତେଜିତ ପରିକ୍ରମା ଚାଲି ନାହିଁ କି ? ତା'ର ଅନ୍ତରର ଅଭେଦ୍ୟ ଗଭୀର ଭିତରୁ ଏକ ଯନ୍ତ୍ରଣାର ପ୍ରବାହ ମାଡ଼ି ଆସୁଥିବା ଭଳି ସେ ଅନୁଭବ କଲା। ଏକୁଟିଆ ଥିଲେ ହୁଏ ତ ସେ ସେଇଠି ଆଣ୍ଠୁମାଡ଼ି ପଡ଼ି ଯାଇଥାନ୍ତା। କିନ୍ତୁ ଝରକାର ଚୌକାଠ ଉପରେ ରେଖାଙ୍କିତ ହେଲା ପରି ସେହି ନଶ୍ୱର ପ୍ରାଣୀଟି ଠିଆ ହୋଇଥିଲା, ଯିଏ ଭଗବାନଙ୍କୁ ତାହା ପାଖରୁ ବାରିତ କରି ରଖିଥିଲା। "ଗିଲେସ୍ !" -ସେ ଡ଼ାକିଲା। ଗିଲେସ୍ ବୁଲିପଡ଼ି ଅନାଇଲା। ତା'ର ମୁଖମଣ୍ଡଳ କର୍କଶ ଓ ନିଷ୍ଫଳ ଦେଖାଯାଉଥିଲା।

"ମୋତେ ଖଣ୍ଡେ ସିଗାରେଟ୍ ଦେ" : ମୁଁ ଏଥର ସିଗାରେଟ୍ ଖାଇବା ପୁଣି ଆରମ୍ଭ କରିବି, ଆଉ ଛାଡ଼ିବି ନାହିଁ।

"ପ୍ୟାକେଟ୍‌ଟା ଯାକ ତୋ ପାଖରେ ଥାଉ।" -ଗିଲେସ୍ କହିଲା। ଭବିଷ୍ୟତରେ କେତେବେଳେ କେଉଁଠାରେ ପୁଣି ସାକ୍ଷାତ୍ ହେବ, ସେ କଥା ଠିକ୍ ନକରି ଚାଲିଯିବା ଦୁହିଁଙ୍କର ଜୀବନରେ ଆଜି ପ୍ରଥମଥର ପାଇଁ ଘଟିଲା।

ତଳ ମହଲାକୁ ଯିବା ପାଇଁ ନିକୋଲାସ୍‌ର ସାହସ ହେଲା ନାହିଁ। ତା'ର ଭାରି ଭୟ ହେଉଥାଏ ଯେ ଗିଲେସ୍ ହୁଏତ ତା'ର ମାଆ ଓ ଗାଲିଗାଇ ପାଖକୁ ଧାଇଁଯିବ। ଏପର୍ଯ୍ୟନ୍ତ ତଳ ମହଲାରୁ ସେମାନଙ୍କର ପାଟି ଶୁଭୁଥାଏ। ଚଟାଣ ବାଟ ଦେଇ ସେ ଦୁଇଟି ବିପରୀତ କଣ୍ଠର ପ୍ରତିଧ୍ୱନି ବେଶ୍ ଶୁଣି ପାରୁଥିଲା। ମାଡ଼ାମ୍ ପ୍ଲାସାକ୍ ଆନୁଗତ୍ୟ ସ୍ୱୀକାର କଲା ପରି ସବୁ କଥାରେ ରାଜି ହୋଇ ଯାଉଥିଲେ ଓ ଗାଲିଗାଇ ତାଙ୍କର 'କର୍ତ୍ତବ୍ୟ ପ୍ରଣୋଦିତ' ଓ 'ପରିଦର୍ଶକ'ର ହସ ହସିବାରେ ଲାଗିଥିଲେ। ଘରୋଇ କଥାବାର୍ତ୍ତା ହେଲାବେଳେ ସେ କଦାପି ଏପରି ହସ ହସନ୍ତି ନାହିଁ। ଉପର ମହଲାରେ ଥାଇ ମଧ୍ୟ ନିକୋଲାସ୍ ସବୁ ଜାଣି ପାରୁଥିଲା। ଓଁ, କେତେବେଳେ ହେଲା ସେ ସେଠାକୁ ଗଲାଣି। ଦୁଇ ବିବଦମାନ ପକ୍ଷ ହଠାତ୍ କେଉଁ ନିଷ୍ପତ୍ତିରେ ଆସି ଉପନୀତ ହୋଇଚନ୍ତି ? ସେ କିଏ? - ସେ ପୁଣି ସେହି ପ୍ରଶ୍ନର ଉତ୍ତର ମଧ୍ୟ ଜାଣି ପାରିବ ନାହିଁ, ସବୁଦିନ ତାକୁ ଏ ବିଷୟରେ ଅଜ୍ଞ ରହିବାକୁ ପଡ଼ିବ ! ସବୁବେଳେ ଏକ ଗଭୀର ସ୍ୱପ୍ନ ମଧ୍ୟରେ ଆପଣାକୁ ନିମଜ୍ଜିତ କରି ରଖିବାର ଶିକ୍ଷା ସେ ଆପଣାକୁ ଦେଇ ଆସିଚି। ଏହି ସ୍ୱପ୍ନାଚ୍ଛନ୍ନତାକୁ ସେ ଦିନକୁ ଦିନ ଅଧିକ ଦୁର୍ଭେଦ୍ୟ କରି ଆସିଚି। ନିଜ ପାଇଁ ସେ ଗୋଟିଏ ଗାତ ଖୋଳି ରଖିଚି, କିନ୍ତୁ ସେହି ଗାତ ଭିତରେ ପଶିବା କେବଳ ବୃଥା ହିଁ ହୋଇ ଯାଇଚି। କ୍ରମେ ନିକଟବର୍ତ୍ତୀ ହୋଇ ଆସୁଥିବା କାହାର ପଦଶବ୍ଦ ସେ ଶୁଣିବାକୁ ପାଇଲା।

କବାଟରେ ଖଡ଼ଖଡ଼ ଶବ୍ଦ ହେଲା। ନିକୋଲାସ୍ କ'ଣ କରିବାକୁ ଯାଉଥିଲା। "ମୁଁ ଭିତରକୁ ଯିବାକୁ ଆସି ନାହିଁ" ଗାଲିଗାଇ କହିଲେ - "ମୁଁ କେବଳ ଏତିକି କହିବାକୁ ଆସିଥିଲି ଯେ...."

ସେ କବାଟ ଖୋଲିଦେଲା, କିନ୍ତୁ ଆଗାଥେ ମୁଣ୍ଡ ହଲାଇଲେ।

"ନାଇଁ, ମୁଁ ଭିତରକୁ ଯିବି ନାହିଁ। ମୁଁ କେବଳ କହିବାକୁ ଆସିଥିଲି ଯେ ଆଜି ରାତିରେ ମୋ' ପାଇଁ ଅପେକ୍ଷା କରିବାକୁ ତୁମକୁ ଆଉ କାଷ୍ଟିଲନ୍ ରାସ୍ତାକୁ ଯିବା ଦରକାର ହେବ ନାହିଁ। ଆଜି ମୁଁ ନିଜେ ଏହିଠାକୁ ଆସିବି । ଦୁଇଜଣ ଯାକ ବଗିଚାରେ ବସିବା, ତାହା ଅଧିକ ଆରାମଦାୟକ ହେବ। ତୁମର ମାଆ ମଧ୍ୟ ଏଥିରେ ସମ୍ମତ ହୋଇଚନ୍ତି। "

ଏତକ କହି ସାରିବା ମାତ୍ରକେ ସେ ସିଡ଼ିବାଟ ଦେଇ ଓହ୍ଲାଇ ଯାଉଥିଲେ। ହୁଏତ ନିକୋଲାସ୍‌ର କୌଣସି ପ୍ରଶ୍ନର ଉତ୍ତର ଦେବାକୁ ଚାହୁଁ ନଥିଲେ ବା ହୁଏତ ତାଙ୍କ ମନରେ ଭୟ ଜାତ କଲାଭଳି କୌଣସି ଚାହାଣୀ ସେ ନିକୋଲାସ୍‌ର ମୁହଁ ଉପରେ ଦେଖିବାକୁ ଇଚ୍ଛା କରୁ ନଥିଲେ।

# ତେଏର

ମାଆଙ୍କ ଆଡ଼କୁ ମୁହଁ କରି ସେ ଟେବୁଲ ପାଖରେ ବସିଥିଲା । "ଏତେ ଶୀଘ୍ର ସନ୍ଧ୍ୟା ହୋଇ ଆସିଲାଣି" ସେ କହିଲେ, "ଏଥର ଆଲୁଅ ଲଗାଇବାକୁ ହେବ ।"

ନିକୋଲାସ୍ ମାଆଙ୍କୁ କୌଣସି ପ୍ରଶ୍ନ ପଚାରିଲା ନାହିଁ । ସେ ଭଲ କରି ଜାଣିଥିଲା ଯେ ମାଆ ତା'ର ସମସ୍ତ ପ୍ରଶ୍ନକୁ ଭୁରାଡ଼ି ଦେବେ । ମାଆ କଥା କହି ଚାଲିଥାନ୍ତି, ସେ ଖାଲି ଶୁଣି ଯାଉଥାଏ । ତାଙ୍କ କଥାର ପ୍ରବାହ ଭିତରେ କୌଣସି ସତ୍ୟକୁ ପ୍ରକାଶ କଲାଭଳି କୌଣସି କଥାକୁ ସଙ୍ଗେ ସଙ୍ଗେ ଯାଇ ଧରିବ ବୋଲି ଯେପରି ସେ ସତର୍କ ଓ ପ୍ରସ୍ତୁତ ହୋଇ ରହିଥିଲା ।

"ବିଚାରୀ ମାଡ଼ାମ୍ ଡୁବେର୍ନେଟ୍ ! ତାଙ୍କର ଭାରି ଗର୍ବ ଥିଲା ବୋଲି ଲୋକମାନେ ସବୁବେଳେ କହୁଥିଲେ । ତାଙ୍କ ଘର କେଡ଼େ ପୁରୁଣା ପରିବାରର ଘର, ତାଙ୍କର କେତେ ଜମି -ତେଣୁ ଗର୍ବ ନ କରିବାର କ'ଣ କାରଣ ଅଛି ? ତାଙ୍କର ଜୋତା ପୋଛିବା ଚାକର ହୋଇଥିଲେ ଆମେ ଅଧିକ ନ ହେଲେ ମଧ୍ୟ ଠିକ୍ ସେହିଭଳି ଗର୍ବ କରୁଥାନ୍ତୁ । ସେ ମରିଗଲେ ସମସ୍ତେ କାହିଁକି କ୍ଷତିଗ୍ରସ୍ତ ହେବେ ? ମାଡ଼ାମ୍ ଆଗାଥେ କ'ଣ ତୋତେ କିଛି କହି ନାହାନ୍ତି ? ମାଡ଼ାମ୍‌ଙ୍କ ଦେହରୁ ଏପର୍ଯ୍ୟନ୍ତ ପ୍ରାଣ ଯାଇ ନାହିଁ, ମଣିଷ ମରିବା ପୂର୍ବରୁ ସେମାନଙ୍କୁ ଏହିପରି ମାରିଦେବା ମୋଟେ ଭଲ କଥା ନୁହେଁ । ହୁଏ ତ ଭଗବାନଙ୍କର ଦୟା ହେଲେ ସେ ଆଗ ମୋତେ ନେଇଯିବେ । କିନ୍ତୁ ଡ଼ାକ୍ତର ସାଲୋନ୍ ତ କହୁଚନ୍ତି ଯେ ଆଉ କୌଣସି ଆଶା ନାହିଁ । ମାଡ଼ାମ୍ ଆଗାଥେ ସେ ସବୁ ବିଷୟରେ ଚାରିଆଡ଼େ କହି ବୁଲିବାଟା ପ୍ରକୃତରେ ବଡ଼ ଅସ୍ୱାଭାବିକ କଥା... !

ମାଡ଼ାମ୍ ଡୁବେର୍ନେଟ୍ ତାଙ୍କର ଉଇଲ୍‌ରେ ମାଡ଼ାମ୍ ଆଗାଥେଙ୍କର ନାମ ଉଲ୍ଲେଖ କରିଚନ୍ତି କି ନାହିଁ ନିକୋଲାସ୍ ପଚାରିଲା ।

ବୁଢ଼ୀ କହିଲେ : "ନାଁ - ନାଁ- ସେସବୁ ବିଷୟ ପୁଣି ଯା'ଭିତରକୁ କୋଉଠୁ ଆସିବ ?"

"ମୁଁ କିଛି ବୁଝି ପାରୁ ନାହିଁ, ମାଆ : ତୁମେ ପ୍ରକୃତରେ କ'ଣ କହୁଚ, ମୁଁ ସେ କଥା କିଛି ବୁଝି ପାରୁ ନାହିଁ ।"

"ଏଥିରେ ନ ବୁଝିବାର କ'ଣ ଅଛି ? ଯାହା ଜଣା ପଡୁଚି, ମାଡ଼ାମ୍ ଆଗାଥେ ଭଲ ହୁଅନ୍ତୁ କି ନ ହୁଅନ୍ତୁ, ସେମାନେ କାମ୍‌ବ୍ଲେନେସ୍ ପରିବାରର ସମସ୍ତ ଋଣ ପରିଶୋଧ କରିବାକୁ ନିଷ୍ପତ୍ତି କରିଚନ୍ତି । ବେଲମନ୍ତ୍ ଉପରେ ଆଉ କାହାରି କୌଣସି ଦାବୀ ରହିବ ନାହିଁ । କିନ୍ତୁ ଏସବୁ କେବଳ ଗୋଟିଏ ସର୍ତ୍ତରେ କାର୍ଯ୍ୟକାରୀ ହେବ ଯେ ବୁଢ଼ା ତାଙ୍କର ସମସ୍ତ ସମ୍ପତ୍ତି ଝିଅକୁ ଦାନ କରିଦେବେ ଓ ତାହା ଉପରେ ଆଉ ତାଙ୍କର କୌଣସି ଅଧିକାର ରହିବ ନାହିଁ । ସେ ବିଷୟରେ ତୁ କ'ଣ ମତ ଦେଉଚୁ, ପୁଅ ? କିନ୍ତୁ ବଞ୍ଚନ୍ତୁ କି ମରନ୍ତୁ, ମାଡ଼ାମ୍

ଡୁବେର୍ନେଟ୍‌ଙ୍କଠାରୁ ଆଗାଥେଙ୍କୁ ଏହି ବିରାଟ ସମ୍ପତ୍ତି ପାଇବାକୁ ହେବ, ବୁଢ଼ା ଆରମାଣ୍ଡ୍‌ଙ୍କ ପାଖରୁ କଦାପି ନୁହେଁ।"

"ମୁଁ ତ ସେଥିରେ କୌଣସି ପ୍ରଭେଦ ଦେଖି ପାରୁ ନାହିଁ", କ୍ଳାନ୍ତ ଭାବରେ ନିକୋଲାସ୍ କହିଲା।

"ହୁଁ -ଏତିକି ପ୍ରଭେଦ ଯେ ଏଥିରେ ଆଉ କାହାରି କିଛି କହିବାକୁ ନ ଥିବ। ଏ ବିଷୟରେ କେହି କିଛି ନ କହନ୍ତି, ତୋ' ଦୃଷ୍ଟିରୁ ଏହା ଅତି ଗୁରୁତ୍ୱପୂର୍ଣ୍ଣ। ଲୋକଙ୍କର ତୁଣ୍ଡ ତ ସବୁବେଳେ ଖର। ଏହି ଡ଼ୋର୍ଥେ ସହରରେ ତ ସମସ୍ତେ ଜାଣିଚନ୍ତି ଯେ ସେମାନଙ୍କର ଅଧିକାଂଶ ସମ୍ପତ୍ତି ଜୁଲିଆ ଆଡୁ ଆସିଚି, ଡ଼ୋନ୍‌ଜାକ୍ ପରିବାରରୁ ଆସିଚି...ଦେଖ, ତୁ ପୁଣି ତୋ'ର ସ୍ୱପ୍ନ ଭିତରେ ବୁଡ଼ି ଗଲୁଣି - ମୁଁ ଯାହା କହୁଚି, ସେ କଥାକୁ ମୋଟେ କାନ ଦେଉନାହୁଁ। "

ତା' ନହେଲେ ଆଗାଥେ ଦରିଦ୍ର ନ ଥିଲେ। ନିକୋଲାସ୍‌ର ଏହି ବିଷୟରେ ଏକ ଭ୍ରମ ଧାରଣା ଥିଲା। ଏ ବିଷୟରେ ତ ସେ ତାକୁ ଦିନେହେଲେ ପଦେ କଥା କହି ନାହାନ୍ତି। ତା'ର ବୁଢ଼ୀମାଆକୁ ବିସ୍ମିତ ଓ ପରାସ୍ତ କରିବା ଲାଗି ବୋଧହୁଏ ସେ ଏ କଥାକୁ ଆପଣା ଭିତରେ ଗୋପନ କରି ରଖିଥିଲେ।

କଥାର ଜୁଆର ଉପରେ ମାଡ଼ାମ୍ ପ୍ଲାସାକ୍ ଭାସି ବୁଲୁଥାନ୍ତି।

"ଗତବର୍ଷ କାମ୍‌ବ୍ଲେନେସ୍ ପରିବାରକୁ ଗୋଟାଏ ଢ଼ରସମନ ଭଳି କ'ଣ ଆସିଥିଲା, ବେଲ୍‌ମନ୍ତରେ ଥିବା ତାଙ୍କର ସମସ୍ତ ଜମି ତଦ୍ୱାରା ହାତରୁ ଚାଲି ଯାଇଥାଆନ୍ତା। ସମ୍ପତ୍ତିର ଦେଖା ଚାହାଁ କରିବାକୁ ତ ତାଙ୍କର ଜଣେ କେହି ମଣିଷ ଥିବା ଦରକାର...ବର୍ତ୍ତମାନ ତ ଶସ୍ୟ ଭଣ୍ଡାରରେ ଦୁଇବର୍ଷର ଦ୍ରାକ୍ଷା ସାଇତା ହୋଇ ରହିଚି -ଦ୍ରାକ୍ଷା ଫସଲର ଚାଷ ଚାଲୁ ରଖିବାକୁ ତାହା ଯଥେଷ୍ଟ ହେବ। ଗାଆଁରେ ତ ବେଶ୍ ଶସ୍ତାରେ ଚଳିହେବ। ସେମାନଙ୍କର ପ୍ରାୟ ଶହେ ହେକ୍ଟର ଜମି ଅଛି, ପୁଣି ଜଣେ ମାଲିକର ନାମରେ। ତେଣୁ ମାଡ଼ାମ୍ ଆଗାଥେ ମୋ' ବିଷୟରେ ଚିନ୍ତା କରୁଚନ୍ତି...କିନ୍ତୁ ତୁ ପଚାରିବୁ କି ଅଧିକାର ବଳରେ ମୁଁ ସେଠାକୁ ଯିବି ଓ ସେହି ଜମିକୁ ଦଖଲ କରିବି -ହଁ, ଅନେକ ପରିମାଣରେ ଏହା ତୋ ଉପରେ ନିର୍ଭର କରୁଚି। ..."

ସେ ଉଠିଯାଇ ପୁଅକୁ ଚୁମ୍ବନ ଦେଲେ।

"ମୋ' ସୁନାପୁଅ, ତୁ ସବୁ ଜାଣିଚୁ!" -ପୁଅର ମନକୁ ଗୋଟା ସୁଦ୍ଧା ଚିହ୍ନିଥିଲା ପରି ସେ କହିଲେ, "ଲୋକମାନେ ପରା କହନ୍ତି ଯେ ଭଲ ଲୋକମାନଙ୍କର ଭଣ୍ଡାରକୁ ଭଗବାନ କଦାପି ଶୂନ୍ୟ ରଖନ୍ତି ନାହିଁ। "

ଗୀର୍ଜାରୁ ଘଣ୍ଟା ବାଜୁଥାଏ। ଆଜି ସେପେଟମ୍ବର ମାସର ପ୍ରଥମ ଶୁକ୍ରବାର। ଅର୍ଦ୍ଧମୃତ

ଏହି କ୍ଷୁଦ୍ର ସହରଟି ଉପରେ ନିଦ୍ରା ତା'ର ପକ୍ଷ ଆବୃତ କରି ଆଣିବାକୁ ଆଉ ଅଧିକ ବିଳମ୍ବ ହେବନାହିଁ। ଶତାବ୍ଦୀ ଶତାବ୍ଦୀ ଧରି ପୂର୍ବେ ଏହି ସହରରେ ଜଣେ ବିଶପ୍ ରହୁଥିଲେ, ଏହା ଏକ ସମୃଦ୍ଧିଶାଳୀ ସହର ଥିଲା ଏବଂ ଗୁଏନେ ଯୁଦ୍ଧ ସମୟରେ ଅନେକ ଲଢ଼େଇ ଏହିଠାରେ ହିଁ ହୋଇଥିଲା। ଲଢ଼େଇ ହୋଇଥିବା ଜାଗାରେ ନାଁଆଗୁଡ଼ାକ ମଧ୍ୟ ଆଉ କାହାରି ମନେ ନାହିଁ।

ମାଆ କହିଲେ :

"ପୁଅ, ମୋ' ସାଙ୍ଗରେ ଆ। ତୋତେ ମୁଁ ଗୋଟାଏ ଜିନିଷ ଦେବାକୁ ରଖିଚି।"

ମାଆଙ୍କ ସାଙ୍ଗରେ ନିକୋଲାସ୍ ରୋଷେଇ ଘରକୁ ଗଲା। ଆପ୍ରନ୍ ପକେଟରୁ ନେଥାଏ ଚାବି ବାହାର କରି ସେ ଥାକ ଆଲମିରା ଫିଟାଇଲେ।

"ଟିକିଏ ଆଲୁଅଟା ଦେଖା" -ସେ କହିଲେ : "ଓଃ, ସତେ ମୁଁ କେଡ଼େ ଗେଡ଼ା। ସେଇ ଟୁଲ୍‌ଟାକୁ ଟିକିଏ ଦିଅନ୍ତୁ..କେବଳ କେତେଖଣ୍ଡ ପାମ୍ପରା ହାଡ଼ ଛଡ଼ା ମୋ' ଦେହରେ ଆଉ କ'ଣ ଅଛି ?"

ଭିତରକୁ ହାତ ମାରି ସେ ଭଙ୍ଗା ହୋଇ ରହିଥିବା ଟେବୁଲ୍ କନାର ଗଦା ତଳୁ କାଗଜ ପଟାର ଗୋଟିଏ ବାକ୍ସ ବାହାର କଲେ।

.... "ଦେଖିଲୁ, ଏ କ'ଣ!"

ଆଗରୁ ମଧ୍ୟ ସେ ତାକୁ ଏହି ମୁଦିଟି ଦେଖାଇ ଥିଲେ -ସେଥିରେ ଅତି ମୂଲ୍ୟବାନ୍ ଚକ୍‌ଚକ୍ ପଥରମାନ ବସିଚି। ଅନ୍ତତଃ ସେଗୁଡ଼ିକ ଅତି ମୂଲ୍ୟବାନ୍ ପଥର ବୋଲି ତାକୁ ସେ ସବୁକାଳେ କହି ଆସିଚନ୍ତି। ତାଙ୍କ ବାପାଙ୍କର ଭଉଣୀ ପାଖରେ ପ୍ରଥମେ ଏହି ମୁଦିଟି ଥିଲା। ସେ ଆର୍‌ବିବାଟ୍ ପରିବାରରେ ରୋଷେଇ କାମ କରୁଥିଲେ। ଏଠି କାହିଁକି ସେ ଏହି ମୁଦିଟିକୁ ଛାଡ଼ି ଯାଇଚନ୍ତି ? "ମୁଁ ସେକଥା ତୋତେ ଠିକ୍ କରି କହି ପାରିବି ନାହିଁ, ପୁଅ।"

ସେ ରୋଷେଇ ଘର ମଝିରେ ଠିଆହୋଇ ରହିଲା। ନୂଆ ପିନ୍-କଣ୍ଟା ପରି ଘରଟି ସଫା ଚକ୍‌ଚକ୍ ଦିଶୁଥିଲା। ପ୍ରତ୍ୟେକ ଜିନିଷ ଠିକ୍ ଆପଣା ଆପଣା ଜାଗାରେ ସଜା ହୋଇ ରହିଥିଲା। ସେ ଏ ପର୍ଯ୍ୟନ୍ତ ଦୀପଟିକୁ ହାତରେ ଧରିଥାଏ। ତମ୍ବା ବାସନ ଗୁଡ଼ିକ ଉପରେ ତା'ର ଆଲୁଅ ପଡ଼ି ବର୍ତ୍ତୁଳାକାର ରକ୍ତବର୍ଣ୍ଣ ଚିବୁକ୍ ପରି ଚକ୍‌ଚକ୍ ହେଉଥାଏ।

"ଏ ମୁଦିଟି ନେଇ ମୁଁ କ'ଣ କରିବି ବୋଲି ତୁ କହୁଚୁ ?"

"ରହ, ଧୈର୍ଯ୍ୟ ଧର -ସେକଥା ବର୍ତ୍ତମାନ ତୋତେ କିଏ ଭାବିବାକୁ କହୁଚି ? ଆଜି ରାତିରେ ବଗିଚାରେ ତା'ର ଆଙ୍ଗୁଠିରେ ତୁ ଏହି ମୁଦିଟି ପିନ୍ଧାଇଦେବୁ..ଦେଖ, ହୁସିଆର, ଯେପରି ହଜାଇ ନ ଦେଉ। ଏହି ମୁଦିଟି ପାଇଁ ତୋ'ର ବୁଢ଼ୀ ମାଆଟିକୁ କ'ଣ ତୁ ଧନ୍ୟବାଦ ଦେବୁ ନାହିଁ ?"

ନା -ଧନ୍ୟବାଦ୍ ଦେଇ ସେ ଗୋଟାଏ ଶବ୍ଦ ମଧ୍ୟ ଉଚ୍ଚାରଣ କଲା ନାହିଁ। ତଥାପି ସେ ମୁଦିଟାକୁ ନେଲା ଓ ନିଜର ହାତମୁଠା ଭିତରେ ଯାବୁଡ଼ି କରି ଧରିଲା।

## ଚଉଦ

"ତୁମେ ଗରିବ ବୋଲି ମୋତେ କାହିଁକି କହିଥିଲ ?"

"କିନ୍ତୁ ମୁଁ ପ୍ରକୃତରେ ଗରିବ, ନିକୋଲାସ୍। ପାରିସ୍‌ରେ ରହିବାବେଳେ ବେଲ୍‌ମନ୍ତ୍‌ରୁ ଆମକୁ ପଇସାଟିଏ ମଧ୍ୟ ମିଳିବ ନାହିଁ। ଦ୍ରାକ୍ଷାଲତା ମାଡ଼ି ସବୁ ଫସଲକୁ ନଷ୍ଟ କରିଦେବ। ସେଠାରେ ରହିଥିଲେ ହୁଏତ ଆମେ ଦେଖାଚାହାଁ କରିଥାନ୍ତେ। କିନ୍ତୁ ପାରିସ୍‌ରେ ରହିଲେ... ?"

ପ୍ରାୟ ଘଣ୍ଟାଏ କାଳ ସେମାନେ ଲାଇମ୍ ଗଛଟିର ତଳେ ବସିଥିଲେ। ଗାଲିଗାଇ ସମସ୍ତ ସମୟ ଏହି କଥା ବୁଝାଇବାକୁ ଚେଷ୍ଟା କରୁଥିଲେ ଯେ ନିକୋଲାସ୍‌କୁ ଠକିବା ତାଙ୍କର ଆଦୌ ଉଦ୍ଦେଶ୍ୟ ନଥିଲା। ଜାକେଟ୍‌ର ପକେଟ୍ ଭିତରେ ଗୋଟିଏ ହାତ ପୂରାଇ ନିକୋଲାସ୍ ମୁଦିଟିକୁ ଆଙ୍ଗୁଠିରେ ଏପାଖ ସେପାଖ କରୁଥିଲା। ତା' ପାଖରେ ମୁଦିଟା ଅଛି ବୋଲି ଗାଲିଗାଇଙ୍କୁ ଜଣାଥିଲା।

"ତୁମର ମାଆ ମଝିରେ ମଝିରେ ଆମ ପାଇଁ ଖାଦ୍ୟ-ଜନିଷ ନ ପଠାଇବେ ବୋଲି ମୁଁ କହୁ ନାହିଁ। ସେମାନେ ଯେତେବେଳେ ଘୁଷୁରି ମାରିବେ, ସେତେବେଳେ ମଧ୍ୟ ଆମ ପାଇଁ କିଛି ମାଂସ ପଠାଇ ଦେବେ, ବେଳେ ବେଳେ କୁକୁଡ଼ା ମଧ୍ୟ ପଠାଇବେ। "

"କିନ୍ତୁ ମୁଁ ତଥାପି ଗରମ ନୁଡ୍‌ଲ୍ ଓ ସ୍ପିରିଟ ଲ୍ୟାମ୍ପର ବ୍ୟବହାର ଚାଲୁ ରଖିବି।"

"ମୁଁ ମଧ୍ୟ ପ୍ରିୟତମ।" ତାଙ୍କର କଣ୍ଠ କ୍ରମେ ଧୀର ହୋଇ ଆସିଲା। କାରଣ 'ପ୍ରିୟତମ' ଡ଼ାକ ଶୁଣିଲେ ନିକୋଲାସ୍ କିପରି ବଡ଼ ଅଶ୍ୱସ୍ତି ବୋଧ କରୁଥିଲା, ତାହା ସେ ଭଲକରି ଜାଣିଥିଲେ। ତା'ର କଥାରେ ଥିବା ବ୍ୟଙ୍ଗାଭାସଟି ସେ ଆଦୌ ବୁଝି ପାରି ନଥିଲେ।

ସେହି ଝାପ୍‌ସା ଅନ୍ଧାରରେ ମଧ୍ୟ ସେ ମାଆର ବଗିଚାଟି ବଡ଼ ଅସୁନ୍ଦର ହୋଇ ପଡ଼ିଥିବାର ଦେଖି ପାରିଲା। ବଗିଚାର ସେ ପାଖଟି କ'ଣ ଟିକିଏ ଅଧିକ ସୁନ୍ଦର ହୋଇ ପାରି ନଥାନ୍ତା। ତୃଣଶଯ୍ୟାଟି ପ୍ରାୟ ଧୂଳି ହୋଇ ପଡ଼ିଥିଲା, କୁକୁଡ଼ାମାନେ ସେଥିରୁ ଆଉ ଗୋଟିଏ ହେଲେ ଘାସ ବାକୀ ରଖି ନଥିଲେ। ଏ ଜୁନ୍ ମାସରେ ମଧ୍ୟ, ଲାଇମ୍ ଗଛଟା ଫୁଲରେ ଭର୍ତ୍ତି ହୋଇ ରହିଥିବାବେଳେ - ମୂଷା ରହିବା ପାଇଁ ତିଆରି ହୋଇଥିବା ଅଡ଼ାଟା ଚତୁର୍ଦ୍ଦିଗ କେବଳ ଦୁର୍ଗନ୍ଧରେ ପୂର୍ଣ୍ଣ କରି ରଖିଥିଲା। ଏସବୁ ଦେଖି ନିକୋଲାସ୍‌କୁ ଭାରି ଘୃଣା ଲାଗୁଥାଏ। ଗାଲିଗାଇର ମନ ଭିତରେ ଥିବା ପୀଡ଼ିତ ଭାବନାଗୁଡ଼ିକ ନିକୋଲାସ୍ ଭଲ କରି

ଜାଣିଥାଏ। ଯେ କୌଣସି ମୁହୂର୍ତ୍ତରେ ତା'ର ମୁହଁରୁ ଏପରି କଥା ବାହାରିବ, ଯାହା କି ତାଙ୍କର ସୁଖର ପାତ୍ରକୁ ଉଛୁଳାଇ ପକାଇବ ବା ତାଙ୍କୁ କେଉଁ ଗର୍ତ୍ତ ଭିତରେ ନେଇ ଫୋପାଡ଼ି ଦେବ। ..ପ୍ରେମର ଉପବାସରେ ମରୁଥିବା ଗୋଟାଏ ଜୀଅ ଭିତରେ ଜୀବନ ଭରିଦେବା ..ଗିଲେସ୍‌ର ଗୋପନ ସାହାଯ୍ୟକାରୀ ହିସାବରେ ନିଜର କର୍ତ୍ତବ୍ୟ କରିବାର ଇଚ୍ଛା ଅପେକ୍ଷା ଏହି ପ୍ରଲୋଭନଟି ଆଜି ସନ୍ଧ୍ୟାରେ ନିକୋଲାସ୍ ଉପରେ ଅଧିକ କ୍ଷମତା ବିସ୍ତାର କରି ରହିଥିଲା। ଯେଉଁମାନେ ପ୍ରୀତି ପାଆନ୍ତି, ସେହିମାନେ ହାସଲ କରିଥିବା କୁହୁକକୁ ବ୍ୟବହାର କରିବାର ଶକ୍ତି ନିକୋଲାସ୍‌ର ଥିଲା। ସେ ପଦେ କଥା କହିବା ମାତ୍ରକେ ବର୍ତ୍ତମାନ ଏହି ଅନ୍ଧାର ଭିତରେ ତା' ଦୃଷ୍ଟି ପଥରୁ ଲୁକ୍‌କାୟିତ ହୋଇ ରହିଥିବା କୁସିତ ମୁଖଟି ଭିତରେ ଉଷ୍ଣ ରକ୍ତର ସଞ୍ଚାଳନ ଆରମ୍ଭ ହୋଇଯିବ। ସେ ଏ ପର୍ଯ୍ୟନ୍ତ ସେହି ମୁଖକୁ ସ୍ପର୍ଶ କରି ନଥିଲା, ତଥାପି ଜାଣିଥିଲା ଯେ ସେହି ମୁଖ ବର୍ତ୍ତମାନ ଆଶ୍ରୁରେ ସିକ୍ତ ହୋଇ ରହିଚି। ଅନ୍ୟମାନଙ୍କର କାନ୍ଦ ଦେଖି ନିକୋଲାସ୍ ଆଦୌ ହୃଦୟ ଧରି ରହି ପାରୁ ନଥିଲା।

"ଥାଉ, ଆଉ କାନ୍ଦନା," ସେ କହିଲା : "ମୋତେ ତୁମର ହାତଟା ଦିଅ।"

ନିକୋଲାସ୍ ତାଙ୍କର ହାତର ମଝି ଆଙ୍ଗୁଠିରେ ମୁଦିଟା ଗଳାଇ ଦେଉ ଥିବାର ସେ ବେଶ୍ ଅନୁଭବ କରି ପାରିଲେ। ଏତେବେଳ ଯାଏ ତା'ର ପାପୁଲି ଭିତରେ ରହିଥିବାରୁ ମୁଦିଟା'ବେଶ୍ ଗରମ ଥିଲା। ମାଡ଼ାମ୍ ଆଗାଥେଙ୍କର ଦେହଭରି ସୁଖ ଓ ବାସନାର ଏକ ତରଙ୍ଗ ଉଦ୍ଵେଳିତ ହେଲା, କିନ୍ତୁ ସେ ଜାଣିଥିଲେ ଯେ ଯଦି ସେ ଏହି ବାସନା ପାଖରେ ଆପଣାକୁ ସମର୍ପଣ କରିଦେବେ ଓ ନିକୋଲାସ୍‌ର ବାହୁ ଭିରତକୁ ଢ଼ଳି ପଡ଼ିବେ, ତେବେ ନିକୋଲାସ୍ ତାଙ୍କୁ ସଂଗେ ସଂଗେ ଅପସରାଇ ଦେବ। ତେଣୁ ସେ ବାଧ୍ୟ ହୋଇ ଅତି ଦୃଢ଼ ଭାବରେ ବନ୍ୟାପ୍ଲାବନର ତୋରଣମାନ ବନ୍ଦ କରି ରଖିଲେ – ଆପଣା ଭିତରୁ ଉଠି ଆସୁଥିବା ପାଗଳ ଅଧୀରତାକୁ ସେ ପଛକୁ ଅଟକାଇ ରଖିଲେ।

ଉଠିଯାଇ ସେ ଆପଣାର ଅଧର ଯୁଗଳକୁ ନିକୋଲାସ୍ କପୋଳ ଉପରେ ଲଗାଇ ରଖିଲେ।

ସେ କହିଲା :

"ମୁଁ ତୁମକୁ ଖୁବ୍ ବେଶୀ କିଛି ଦେଇ ପାରିବି ନାହିଁ। ତେଣୁ ପ୍ରଥମରୁ ହିଁ ସେଥିଲାଗି ତୁମଠାରେ କ୍ଷମା ମାଗି ନେଉଚି। କେତେବେଳେ ହେଲେ ତୁମେ ମୋ'ଠାରୁ ଅଧିକ ଆଶା କରିବ ନାହିଁ।"

"ତୁମରି ପାଖେ ପାଖେ, ତୁମରି ଛାୟା ଭିତରେ ରହିବି, ଏତିକି ସୁଖ ବ୍ୟତୀତ ଆଉ ମୁଁ କିଛି ଚାହେଁ ନାହିଁ। ମୁଁ ପରା ତୁମଠାରୁ ବୟସରେ ବଡ଼। ଯଦି ତୁମେ ତାହାହିଁ ଇଛା

କରୁଥାଅ, ତେବେ ମୁଁ ତୁମର ବଡ଼ ଭଉଣୀ ହୋଇ ରହିବି।"

"ତୁମକୁ ଆହୁରି ଧୈର୍ଯ୍ୟ ଅବଲମ୍ୱନ କରି ରହିବାକୁ ହେବ," ସେ କହିଲା, "ଲୋକମାନଙ୍କ ସହିତ ଚଳି ଓ ରହି ଶିଖିବାକୁ ମୋତେ ଅନେକ ସମୟ ଲାଗେ। ବେଳେ ବେଳେ ମୁଁ ସେ କଥା ଆଦୌ କରିପାରେ ନାହିଁ। ... "ମୋ' ଭିତରେ ସେହିପରି ଗୋଟାଏ କିଛି ଉପାଦାନ ରହିଚି.....ମୁଁ ତାହାକୁ ବୁଝାଇ କହି ପାରିବି ନାହିଁ...ଆମର ମୃତ୍ୟୁତ୍‌ଥିତ୍ ଭଗବାନଙ୍କର ବାକ୍ୟଟି ତୁମର ମନେ ଅଛି..."ମୋତେ ସ୍ପର୍ଶ କର ନାହିଁ..ମୋ' କଥାର ଅର୍ଥ ବୁଝି ପାରୁଚ ?"

ନିଶ୍ଚୟ ସେ ବୁଝି ପାରିଲେ। ଖୁବ୍ ନମ୍ର ଭାବରେ କହିବାକୁ ଆରମ୍ଭ କଲେ, "ତୁମର ଯେତେ ଦିନ ଇଚ୍ଛା ସେତେଦିନ ମୁଁ ତୁମର ଭଉଣୀ ହୋଇ ରହିବି। ଅପେକ୍ଷା କରିବା ପାଇଁ ମୁଁ ଆଗରୁ ତାଲିମ୍ ପାଇଚି। ପୃଥିବୀରେ ଏପରି ଅନେକ ନାରୀ ଅଛନ୍ତି, ଯେଉଁମାନେ ତତ୍‌କ୍ଷଣାତ୍ ସବୁ ପାଇଯାନ୍ତି। କେବଳ ସେମାନେ ଯାହା, ଠିକ୍ ତାହାହିଁ ହୋଇ ପାରିଲେ ହେଲା। କିନ୍ତୁ ମୁଁ ଭଲ କରି ଜାଣେ ଯେ କେବଳ ଦୀର୍ଘ ଅଧ୍ୟବସାୟ ଦ୍ୱାରା ହିଁ ମୁଁ ତୁମର ଜୀବନରେ ମୋ' ଲାଗି ଟିକିଏ ସ୍ଥାନ ଖୋଜି ପାଇବାରେ ସଫଳ ହୋଇ ପାରିବି। କିନ୍ତୁ ଯେତେ ବିଳମ୍ୱରେ ହେଉ ପଛକେ, ଦିନେ ମୋତେ ତାହା ଉପଲବ୍‌ଧି କରିବାକୁ ହେବ, ମୋତେ ସୁଖ ପାଇବାକୁ ହିଁ ହେବ। "

"ସୁଖ" -ତମସାଚ୍ଛନ୍ନ ମୁଦ୍ରାରେ ନିକୋଲାସ୍ କହିଲା - "ସୁଖ" -ତୁମର ଅଭିଳାଷ ଖୁବ୍ ଉଚ୍ଚ, ଆଗାଥେ..ସଂସାରରେ କେଉଁ ମଣିଷ ସୁଖ ପାଇଚି ?"

ଆପଣାର ମୁହଁଟିକୁ ସେ ତା'ର କାନ୍ଧ ପାଖକୁ ଚାପି ଧରିଲେ, ସେ ଆପଣାର କାନ୍ଧକୁ ଚାପି ରଖିବା ଲାଗି ଚେଷ୍ଟା କରୁଥିଲେ। ନିକୋଲାସ୍ ଆପଣାର ଅଧରକୁ ନେଇ ଚାପି ରଖିଲା -କିନ୍ତୁ ଏଥରକ ତାଙ୍କର ଆଖି ଉପରେ ନୁହେଁ, କିନ୍ତୁ ତାଙ୍କର ବୈଚିତ୍ର୍ୟହୀନ ପାତଳା ବାଳ କେରାକ ଉପରେ — ଏବଂ ତାଙ୍କୁ ଆପଣା ପାଖକୁ ଟିକିଏ ଟାଣି ଆଣିଲା।

"ତୁମେ ପ୍ରକୃତରେ କେଡ଼େ ଭଲ !" -ସେ ଦୀର୍ଘ ନିଶ୍ୱାସ ପକାଇଲେ। ହଁ, ତାଙ୍କର ବନ୍ଧନ ମୁକ୍ତି ପାଇଁ, ସେ ଅବଶ୍ୟ ଭଲ ଥିଲା।

# ପନ୍ଦର

ତହିଁ ଆରଦିନ ସେ ଆସି ବୋର୍ଦୋରେ ଡ୍ରୁବେର୍ନେଟ୍ ପରିବାରରେ ଯୋଗ ଦେଲେ। ଗିଲେସ୍ ମଧ୍ୟ ସେହିଠାକୁ ଛୁଟି ଯାଇଥିଲା - "ବାଲୁଜ୍‌ରେ ଶିକାର-ସମାରମ୍ଭର ଉଦ୍‌ଘାଟନ ଉତ୍ସବରେ ଯୋଗ ଦେବା ପାଇଁ - "ସେ ନିକୋଲାସ୍‌କୁ କହିଯାଇଥିଲା, କିନ୍ତୁ ସେ ମିଛ କହିଲା ଏବଂ ଜାଣିଥିଲା ଯେ ଏପରି କହି ନିକୋଲାସ୍‌କୁ ସେ ଠକି ପାରିଲା ନାହିଁ। ବୋର୍ଦୋ ସହରରେ କୌଣସି ହୋଟେଲ୍‌ରେ ସେ ନିଜ ପାଇଁ ଗୋଟିଏ ସ୍ଥାନ ଠିକ୍ କରିବାକୁ ଯାଉଥିଲା। ଡ଼ାକ୍ତରଖାନାରେ ରୋଗୀ ପାଖରେ ମେରୀ କିପରି ପ୍ରତିଦିନ ସମସ୍ତ ସମୟ ବନ୍ଦୀଘରେ ରହିବା ପରି ରହିଥିବେ ? ଗାଲିଗାଇଙ୍କର ପ୍ରଥମ ଚିଠି ତା'ର ବନ୍ଧୁର ସନ୍ଦେହକୁ ଦୃଢ଼ୀଭୂତ କରିଦେଲା। ଝିଅଟି ଏବେ ଘଣ୍ଟା ଘଣ୍ଟା ଧରି ବାହାରେ ରହିବା ଆରମ୍ଭ କରିଦେଇଚି।

ଜୁଲିଆ ଡ୍ରୁବେର୍ନେଟ ଆଉ ଆରୋଗ୍ୟ ଲାଭ କରିବେ ବୋଲି କୌଣସି ଆଶା ନଥିଲା। ତାଙ୍କୁ ନିଜ ଘରକୁ ଫେରାଇ ଆଣିବାର ଆଉ ପ୍ରଶ୍ନ ହିଁ ଉଠୁନଥିଲା। କିନ୍ତୁ ଶେଷ ସମୟ ଆସି ପହଞ୍ଚିବାକୁ ହୁଏତ ଆହୁରି ଅନେକ ଦିନ ବାକୀ ଅଛି। ଆଗାଥେ ତ ମୁମୂର୍ଷୁ ଗୃହସ୍ୱାମିନୀଙ୍କୁ ଦଣ୍ଡେ ହେଲେ ଛାଡ଼ି ଯାଇପାରିବେ ନାହିଁ। ନିକୋଲାସ୍ ପାଖକୁ ସେ ଯେତେ ଚିଠି ଲେଖି ପଠାଉଥିଲେ, ସେ ସମସ୍ତଙ୍କୁ ପ୍ରେମାତୁରା ଧୈର୍ଯ୍ୟହୀନ ଚିତ୍କାର, - ପ୍ରାୟ ହତାଶାର ଚିତ୍କାର ବୋଲି କହିବାକୁ ହେବ।

ଏହି ହତାଶାପୂର୍ଣ୍ଣ ପତ୍ରଗୁଡ଼ିକରୁ ନିକୋଲାସ୍ ଏହି ଆଶ୍ୱାସନା ପାଇଲା ଯେ ଛୁଟୀ ଶେଷ ହୋଇଯିବା ପର୍ଯ୍ୟନ୍ତ ଆଗାଥେ ଆଉ ଡ଼ୋର୍ଥେକୁ ଫେରିଆସି ପାରିବେ ନାହିଁ। ମୃତ୍ୟୁ ଯେ ଜୁଲିଆ ଡ୍ରୁବେର୍ନେଟଙ୍କୁ ନିଶ୍ୱାସ ମାରିବାକୁ ସମୟ ଦେବା ଉଦ୍ଦେଶ୍ୟରେ ଆସିବାକୁ ବିଳମ୍ବ କରୁଥିଲା, ଏଥିଲାଗି ବୋଧହୁଏ ନିକୋଲାସ୍‌ଠାରୁ ଅନ୍ୟ କେହି ଅଧିକ ଆତୁରତାର ସହିତ ମୃତ୍ୟୁକୁ ଧନ୍ୟବାଦ ଦେଇ ପାରିନଥାନ୍ତେ। ଜୁଲିଆ ଡ୍ରୁପେର୍ନେଟ୍ ଅଳ୍ପ ଅଳ୍ପ କରି ମରୁଚନ୍ତି; କେବେ ଯେ ତାଙ୍କ ଜୀବନର ସମାପ୍ତି ହେବ, ସେ କଥା କେହି କହି ପାରିବ ନାହିଁ। -ଏହା ଫଳରେ ପାରିସ୍ ଯିବା ପୂର୍ବରୁ ନିକୋଲାସ୍‌କୁ ଆଉ ଗାଲିଗାଇ ସହିତ ସାକ୍ଷାତ୍ କରିବାକୁ ପଡ଼ିବ ନାହିଁ। ବାଗ୍‌ଦାନ ବିଷୟରେ ତାଙ୍କୁ ସେ ଯେଉଁ ଅନିଶ୍ଚିତ ଜବାବ ଦେଇଥିଲା, ତା'ର ପରବର୍ତ୍ତୀ କୌଣସି କଥା ବିଷୟରେ ଚିନ୍ତା କରିବାଲାଗି ତାହାର କୌଣସି ଆଗ୍ରହ ନଥିଲା। ଗାଲିଗାଇ ପାଖରୁ ତା' ନାମରେ ସବୁଦିନେ ଯେଉଁ ଚିଠି ଆସି ପହଞ୍ଚିବ, ତାହାକୁ ମଧ୍ୟ ସେ ନଖୋଲି ସେହିପରି ପକାଇ ରଖନ୍ତା, କିନ୍ତୁ ଆପଣାର ଆଶାକୁ ଆହୁରି ଦୃଢ଼ କରିବାକୁ ଚିଠିଗୁଡ଼ାକ ତାକୁ ଦେଖିବାକୁ ହିଁ ହେବ। "କୌଣସି ପରିବର୍ତ୍ତନ ହୋଇନାହିଁ।" -ବାସ୍, ତେବେ ସେ ଏଥର ଆଶ୍ୱସ୍ତ ହୋଇ ରହିପାରେ। କ୍ୟାଲେଣ୍ଡର୍ ଦେଖି ସେ ଦିନ ଗଣିବାରେ ଲାଗିଥାଏ।

ଯିବାକୁ ଆଉ କୋଡ଼ିଏ ଦିନ ଅଛି, -ଅଠରଦିନ, - ଆଉ ଅଳ୍ପ କେଇଟା ଦିନ ଗଲେ ନୂଆ ଟର୍ମ ଆରମ୍ଭ ହୋଇଯିବ।

କିନ୍ତୁ ଏଣେ ତା'ର ମାଆର ମନ ଭିତରେ ଗାଲିଗାଇ ଯେଉଁ ମଞ୍ଜି ବୁଣିଦେଇ ଯାଇଚନ୍ତି, ସେଥିରୁ କିପରି ଅଙ୍କୁରୋଦ୍‌ଗମ୍ ହେବାକୁ ଆରମ୍ଭ କଲାଣି, ସେକଥା ନିକୋଲାସ୍ ତା'ର ଆଖି ଆଗରେ ବେଶ୍ ଦେଖି ପାରୁଥିଲା। ବେଲ୍‌ମନ୍ତ ! ପ୍ରକୃତରେ ସେ ବେଲ୍‌ମନ୍ତର ମାଲିକାଣୀ ହେବାକୁ ଯାଉଚନ୍ତି ! -କେତେ ମଣିଷ ଆଉ କେତେ ପଶୁଙ୍କ ଉପରେ ଅଧିକାରିଣୀ ହେବାକୁ ଯାଉଚନ୍ତି। ଅବଶ୍ୟ ଖାଇଲାବେଳେ ତାଙ୍କର ପରିଚର୍ଯ୍ୟା କରିବା ଲାଗି ପରିଚାରିକା ରହନ୍ତୁ, ସେ କଦାପି ସେ କଥା ଉପରେ ଜିଦ୍ ଧରି ବସିବେ ନାହିଁ। ଅବଶ୍ୟ ଜଣେ ବିରାଟ ସମ୍ଭ୍ରାନ୍ତ ମହିଳା ହେବାକୁ ସେ ଇଚ୍ଛା କରିବେ ନାହିଁ। ତାଙ୍କର ସମ୍ଭ୍ରାନ୍ତ ହେବାର ବୟସ ଚାଲି ଯାଇଥିଲା। କିନ୍ତୁ ବୈଠକ ଘରେ ବସି ସମ୍ପତ୍ତି ବାଡ଼ିର ତତ୍ତ୍ୱାବଧାନ କରିବା ଅପେକ୍ଷା ରୋଷେଇ ଘରେ ବସି ତତ୍ତ୍ୱାବଧାନ କରିବା ବରଂ ଯଥେଷ୍ଟ ଭଲ। ଭୂସମ୍ପତ୍ତିଟା କେଉଁଠି କିପରି ଅବସ୍ଥାରେ ଅଛି, ତାହା ସେ ନକ୍‌ସାରୁ ଦେଖିନେଇ ସାରିଲେଣି। ଅସୁସ୍ଥ ହେବା ପରେ ବୁଢ଼ା କାମ୍‌ବ୍ଲୋନେସ୍ ଆଉ କାହାରି ସହିତ ଦେଖା କରି ନାହାନ୍ତି। ସେ ତାଙ୍କର କନ୍ୟା ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ରହିଥିଲେ, ପୁଣି "ତାଙ୍କର ଝିଅ ଏଣିକି ମୋର ବୋହୂ ହେବ। ଆମରି ଉପରେ ହିଁ ତ ଝିଅଟିର ସମସ୍ତ ସୁଖ ନିର୍ଭର କରିବ। କେବଳ ତୋହରି ସକାଶେ ସିନା ତାକୁ ଯାଉ୍ସାଡ଼ୁ କେତେ କ'ଣ କାମରେ ଗୁରେଇ ହୋଇ ରହିବାକୁ ପଡ଼ିବ, କିନ୍ତୁ ଆମେ ଦୁହେଁ ଏକମତ ହୋଇ ଗଲାପରେ ଆଉ ତାକୁ ସେହି ଦଶା ଭୋଗିବାକୁ ପଡ଼ିବ ନାହିଁ। ପୁଅ, ତୋ ମୋ ଭିତରେ ଆଉ କୌଣସି କଜିଆ ରହିଲେ ଆଦୌ ଚଳିବ ନାହିଁ। ଲୋକମାନେ କହିବେ ଯେ ଭାଗ୍ୟଦେବୀ ଠିକ୍ ଆମ ପକ୍ଷରେ ରହିଛନ୍ତି -କିନ୍ତୁ ଏତେ ବିଳମ୍ବରେ, ଏ ବୁଢ଼ୀ ବୟସରେ ଏଡ଼େବଡ଼ ସୌଭାଗ୍ୟର ଉଦୟ ହେବାଟା ପ୍ରକୃତରେ ଦାରୁଣ ଦୁଃଖର ବିଷୟ ନୁହେଁ କି ? କିନ୍ତୁ ମୋ' ପାଇଁ ଚିନ୍ତା କରିବାର କୌଣସି କାରଣ ନାହିଁ। ମୁଁ ତ ଗୋଟାଏ ଘୋଡ଼ା ପରି ମଜବୁତ୍ ରହିଚି। କିନ୍ତୁ ସେଠାକୁ ଗଲେ ବୟସ ହୋଇଯାଇ ଥିବା ମୋର ଦଦରା ଦେହଟାକୁ ଟିକିଏ ବିଶ୍ରାମ ମିଳିବ। ମୋତେ ପୂର୍ଣ୍ଣ ବିଶ୍ରାମ ମିଳିବାର ସମୟ ବି ତ ନିକଟ ହୋଇ ଆସିଲାଣି।"

ଗାଲିଗାଇର ଚିଠି ଅପେକ୍ଷା ମାଆଠାରୁ ସେ ଶୁଣୁଥିବା ଏହି ଧରଣର କଥାମାନ ଘରଛାଡ଼ି ଶୀଘ୍ର ପାରିସ୍ ପଳାଇବାକୁ ନିକୋଲାସ୍‌ର ମନକୁ ଏକାବେଳେକେ ଉଛନ୍ନ କରି ପକାଇଲା। କୌଣସି ଏକ ବିରାଟ ସହରରେ ଆପଣାକୁ ଗୋପନ କରି ରଖିବାକୁ ଟିକିଏ ସ୍ଥାନ ଖୋଜୁଥିବା ଅପରାଧୀ ପରି ପାରିସ୍ ଯିବାର ଚିନ୍ତା ତା'ର ମନକୁ ସମ୍ପୂର୍ଣ୍ଣ ଅଧିକାର କରି ବସିଲା। ହାତରେ କଲମ ଧରି ବସିବା ମାତ୍ରକେ ବିଚାର-ସଂଯମହୀନା ଗାଲିଗାଇ ସଂଯମର ସମସ୍ତ

ସୀମା ହିଁ ଭୁଲି ଯାଉଥିଲେ। ହୃଦୟର ସମସ୍ତ ସ୍ରୋତମୁଖକୁ ସେ ଉନ୍ମୁକ୍ତ କରି ଦେଉଥିଲେ। ଆଖି ଆଗରେ ଖଣ୍ଡେ ଅଲେଖା କାଗଜ ପାଇବା ମାତ୍ରକେ କ'ଣ ଲେଖିବା ଉଚିତ ବା ଅନୁଚିତ, ସେଥିପ୍ରତି ଦୃଷ୍ଟି ରଖିବାର ସମସ୍ତ ଆବଶ୍ୟକତା ସେ ଭୁଲି ଯାଉଥିଲେ। କ୍ଷୁଧା ଓ ତୃଷାରେ ଦୁର୍ବଳ ହୋଇ ସେ ଉଇଲଟା ହାତରେ ଟେବୁଲ ପାଖରେ ବସୁଥିଲେ। ଦୁଇ ତିନି ଦିନରେ ଥରେ ଲେଖାଏଁ ନିକୋଲାସ୍ ପାଖରୁ ସଂକ୍ଷିପ୍ତ କେତୋଟି ଶବ୍ଦରେ ଚିଠିର ଉତ୍ତର ଆସୁଥିଲା। ଏହି ସଂକ୍ଷିପ୍ତ ଚିଠି ପାଇ ସୁଦ୍ଧା ସେ ଆଦୌ ନିରାଶ ହେଉ ନଥିଲେ। ନିକୋଲାସ୍‌ଠାରୁ କୋମଳ ହୃଦୟତାର କୌଣସି ସଂକେତ ନ ପାଇବାରେ ସେ ଭାରି ଅଭ୍ୟସ୍ତ ହୋଇଯାଇ ଥିଲେ। ପାରିସ୍‌କୁ ଯାଇସାରିବା ପରେ ସପ୍ତାହରେ ଥରେ ଲେଖାଏଁ ଏକାକିନୀର ମନ ବୋଧ କରିବା ପାଇଁ ଏମିତି ମୁଠାଏ ମୁଠାଏ ଖାଦ୍ୟ ସେ ଫୋପାଡ଼ି ଦେଉଥିବେ ଏବଂ ସେଇଥିରେ ସେ ଯଥେଷ୍ଟ ସନ୍ତୋଷ ଲାଭ କରିବେ। ତାଙ୍କ ପାଖରେ କରିଥିବା ଶପଥ ତାକୁ ଅବଶ୍ୟ ପାଳନ କରିବାକୁ ପଡ଼ିବ। ବ୍ୟାପାରଟିରେ ସେ ଅଭ୍ୟସ୍ତ ହୋଇଗଲା ପର୍ଯ୍ୟନ୍ତ ଓ ସେଥିରେ ପ୍ରବେଶ କଲା ପର୍ଯ୍ୟନ୍ତ ଆଗାଥେ ଟିକିଏ ଧୈର୍ଯ୍ୟ ଧରି ଅପେକ୍ଷା କରନ୍ତୁ, ସେ ତାଙ୍କଠାରୁ କେବଳ ଏତିକି ଚାହୁଁଥିଲା। କାରଣ ସେ ଭାବୁଥିଲା ଯେ କାଳକ୍ରମେ ଆଗାଥେ ଅଧିକ ସ୍ଥିର ହୋଇ ଆସିବେ ଏବଂ ଠିକ୍ ତାହାରି ପରି ଏକ ଶାନ୍ତ ଦାମ୍ପତ୍ୟ-ଜୀବନ ବା ସାହଚର୍ଯ୍ୟକୁ ଆଦର କରି ଶିଖିବେ, ଯେପରି କି ଏହି ସାହଚର୍ଯ୍ୟକୁ ଦୁଇଜଣ ସତୀର୍ଥ ଛାତ୍ରଙ୍କ ମଧ୍ୟରେ ଥିବା ବନ୍ଧୁତା ସହିତ ତୁଳନା କରାଯାଇ ପାରିବ। ନିକୋଲାସ୍ ସବୁବେଳେ ଭାବୁଥିଲା ଯେ 'ଏହା'- ଏଥିପାଇଁ ଅନ୍ୟ କୌଣସି ଶବ୍ଦ ସେ ପାଉ ନଥିଲା, -କୌଣସି ଉତ୍ତେଜନା ବା କୌଣସି ଭାବପ୍ରବଣତା ନଥାଇ ସମ୍ପନ୍ନ ହେବା ଉଚିତ। ସେ ଅତି ନିର୍ଲିପ୍ତ ଭାବରେ ଏକଥା ଭାବୁଥିଲା, -ଗୋଟାଏ ଶରୀର ଭିତରୁ ଆଉ ଗୋଟାଏ ଶରୀର ଭିତରେ ରକ୍ତ ନେବାଠାରୁ ଯେପରି ଏହା ଆଦୌ ଅଧିକ ମହତ୍ତ୍ୱ ପୂର୍ଣ୍ଣ ନୁହେଁ। ତଥାପି ଆହୁରି ପନ୍ଦର ଦିନ ବାକୀ, -ଦଶଦିନ-ଏଥର ସେ ତ୍ରାହି ପାଇବ। ଏହି ସମୟରେ ହଠାତ୍ ଚିଠି ଆସି ପହଞ୍ଚିଲା, - ତିନିଧାଡ଼ିର ତରତରିଆ ଲେଖା -। "ଏତେ ଦିନକେ ସବୁ ସମାପ୍ତ ହେଲା। ତାଙ୍କୁ କଫିନ୍ ଭିତରକୁ ନିଆଯିବା ପର୍ଯ୍ୟନ୍ତ ମୋତେ ଏଠାରେ ରହିବାକୁ ପଡ଼ିବ, କିନ୍ତୁ ପଅରଦିନ ମୁଁ ଅବଶ୍ୟ ତୁମର ବାହୁବେଷ୍ଟନ ଭିତରକୁ ଚାଲିଯାଇ ପାରିବି।" ରୋଷେଇ ଘରେ କଫି କପ୍‌ଟାକୁ ଆଗରେ ରଖି ସେ ବସିଥିଲା। ମାଆ ଚିଠିଟାକୁ ତା'ର ଆଙ୍ଗୁଠି ଭିତରୁ ଛଡ଼ାଇ ନେଇଗଲେ। "ଯାହା ହେଉ, ଏତେଦିନକେ ସବୁ ଠିକ୍ ହୋଇଗଲା। ଏକଥା ଦିନେନା ଦିନେ ଅବଶ୍ୟ ଘଟିବ ବୋଲି ପରା ମୁଁ ଆଗରୁ ଜାଣିଥିଲି। କିନ୍ତୁ ଯାହା ହେଉ, ବର୍ତ୍ତମାନ ମୋ' ମୁଣ୍ଡଟା ଟିକିଏ ଶାନ୍ତ ହୋଇ ପାରିବ।" ସଂପୃକ୍ତ ସମସ୍ତେ ଏହି ଘଟଣାଟିକୁ ଭଗବାନଙ୍କର କରୁଣା ବୋଲି ମନେ କରୁଥିଲେ। ପ୍ରକୃତରେ କ'ଣ ନିକୋଲାସ୍ ପାରିସ୍‌କୁ ଫେରି ଯିବାକୁ ଇଚ୍ଛା କରୁଥିଲା ? ତା' ହେଲେ ତାକୁ ଅତି ନିର୍ବୋଧ ବୋଲି କହିବାକୁ ହେବ। ବିବାହ କରିବା ପାଇଁ ଅଧିକ

ଦିନ ରହିବାକୁ ହେଲେ ତ ତାକୁ ଅତି ସହଜରେ ଛୁଟି ମିଳିଯିବ। ବ୍ୟାପାରଟାକୁ ଅଧିକ ପକାଇ ନରଖିବା ହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା।

ଏକ ମୃତପ୍ରାୟ କଣ୍ଠସ୍ୱରରେ ସେ 'ବିଚାର କରିବି', 'ଦେଖିବି' ବୋଲି ଉତ୍ତର ଦେଲା। ଉଠିକରି ସେ ବାହାରକୁ ଗଲା - ବାହାରେ ସୂର୍ଯ୍ୟକିରଣ କୁହୁଡ଼ିରେ ଆଛନ୍ନ ହୋଇ ରହିଚି। କାଷ୍ଟିଲନ୍ ରାସ୍ତାରେ ସେ ପଦଚାରଣା କରୁଥାଏ, ସତେ ଅବା ଗୋଟାଏ କୌଣସି ଜାଲ୍‌ରେ ପଡ଼ିଗଲା ପରି ସେ ଅନୁଭବ କରୁଥାଏ। ସେହି ଜାଲରେ ସେ ଛନ୍ଦି ହୋଇ ପଡ଼ିଲା। ସଂଗ୍ରାମ କରିବାର ଆଉ କୌଣସି ପ୍ରୟୋଜନ ନଥିଲା। ଚାରିଆଡୁ ସଢ଼ା କାଠ, ପୋଡ଼ା ପତର ଓ ପଚା ଦ୍ରାକ୍ଷାରସର ଗନ୍ଧ ଭାସି ଆସୁଥିଲା। ଦ୍ରାକ୍ଷା ପେଷା ହେଉଥିବା ଖାଇରୁ ଧଡ଼ଧଡ଼ ଶବ୍ଦ ଶୁଣାଯାଉ ଥିଲା। ନିକୋଲାସ୍ ଖାଇଟାରୁ ଦେଖିପାରୁ ନଥିଲା, କେବଳ ଶବ୍ଦଟା ଶୁଣିପାରୁ ଥିଲା। ଶେଷ ସେପ୍ଟେମ୍ବର ସମୟକୁ ପିଲାଦିନରୁ ପ୍ରତ୍ୟେକ ବର୍ଷ ସେ ଏହିସବୁ ଶବ୍ଦ ଓ ଦୃଶ୍ୟକୁ ଭାରି ଭଲପାଇ ଆସୁଥିଲା। କୌଣସି ଏକ ସଂକୀର୍ଣ୍ଣ ପ୍ରକୋଷ୍ଠରେ ବାରିତ ବାତାୟନ ବାଟେ ସେ ସବୁ ଆଜି ଆସୁଥିବା ପରି ସେ ଅନୁଭବ କରୁଥିଲା। ଯଦି ମୃତ୍ୟୁ ପ୍ରକୃତରେ ମୃତ୍ୟୁ ହିଁ ହୋଇଥାନ୍ତା । ମୃତବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କଲାବେଳେ ଗୀର୍ଜା ଯେଉଁ ନିଦ୍ରାର ପ୍ରାର୍ଥନା କରେ, ଯଦି ମୃତ୍ୟୁ ପ୍ରକୃତରେ ସେହି ନିଦ୍ରା ହୋଇଥାନ୍ତା : - ତାଙ୍କର ଆତ୍ମା ଶାନ୍ତିରେ ବିଶ୍ରାମ କରୁ, ହେ ଭଗବାନ, ତାକୁ ଚିର ଶାନ୍ତି ଓ ବିଶ୍ରାମ ପ୍ରଦାନ କର...କିନ୍ତୁ ଏହି ଶାନ୍ତି ପ୍ରାର୍ଥନା ମୃତାତ୍ମା ଲାଗି କୌଣସି ନିର୍ଭର ଦେଇ ପାରୁ ନଥିଲା। ଏହି ପ୍ରାର୍ଥନାର ଉତ୍ତରରେ କୁହାଯାଉ ଥିଲା : ଶାଶ୍ୱତ ଆଲୋକ ଓ ଅଗ୍ନି। ବୁଲି ବୁଲି ସେ ଚେଷ୍ଟନଟ୍ ବଣରେ ପହଞ୍ଚିଲା -ଗଲାଦିନେ ସେ ଆଉ ଗିଲେସ୍ ଠିକ୍ ଏହିଜାଗାକୁ ଛତୁ ତୋଳି ଆସିଥିଲେ। ଯନ୍ତ୍ରଚାଳିତ ହେଲାପରି ସେ ଗୋଡ଼ର ବୁଢ଼ା ଆଙ୍ଗୁଠିରେ ପଚା ଓ ପାଚିଲା ପତ୍ରଗୁଡ଼ାକୁ ଉଖାରିବାରେ ଲାଗିଥାଏ। ଖ୍ରୀଷ୍ଟିଆନ୍ ଧର୍ମ ବିଶ୍ୱାସର ଯେଉଁ ଘନୀଭୂତ ସ୍ତୁପ ତା'ର ହୃଦୟ ଭିତରେ ଠିଆ ହୋଇ ରହିଥିଲା, ସତେ ଅବା ତାହାରି ପାଖକୁ ଆସି ହଠାତ୍ ଝୁଣ୍ଟି ପକାଇଲା। ସେଠାରୁ ରକ୍ଷା ପାଇ ପଳାଇ ପାରିବ ବୋଲି ଆଉ ତାର ବିଶ୍ୱାସ ହେଲା ନାହିଁ। ସମସ୍ତେ ମିଶି ଯେପରି ତାକୁ ଗୋଟାଏ କଣକୁ ନେଇ ଆସିଲେଣି, ତାକୁ ଚାରିଆଡୁ ଘେରି ଗଲେଣି। ସେଠାରୁ ଯେପରି ମୁକ୍ତିର କୌଣସି ଉପାୟ ନଥିଲା।

ଆପଣା ହାତରେ ଟେକି ନେଇ ଯେଉଁ ବୋଝଟାକୁ ସେ ଆପଣାର ପିଠି ଉପରେ ରଖିଚି, ସେହି ବୋଝକୁ ସେହିପରି ପିଠିରେ ବୋହି ସନ୍ତୁଷ୍ଟ ହେବା ବ୍ୟତୀତ ଆଉ ଅନ୍ୟ ଗତି ନାହିଁ। "ଧିକ୍ ତୁମକୁ, କାରଣ ତୁମେମାନେ ମଣିଷ ଉପରେ ଦୁର୍ବହ ବୋଝମାନ ଲଦି ଦେଇଚ ଆଉ ନିଜେ କୌଣସି ପ୍ରକାରର ବୋଝକୁ ଗୋଟିଏ ଆଙ୍ଗୁଠିରେ ମଧ୍ୟ ସ୍ପର୍ଶ କରିବାକୁ ତୁମେମାନେ ପ୍ରସ୍ତୁତ ନୁହଁ। " ଏହି ଅଭିଶାପ ବାକ୍ୟ ଉଚ୍ଚାରଣ କଲାବେଳେ ଈଶ୍ୱରଙ୍କର ଅବଶ୍ୟ କହିବା ଉଚିତ ଥିଲା - ଧିକ୍ ସେମାନଙ୍କୁ, ଯେଉଁମାନେ ଆପଣାକୁ ପେଷି ଦେଉଥିବା

କ୍ରସ୍‌କୁ ନେଇ ଆପଣାର ପିଠି ଉପରେ ଲଦି ଦିଅନ୍ତି, ଯାହାକୁ ବହନ କରି ନେବାକୁ ସେମାନଙ୍କର ଶକ୍ତି ନଥାଏ, ଯାହା ସେମାନଙ୍କର କ୍ରସ୍ ନୁହେଁ। ଅତି ନିର୍ବୋଧତା ସହକାରେ ଆପଣା ଉପରକୁ ଅତିମାନୁଷିକ ବୋଝମାନ ଆଦରି ଆଣି ତାହାରି ତଳେ କେତେକେତେ ଲୋକ ନିଃଶେଷିତ ହୋଇଯାଉ ନାହାନ୍ତି ? ଆତ୍ମତ୍ୟାଗର ଶବ୍ଦଗୁଡ଼ାକ ମୁହଁରେ କହିବା ଏବଂ ଆପଣାକୁ ସଂକଳ୍ପ ଦ୍ୱାରା ଆବଦ୍ଧ କରି ପକାଇବା ସତେ କେଡ଼େ ସହଜ ! କିନ୍ତୁ ତା'ପରେ ଆଣ୍ଠୁରେ ଗୋଟାଏ ଲୁହାର ବଲ୍ ବାନ୍ଧି ମୃତ୍ୟୁ ପର୍ଯ୍ୟନ୍ତ ଆପଣାର ବାଟ ଚାଲିବାକୁ ପଡ଼ିବ ହିଁ ପଡ଼ିବ। ମାତ୍ର ଅପରାଧୀର ଗୋଡ଼ରେ ବନ୍ଧା ହୋଇଥିବା ଲୁହାର ଏହି ବଲ୍‌ଟା ଅପରାଧୀ ଉପରେ କୌଣସି ପ୍ରଭାବ ପକାଇ ପାରେ ନାହିଁ। ହେ ଭଗବାନ୍ : -ଏହି ସ୍ତ୍ରୀଲୋକଟା ତା'ର ହୃଦୟ ଓ ଦେହକୁ ଅଧିକାର କରି ବସିବ, ରାତି ଆଉ ଦିନ, ମୃତ୍ୟୁ ପର୍ଯ୍ୟନ୍ତ -ଏବଂ ମୃତ୍ୟୁ ଅନ୍ତେ ମଧ୍ୟ ଅଧିକାର କରି ରହିଥିବ... !

କେଡ଼େ ଦୃଢ଼ ଓ ଅଦମ୍ୟ ସଂକଳ୍ପର ସହିତ ତାଙ୍କୁ ସମସ୍ତ ବାଧା ଅତିକ୍ରମ କରିବାକୁ ପଡ଼ିଲା ! ନିକୋଲାସ୍ ତା'ର ମାଆଙ୍କ କଥା ଭାବୁଥାଏ। ପ୍ରଥମେ ପ୍ରଥମେ ସେ ଟିକିଏ ବୈରି ଆଚରଣ କରୁଥିଲେ, କିନ୍ତୁ ଗାଲିଗାଇ ତାଙ୍କୁ ଏକାବେଳେକେ ବଶ କରିନେଲେ। ଏପରିକି ସେ ଅତି ଅଳ୍ପଦିନ ପରେ ପ୍ରବେଶ କରିବାକୁ ଯାଉଥିବା ସ୍ୱର୍ଗରାଜ୍ୟର ଦ୍ୱାରକୁ ତାଙ୍କ ପଛରେ ଧଡ଼କରି ବନ୍ଦକରିଦେବାର କଳ୍ପନା ସୁଦ୍ଧା ସେ କରିପାରିବ ନାହିଁ। ସେ ହାତମୁଠା କରିବାକୁ ଲାଗିଲା। ସେ ଯାହାସବୁ କଲା, କାହିଁକି କଲା ? କିଏ ତା'ର କାନ୍ଧକୁ ଧରି ଏମିତି ଠେଲିଆ ମାରିମାରି ତାକୁ ଆଗକୁ ନେଇଯାଇଚି ? ଗିଲେସ୍ ...ଘଟଣା ଅନୁକ୍ରମରେ ସେହି ଗିଲେସ୍ ଆଜି ଗାଲିଗାଇର ବିନା ସାହାଯ୍ୟରେ ତା'ର ଉଦ୍ଦେଶ୍ୟ ହାସଲ କରିପାରିଚି : ସେହି ଗିଲେସ୍, ଝକମକି ପଥରରେ ଗଢ଼ା ମୁହଁ ଭିତରେ ନାନାରଙ୍ଗର ଚକମକ ଆଖି ଦୁଇଟା, ସତତ ସନ୍ତୁଷ୍ଟ ହେବାଲାଗି ଅସ୍ଥିର ହେଉଥିବା ନାନା କ୍ଷୁଧାଦ୍ୱାରା ସଂଚାଳିତ ଅସ୍ଥି ଓ ମାଂସପେଶୀ ଦ୍ୱାରା ଗ୍ରଥିତ ହୋଇଥିବା ସେହି ଜୀବନ୍ତ ସୃଷ୍ଟି...କିନ୍ତୁ ଏ ଦୋଷ କାହାର ? ସେ, —ନିକୋଲାସ, ସବୁବେଳେ ତା'ର ଜୀବନରେ ଏପରି ଏକ ପିତୁଳାଟିଏ ରଖିବାକୁ ଚାହୁଁଥିଲା, ଯାହାପାଖରେ କି ସିଏ ଆପଣାକୁ ବଳି ଦେଇପାରିବ। ହଁ, ତାକୁ ବଳି ପଡ଼ିବାକୁ ହିଁ ପଡ଼ିବ, -ବିଚାରା ନିର୍ବୋଧ ବଳିଭୋଜ୍ୟ !

ତାହାର ପ୍ରକୃତି ସେହିପରି। କିନ୍ତୁ ତାହାର ଚେତନାଶକ୍ତିର ଏହିସବୁ ଜଳଭଉଁରୀ କୌଣସି ଏକ ଅନ୍ତିମ ବଳିର ଅନୁଷ୍ଠାନ କରି ମୁକ୍ତି ପାଇବାର ବାଟ ଅନୁସନ୍ଧାନ କରିବାରୁ ଯେପରି ତାକୁ କୌଣସି ପ୍ରକାରେ ନିବୃତ୍ତ କରି ନରଖେ। ଗାଲିଗାଇଙ୍କର ଇଚ୍ଛାନୁସାରେ ତାକୁ ସମସ୍ତ କାର୍ଯ୍ୟ କରିବାକୁ ହେବ। କିନ୍ତୁ ଯେପର୍ଯ୍ୟନ୍ତ ବିବାହ -ଉତ୍ସବଟି ଅନୁଷ୍ଠିତ ଓ ସମାପ୍ତ ନ ହୋଇଚି, ଯେପର୍ଯ୍ୟନ୍ତ ମାଆ ବେଲ୍‌ମନ୍ତରେ ସ୍ଥାୟୀଭାବରେ ନିବାସ ନ କରିଚନ୍ତି। ସେପର୍ଯ୍ୟନ୍ତ ସେ ଜୀବନ ପାଖରୁ କୁଆଡ଼େ ପଳାଇଯାଇ ପାରିବ ନାହିଁ। ଗୋଟାଏ

ଆତ୍ମହତ୍ୟାର 'ଅଭିନୟ' କରିବା ଭାରି ସହଜ। କେଉଁଭଳି ଦୁର୍ଘଟଣାମାନ ଘଟିଲେ ସେ ଆହତ ହୋଇ ପଡ଼ିବାର ଆଶଙ୍କା ରହିଚି, ମନେମନେ ସେ ସେହି ସବୁର ବିଚାର କରିବାକୁ ଲାଗିଲା। କ୍ରମେ ସେ ଟିକିଏ ଅଧିକ ଶାନ୍ତି ଅନୁଭବ କଲା। କିନ୍ତୁ ଗିଲେସ୍ ପ୍ରତି ସେ ଯେଉଁ ବୈଚିତ୍ର ବିହୀନ ତିକ୍ତତା ଅନୁଭବ କରୁଥିଲା, ତା'ର ନୂତନଲବ୍ଧ ଶାନ୍ତିକୁ ସେହି ତିକ୍ତତା ଗ୍ରାସ କରିବାକୁ ଆସିଲାବେଳେ, ସେ ଆଦୌ ତାକୁ ନିବୃତ୍ତ କରି ରଖି ପାରିଲାନାହିଁ। ଆଜି ଶରତରତୁରେ ସେ ଯେଉଁ ରାସ୍ତାଟି ଉପରେ ଯାଉଥିଲା, ଦୁହେଁ ତା'ଉପରେ କେତେଥର ଏକାଠି ହୋଇ ଯାଇଚନ୍ତି। ଆଜି ସେଇଠି ଯାଉଯାଉ ସେ ଭାବୁଥିଲା, ବନ୍ଧୁତା ପ୍ରତିଷ୍ଠିତ ହେବାର ପ୍ରଥମ ପର୍ବରୁ ହିଁ କିପରି ସବୁବେଳେ ତାକୁ ବଞ୍ଚିତ ହେବାକୁ ପଡ଼ିଚି। ଜୀବନ୍ତ ମୃତ୍ୟୁର ମୁର୍ତ୍ତିସ୍ୱରୂପ ଏହି ସହରର ଚିମ୍‌ନି ଗୁଡ଼ିକରୁ ଉଠୁଥିବା ଧୂଆଁ ବୃହଦାକାର ଗୀର୍ଜାଉପରେ ଜମି ରହିଥିବା କୁହୁଡ଼ିକୁ ଅଧିକ ଘନୀଭୂତ କରିଦେଉଥିଲା।

## ଷୋହଳ

ରାମ୍ପାର୍ଟ ରାସ୍ତାଦେଇ ସେ ଘରକୁ ଫେରିଲା। ହଠାତ୍ ...ପରିଚିତ କୌଣସି କଣ୍ଠ ତାକୁ ଡ଼ାକୁଥିବାର ଶୁଣିପାରି ସେ ଉପରକୁ ଅନାଇଲା। ତା'ର ନିଜ କୋଠରୀରୁ ତଳକୁ ଉହୁଙ୍କି ପଡ଼ି ଗିଲେସ୍ ତାକୁ ଡ଼ାକୁଥିଲା।

ଆଉ ଜଣକ କାରରେ ବସି ସେ ବୋର୍ଦୋରୁ ଘରକୁ ଆସିଥିଲା। ସିଧା ଆସି ନିକୋଲାସ୍‌ଙ୍କ ଘର ପାଖରେ ଓହ୍ଲାଇ ପଡ଼ିଥିଲା, କାରଣ ତା' ସହିତ ସାକ୍ଷାତ କରି ତାକୁ ସବୁକଥା ନ କହିବା ଯାଏ ଆଉ ତା'ର ଧୈର୍ଯ୍ୟ ରହିଲା ନାହିଁ। ....ଅବଶ୍ୟ ସେ ବାଲୁଜ୍‌କୁ ଯେ ଶିକାର କରିବାକୁ ଯାଇଥିଲା, ସେ କଥା ଠିକ୍। କି ଅଦ୍ଭୁତ ଓ ଚମତ୍କାର ଦୁଇଟା..ସପ୍ତାହ ସେ ବୋର୍ଦୋରେ କଟାଇ ନଆସିଲା ! ଅବଶ୍ୟ ତାହାକୁ ଭୟଙ୍କର ମଧ୍ୟ କହିବାକୁ ପଡ଼ିବ। ମାଆ ପାଖରେ...ଡ଼ାକ୍ତରଖାନାରେ ମୁହୂର୍ତ୍ତେ ବସି ରହିବା ଆଉ ମେରୀ ପକ୍ଷରେ ସମ୍ଭବ ହୋଇ ପାରିଲା ନାହିଁ। ଏପରି କି ନିଜେ ମଧ୍ୟ ତାକୁ ବାହାରକୁ ଯିବାଲାଗି ଯିଦ୍ ଧରି କହିଲେ। ନାନା ସ୍ଥାନରେ ସେମାନଙ୍କର ଭେଟ ହେଲା। ସାଧାରଣ ପାର୍କମାନଙ୍କରେ, ବନ୍ଦର ପାଖରେ ଓ କେବଳ ସାଁତ୍-ଜାଁ ଷ୍ଟେସନ ପାଖରେ ଥିବା ତା'ର ହୋଟେଲର କୋଠରୀଟିକୁ ଛାଡ଼ିଦେଲେ ଆଉ ସବୁଠାରେ। ବେଶ୍ କେତେଦିନ ପର୍ଯ୍ୟନ୍ତ ସେମାନଙ୍କୁ ସେହି ପ୍ରଲୋଭନରୁ ଆପଣାକୁ ଦୂରରେ ରଖିବାକୁ ପଡ଼ିଲା -କାରଣ ସେମାନେ ଠିକ୍ ଜାଣିଥିଲେ ଯେ ଘର ଭିତରେ ପଶି କବାଟ ବନ୍ଦ କରିଦେବା ମାତ୍ରକେ....ତଥାପି ଏକଥା ଘଟିଥିଲା। ଠିକ୍ ମେରୀ ପରି

ଏଥିଲାଗି ତାକୁ ମଧ୍ୟ ଭାରି ଖରାପ ଲାଗିଲା, ପରେ ଦୁହେଁ ପରସ୍ପରଠାରୁ ବିଦାୟ ନେଇ ଆସିଲା ବେଳେ ମଧ୍ୟ ସେହିପରି ଖରାପ ଲାଗିଲା। ଝାମ୍ପ ମାରି ଏପରି ସୁଖକୁ ଆତ୍ମସାତ୍ କରିବାକୁ ଆସିବା, ଆଉ ଗୋଟାଏ ଘରେ ତା'ର ମାଆ ପୀଡ଼ିତ ହୋଇ ପଡ଼ିଥିବା ବେଳେ ଗୋପନ ଆଲିଙ୍ଗନରେ ଏପରି ମାତି ରହିବା, -ଚରମ ଲଜ୍ଜାରେ ଦୁହେଁ ସତେ ଅବା ସଢ଼ି ଯାଉଥିଲେ । ତଥାପି, ସୁଖ ପାଇବାକୁ ହେଲେ ଏହିପରି ଅନେକ ପାପର ପଥ ମାଡ଼ି ଯିବାକୁ ପଡ଼େ.... "କାରଣ ତତେ ମୁଁ ଏତିକି କହିବାକୁ ଯାଉଚି ଯେ ତା'ପରେ ମୋତେ କୌଣସି ପ୍ରକାରେ କ୍ଷୁନ୍ନ, କ୍ଳାନ୍ତ ବା କ୍ଷୟିତ ବୋଧ ହେଲା ନାହିଁ - ମୋ' ଜୀବନରେ ଏ ପ୍ରଥମ ଥର ପାଇଁ। ତାହାର ମର୍ମ ତୁ ହୃଦୟଙ୍ଗମ କରି ପାରୁଚୁ ?.... ଯେତେଥର ଏପରି ଘଟେ, ପ୍ରତ୍ୟେକ ଥର ଯେପରି ମତେ କିଏ କୁଆଡ଼କୁ ଉତ୍ତୋଳିତ କରି ନେଇଯାଏ, ସତେ ଅବା ମୁଁ ପୃଥିବୀର କୋଟୀ ଉପରେ ଯାଇ ବସେ...ପ୍ରତ୍ୟେକଥର ଠିକ୍ ପ୍ରଥମଥର ପରି ଲାଗେ..ମେରୀକୁ ମଧ୍ୟ ସବୁକଥା ଅତି ସହଜ ଓ ସ୍ୱାଭାବିକ ବୋଲି ଲାଗୁଚି...ଏହା ଅନ୍ୟ କୌଣସି ପ୍ରକାରର ହୋଇପାରେ ବୋଲି ସେ କଳ୍ପନା ମଧ୍ୟ କରିପାରେ ନାହିଁ...କିନ୍ତୁ ମୁଁ ସେହିପରି ଅନୁଭବ କରେ...ତୁ' ତ ମୋତେ ଜାଣିଚୁ ...କି ଅଦ୍‌ଭୁତ ଉପଲବ୍‌ଧି ଏ। କି ଅଲୌକିକ ଘଟଣା।"

ଏପର୍ଯ୍ୟନ୍ତ ସେ ନିକୋଲାସ୍ ଆଡ଼କୁ ଚାହିଁ ନଥିଲା। ସବୁଦିନେ ସେ ଏହିପରି ନିଜକୁ ନିଜେ କଥାବାର୍ତ୍ତା କରେ, ନିଜ ବିଷୟ ଛାଡ଼ି କ୍ୱଚିତ ସେ ଅନ୍ୟ ବିଷୟରେ କଥାବାର୍ତ୍ତା କରେ। ନିକୋଲାସ୍‌ର ନୀରବତା ଏଥିପାଇଁ ଏକ ପରିଚିତ ଓ ପ୍ରୟୋଜନୀୟ ପୃଷ୍ଠଭୂମି ଯୋଗାଇ ଦେଉଥିଲା। କିନ୍ତୁ ଆଜିର ନୀରବତା ଟିକିଏ ସ୍ୱତନ୍ତ୍ର ଧରଣର -ଗିଲେସ୍ ଅସ୍ପଷ୍ଟ ଭାବରେ ଏକଥା ବୁଝି ପାରୁଥାଏ ଓ ତା'ର ବନ୍ଧୁଆଡ଼କୁ ଅନାଇ ରହିଥାଏ। କାନ୍ଥଆଡ଼କୁ ମୁହଁ କରି ନିକୋଲାସ୍ ଦରଶୁଆ ହୋଇ ବିଛଣା ଉପରେ ଗଡୁଥାଏ। ଦୁଇ ହାତରେ ସେ ତା'ର ବାଳକୁ ଯାଇ ଧରିଲା ଓ ମୁଣ୍ଡ ଟେକିବା ଲାଗି ତାକୁ ବାଧ୍ୟ କଲା । ତା'ପରେ ସେ ବୁଝି ପାରିଲା।

"ଘଟଣା କ'ଣ ? —ଗାଲିଗାଇ ସକାଶେ କଦାପି ଏପରି ହୋଇ ନଥିବ। ତା'ହେଲେ ଏ କ'ଣ ?..ତୁ ବନ୍ଧନରେ ପଡ଼ି ଯାଉଚୁ ବୋଲି କ'ଣ ମୋତେ କହିବାକୁ ଇଚ୍ଛା କରୁନାହୁଁ ?...ବାଗ୍‌ଦାନଟା ଏକ ପ୍ରକୃତ ଅଥଚ ଅନିର୍ଦ୍ଦିଷ୍ଟ ବାଗ୍‌ଦାନ ହେବାର ତ କଥା ଥିଲା, ତୁ ଠିକ୍ ସେହିପରି ହେଉ ବୋଲି ଇଚ୍ଛା କରି ନଥିଲୁ କି ? ତୋ' ମନରେ ହୁଏତ ଆଉ କିଛି ଅଛି ବୋଲି ତ ମୁଁ ଆଦୌ ଭାବିନାହିଁ । ତୁ କ'ଣ ଭାବିଲୁ ଯେ ମୁଁ ଖାଲି ଠିଆହୋଇ ତୋତେ କିଏ ଜୀଅନ୍ତା ଗିଳି ପକାଉଥିବାର ଦେଖୁଥିବି ? -ପୁଣି ତାହା ଦ୍ୱାରା, ସେହି ଆତଙ୍କଟା ଦ୍ୱାରା ? ଏହାର ପରିଣାମ କ'ଣ ହେବ ତୁ ଭାବିଛୁ ? ତୁ କେବଳ ତୋହରି ବିଷୟରେ ଚିନ୍ତା କରୁଚୁ କିନ୍ତୁ ଗାଲିଗାଇ ବିଷୟ ପୁଣି କ'ଣ ହେବ ? ଏହା ତାକୁ ଠିକ୍ ଅଳ୍ପ ଅଳ୍ପ କରି ହତ୍ୟା କଲା ପରି ହେବ । ତାହାର ଅର୍ଥ ? -ତୁ ତାକୁ ପରିତ୍ୟାଗ କଲେ ଭାବୁଚୁ ସେ ନିଶ୍ଚୟ

ମରିଯିବ ? ମିଛକଥା -ତୋ'ଠାରୁ ଦୁଇଗୁଣ କୌଶଳ ତାକୁ ଜଣାଅଛି। ନିଶ୍ଚୟ ତାକୁ ଜଣାଅଛି ! -ସେଥିପାଇଁ ତୋ'ର ମୁଣ୍ଡ ବଥାଇବା ଆଦୌ ଦରକାର ନାହିଁ। ତୁ ତାକୁ ବିବାହ କଲେ ତାହା ତା'ର ଚକରେ କେବଳ ଗୋଟାଏ ସ୍ପୋକ୍ ଲଗାଇଲା ପରି ହେବ - ତଦ୍ୱାରା ଦୁହିଁଙ୍କର ଜୀବନ ବଡ଼ ଶୋଚନୀୟ ହୋଇପଡ଼ିବ....କିନ୍ତୁ ବୁଢ଼ା ଡୁବେର୍ନେଟ୍, ବର୍ତ୍ତମାନ ସେ ପତ୍ନୀ ହରାଇ ସାରିଲେଣି...କାହିଁକି ନିଶ୍ଚୟ ! -ଯଦି ତୁ ଆସି ମଝିରେ ଠିଆ ନ ହେଉ, ତେବେ ସେ ତତ୍‌କ୍ଷଣାତ୍ ତାଙ୍କୁ ବିବାହ କରିବ -ଗଧ, ତୁ କ'ଣ ଜାଣିଚୁ, ଚାରିଆଡ଼େ ତ ସମସ୍ତେ ସେହିକଥା କଥାବାର୍ତ୍ତା ହେଉଛନ୍ତି : ବୋଧହୁଏ କେବଳ ତୁହିଁ ଏ ବିଷୟରେ କିଛି ଜାଣିନାହୁଁ ! କୌଣସି କଥା, କୌଣସି ଗମ୍ଭୀର କଥା ଘଟିଛି ବୋଲି ମୁଁ କଦାପି କହୁନାହିଁ। କିନ୍ତୁ ପବନଟା ପ୍ରକୃତରେ କୁଆଡ଼କୁ ବହୁଚି, ତାହା ଜାଣିବାକୁ ଆଗରୁ ଅନେକ ସୂଚନା ମିଳୁଛି। ମେରୀ ତ ସେକଥା ନିଜେ ଦେଖିଛି। ତେଣୁ ବେଲ୍‌ମନ୍ତର ଭୂସମ୍ପତ୍ତି ଫେରାଇଦେବା କ'ଣ କେବଳ ଏକ ବନ୍ଧୁତ୍ୱସୂଚକ କାର୍ଯ୍ୟ ବୋଲି ତୁ ଭାବୁଚୁ କି ? ତୋର ମାଆ କେବଳ ତୋତେ ବଗିଚା ଆଡ଼କୁ ବୁଲାଇ ନେଉଚନ୍ତି। ଏଥିରେ ବୁଲିଆ ଡୁବେର୍ନେଟ୍‌ଙ୍କର ଅର୍ଥ ଆଦୌ ସଂପୃକ୍ତ ନୁହେଁ। ଭୂସମ୍ପତ୍ତିଟା ତାଙ୍କର ବୋଲି ମୁଁ ଭଲ କରି ଜାଣିଥିଲି ।— ଡ଼ୋନ୍‌ଜାକ୍ ପରିବାର ଆଉ ସେ ସେହି ସମ୍ପତ୍ତି ପାଇଥିଲେ, କିନ୍ତୁ ପୁଞ୍ଜି ହେଉଚି ଶ୍ରୀଯୁକ୍ତ ଡୁର୍ବେର୍ନେଟ୍‌ଙ୍କର। ଗତ କୋଡ଼ିଏ ବର୍ଷ ହେଲା ସେ ଏଥିରେ ପଇସା ଖଟାଇଛନ୍ତି, ନିଜକୁ ଜଣେ ବ୍ୟାଙ୍କ୍ ବ୍ୟବସାୟୀ ବୋଲି ଛଳନା କରୁଛନ୍ତି -ଡ଼ୋର୍ଥେରେ ଥିବା ସମସ୍ତ ଛୋଟ ଦୋକାନକୁ ସେ ଟଙ୍କା ଦେଇ କିଣି ସାରିଚନ୍ତି। ବେଲ୍‌ମନ୍ତ ହେଉଛି ତାଙ୍କର ସମ୍ପତ୍ତି, ତାଙ୍କର ବ୍ୟକ୍ତିଗତ ସମ୍ପତ୍ତି। -ତାଙ୍କର କୃତଜ୍ଞତାର ଏକ ନିଦର୍ଶନ। ନା -ଏହା କଦାପି ଅସମ୍ଭବ ନୁହେଁ ଯେ ଗାଲିଗାଇ ପ୍ରତି ଶ୍ରୀଯୁକ୍ତ ଡୁବେର୍ନେଟ ଆକୃଷ୍ଟ ହୋଇଚନ୍ତି। ଶୀଘ୍ର ହେଉ ବା ବିଳମ୍ବରେ ହେଉ, ମଫସଲ ଅଞ୍ଚଳରେ ପ୍ରତ୍ୟେକ ସ୍ତ୍ରୀଲୋକର ସୁଯୋଗ ଅବଶ୍ୟ ଦିନେ ନା ଦିନେ ଆସି ପହଞ୍ଚିବ। ...ଗାଲିଗାଇର ପରାମର୍ଶ ନନେଇ ଶ୍ରୀଯୁକ୍ତ ଡୁବେର୍ନେଟ୍ କଦାପି କୌଣସି କାର୍ଯ୍ୟ କରନ୍ତି ନାହିଁ। ତାଙ୍କ ସହିତ ସେ ସବୁବେଳେ ଅନେକ ଗୁପ୍ତ କଥାବାର୍ତ୍ତା କରନ୍ତି। 'ରିଭ୍ୟୁଦେସ୍ ଦିଉ ମଁଦ୍‌ସ୍' ପତ୍ରିକାରେ ସେ ଯାହା ପଢ଼ନ୍ତି, ସବୁ ତାଙ୍କ ଆଗରେ କହନ୍ତି। - ସେ ଯେ କେବଳ ଜଣେ ଗାଉଁଲୀ ସାଧାରଣ ଲୋକ ଆଦୌ ନୁହନ୍ତି, ଏ ବିଷୟରେ ଗାଲିଗାଇ ତାଙ୍କଠାରୁ ଅନେକ ପ୍ରମାଣ ପାଇଚନ୍ତି..ତୁ ଜଣେ ନାରୀର ପ୍ରବୋଧ ପାଇଚୁ -କେବଳ ପ୍ରବୋଧ ନୁହେଁ, ଯୁକ୍ତି ମଧ୍ୟ ପାଇଚୁ। ତୁ ପୁରା ଠକାମିରେ ପଡ଼ିଯାଇଚୁ। ମୁଁ ବେଶ୍ ଦେଖିପାରୁଚି ଯେ ଏହା ଦ୍ୱାରା ତୋ'ର ସମ୍ମାନକୁ ମଧ୍ୟ ଆଞ୍ଚ ଆସିବ। କିନ୍ତୁ ତଥାପି ସମୟ ଅଛି ! ଦେଖ -କାଲି ସନ୍ଧ୍ୟାବେଳେ ବାପାଙ୍କର କାରରେ ବସାଇ ତୋତେ ମୁଁ ଲାଁଗୋକୁ ନେଇଯିବି -ଅଠଚାଳିଶି ଘଣ୍ଟାରେ ତୁ ଯାଇ ପାରିସ୍‌ରେ ପହଞ୍ଚିବୁ, -ଠିକ୍ ପ୍ରାୟ ସେତିକିବେଳେ ଗାଲିଗାଇ, ସମସ୍ତ ପରିବାର ଓ ଶବ, ସମସ୍ତେ ଆସି ଡ଼ୋର୍ଥେରେ ପହଞ୍ଚିବେ।

ପାରିସ୍‌ରୁ ତୁ ତାକୁ ଖଣ୍ଡେ ଚିଠି ଲେଖି ପଠାଇଦେବୁ -ଖୁବ୍ ସାବଧାନତାର ସହିତ ଶବ୍ଦପ୍ରୟୋଗ କରି ଚିଠି ଲେଖିବୁ। ମୁଁ ତ ଏଇଠି ଥିବି, ଆଘାତଟାକୁ ଟିକିଏ ସହିବା ଭଳି କରିଦେବାର ଦାୟିତ୍ୱ ମୋ' ଉପରେ। ତୋ'ର ମାଆ ? -ହଁ, ସେ ବିଷୟରେ ମଧ୍ୟ ବିଚାର କରିବାର କଥା, କିନ୍ତୁ ସେ କଥାଟା ବର୍ତ୍ତମାନ ଥାଉ, ବିବାହ ପୂର୍ବରୁ ଆଉ ଗୋଟାଏ ବଡ଼ ଜରୁରୀ ବିଷୟ କରିବାକୁ ଅଛି ବୋଲି କହି ତୁ ତାଙ୍କୁ ଭୁଲାଇଦେଇ ପାରିବୁ। -ତା' ପରେ ଗୋଟାଏ ଦ୍ୱିତୀୟ ଚିଠି ଲେଖିବୁ, ଗାଲିଗାଇ ପାଖକୁ - ଏକଥା ନିଶ୍ଚୟ ତୁ ଜାଣିଚୁ ଯେ କେବଳ ମାଆ ସକାଶେ ତୁ ତୋ'ର ସବୁ ନଷ୍ଟ କରି ଦେବାକୁ କଦାପି ଇଚ୍ଛା କରିବୁ ନାହିଁ। ଖାଲି ତାଙ୍କୁ ନିରାଶ ନ କରିବା ଭୟରେ ତୁ ତୋ'ର ସମସ୍ତ ଜୀବନଟା ବଳି ଦେବାକୁ ଯାଉଚୁ, ମୋତେ ତୁ ସେକଥା କହିଲେ ମଧ୍ୟ ମୁଁ କଦାପି ବିଶ୍ୱାସ କରିବି ନାହିଁ। —ପୁଣି କୋନ୍ତ୍‌ଡ଼ିକାମ୍‌ବ୍ଲେନେସ୍ ତ ସପ୍ତାହକ ଭିତରେ ତାଙ୍କୁ ବାଟ ଦେଖାଇ ଦେଇଥାନ୍ତେ, ମୁଁ ଯାହା କହିବି, ତୁ ବିଶ୍ୱାସ କର। ମୋ' ବାପା ଗୋଟାଏ ଜୀବନର ଅଧିକାଂଶ ବରଷକାଳ ସେହି ଯୁଦ୍ଧଘୋଡ଼ା (ଶ୍ରୀଯୁକ୍ତ ତୁବେର୍ନେଟ୍)ର ଚିକିତ୍ସା କରି ଆସୁଚନ୍ତି। ମୁଁ ଭଲକରି ଜାଣେ, ଆପଣାର ସମ୍ପଦକୁ ଆଉ କାହାରି ସହିତ ଭାଗକରି ଭୋଗ କରିବାଭଳି ବୋକା ସେ କଦାପି ନୁହନ୍ତି।"

"ତୁ କଣ ସତରେ ଏହିପରି ଭାବୁଚୁ ?" "ସତେ କ'ଣ ତୁ ଏହିପରି ଅନୁମାନ କରୁଚୁ ?" -ମଝିରେ ମଝିରେ କେବଳ ଏତିକି ବ୍ୟତୀତ ନିକୋଲାସ୍ ଆଉ କିଛି କହୁ ନଥିଲା। ତଥାପି ସେ ପ୍ରତିରୋଧ ପ୍ରଦର୍ଶନ କରିବା ଛାଡ଼ି ନଥିଲା। ଗିଲେସ୍ କହିଲା ! "ଚୁପ୍ ହ", ମୁଁ ଯେପରି କହୁଚି, ତୁ ଠିକ୍ ସେହିପରି କର ଏବଂ ଏ ସମସ୍ତ ବ୍ୟାପାରରୁ ଆପଣାକୁ ନିଷ୍କୃତ କରିପକା।" ହଁ, ଠିକ୍ ସେହିକଥା ! ଆପଣାକୁ ନିଷ୍କୃତ କରି ପକା। ଅଧିକ ମୁକ୍ତ ହୋଇ କ୍ରମେ ସେ ନିଶ୍ୱାସ ମାରିବାକୁ ଆରମ୍ଭ କରୁଥିଲା। ପୃଥିବୀ ଉପରେ ଆଲୋକ ଅବତରଣ କରି ଆସୁଥିଲା। କୁହୁଡ଼ି ଭିତର ଦେଇ ସୂର୍ଯ୍ୟର ହୁଲା ଜଳୁଥିଲା। ଆପେ ଆପେ ଉଠି ଠିଆ ହେବାକୁ ସେ କଦାପି ଶକ୍ତି ପାଇ ନଥାନ୍ତା। ଗୋଟି ଗୋଟି କରି ତା'ର ଛାତି ଉପରୁ ଗିଲେସ୍ ବଡ଼ ବଡ଼ ପଥର ଖଣ୍ଡମାନ ଉଠାଇ ଦେଉଥିଲା।

କିନ୍ତୁ ସେ ତଥାପି ପ୍ରତିରୋଧ କରିବା ଲାଗି ଆପଣାକୁ ବାଧ୍ୟ କରୁଥିଲା। ତା'ର ତ ଗୋଟିଏ ବିବେକ ଅଛି, "ହଉ, କିନ୍ତୁ ମୋର ନାହିଁ।" -ଗିଲେସ୍ ଉତ୍ତର ଦେଲା। ତା'ର ହୃଦୟ ନାହିଁ ବୋଲି ଠିକ୍ ଯେଉଁ ସ୍ୱରରେ ସେ ସେଦିନ ଗାଲିଗାଇକୁ କହିଥିଲା, ଆଜି ସେହି ସ୍ୱରରେ ଉତ୍ତର ଦେଲା। ନିକୋଲାସ୍‌ର ବିବେକ ତାକୁ ସେମିତି କାମୁଡ଼ି ଧରିଥାଏ। କରତ କଳରୁ ସିଂଘା ବାଜି ଉଠି ଡ଼ୋର୍ଥେର ସୁନାଗରିକମାନଙ୍କୁ ଡ଼ିନର୍‌ର ସମୟ ହେଲାଣି ବୋଲି ସୂଚନା ଦେଇଗଲା। ସାକ୍ରିଷ୍ଟାନ୍ ମଧ୍ୟ ଆଞ୍ଜେଲସ୍ ପାଇଁ ଘଣ୍ଟା ବଜାଇବାର ସମୟ ହେଲାଣି ବୋଲି ସେଇଥିରୁ ସୂଚନା ପାଇଲା। ସକାଳଟା ଯାକ ମାଡ଼ାମ୍ ପ୍ଲାସାକ୍‌ଙ୍କୁ ବାରଆଡ଼େ ବାର କାମରେ ଯିବାକୁ ପଡ଼ିଲା। ବୁଢ଼ୀ ଶୁକପକ୍ଷୀଟି ଆପଣା ପିଞ୍ଜରାର ଲୁହାକାଠି ଭିତରେ ଚବିଶି

ଘଣ୍ଟା ଖାଲି ଏପାଖ ସେପାଖ ହେଉଥାଏ। ସିଏ ତ ଫେଲ୍ଟ୍ ଚପଲ ପିନ୍ଧିଥାନ୍ତି, ତେଣୁ ତାଙ୍କର ଯିବା ଆସିବାର କୌଣସି ଶବ୍ଦ ହିଁ ଶୁଣାଯାଉ ନଥାଏ। କିନ୍ତୁ ନିକୋଲାସ୍ ଘରର କବାଟ ଉପରେ ତାଙ୍କର ପାତଲା କାନଟାକୁ ମାଡ଼ିଦେଇ ସେ ବିଶେଷ କିଛି ଉପକାର ପାଇଲେ ନାହିଁ। କଥାବାର୍ତ୍ତା ଭିତରେ ଥରେ ଦୁଇଥର ଗାଲିଗାଇର ନାଆଁ ପଡ଼ିଥିଲା, ଏତିକି ବ୍ୟତୀତ ସେ ବିଶେଷ କିଛି ଶୁଣି ପାରିଲେ ନାହିଁ। ଦଣ୍ଡକ ପାଇଁ ସୁଦ୍ଧା ତାଙ୍କ ମନରେ କୌଣସି ସଂଶୟ ରହିଲା ନାହିଁ ଯେ ଗିଲେସ୍ ସୌଭାଗ୍ୟର ବିପଣୀଟିକୁ ଉଜୁଡ଼ାଇ ଦେବାକୁ ଏଠାକୁ ଆସିଚି। ଅବଶ୍ୟ ସେ ଗିଲେସ୍‌ଙ୍କୁ କୌଣସି ଦୋଷ ଦେଉ ନଥିଲେ। ନାନାପ୍ରକାର ଚିନ୍ତା ଓ ଦୁଷ୍ଚିନ୍ତାରେ ଗତ ରାତ୍ରିରେ ତାଙ୍କର ଆଖି କଷା ପଡ଼ି ନଥିଲା। ନିଜ ଘରର ମହମ ବତୀଟି ସେ ଜଳାଇ ଦେଇଥିଲେ, ପୂର୍ବ ଦିନର ସନ୍ଧ୍ୟାରେ ଯାହା ତାଙ୍କୁ ମୁଗ୍ଧ କରି ଦେଇ ଥିଲା, ଆଜି ତାହାହିଁ ବର୍ତ୍ତମାନ ମନଃପୀଡ଼ନର ନିମିତ୍ତ ହୋଇ ବସିଲା। ସେହି ବୁଢ଼ୀଆଣିର ଜାଲ ଭିତରେ ତାଙ୍କର ପୁଅ ନିକୋଲାସ୍ ? ତା' ଛଡ଼ା କୌଣସି ବିଷୟ ନିଶ୍ଚୟ କରି କହି ହେବନାହିଁ। ହୁଏତ ବେଲ୍‌ମନ୍ତ୍‌ରେ ଏକୁଟିଆ ରହି ରହି ତାଙ୍କୁ ଭାରି ଚିକିଟା ଲାଗିବ, ତାଙ୍କର ଅବସ୍ଥା ବଡ଼ ଶୋଚନୀୟ ହୋଇଯିବ ଏବଂ ତା'ପରେ ତାଙ୍କର ଗତି କ'ଣ ହେବ ? ତାଙ୍କର ନିଜର ଘରଟା ସେ ପୁଣି ଫେରି ପାଇବେ ବୋଲି ନିଶ୍ଚୟତା ବା କ'ଣ ଅଛି ? ତାଙ୍କର ସ୍ୱାମୀଙ୍କର ବାପା ସେହି ସମ୍ପତ୍ତିର ମାଲିକ ଥିଲେ। ବର୍ତ୍ତମାନ ସେଇଟା ନିକୋଲାସ୍ ନାଆଁରେ ଅଛି। ଆଉ ଯାହା କିଛି ଅଳ୍ପ ଆୟ ହୁଏ, ତାକୁ ନିକୋଲାସ୍ ସବୁବେଳେ ତାଙ୍କ ହାତରେ ଦେଇ ଦିଏ। ସରଳ ମନରେ ସେ ଏକଥା ଭାବି ଦେଖିବାକୁ ଭୁଲି ଯାଇଥିଲା ଯେ କେବଳ ଏହି ଯତ୍‌କିଞ୍ଚିତ୍ ଭୂସମ୍ପତ୍ତିକୁ ହିଁ ସେ ଉତ୍ତରାଧିକାର ସୂତ୍ରରେ ଲାଭ କରିଚି। ଗାଲିଗାଇ ହୁଏତ ତାଙ୍କ ଘରଟି ଉପରେ ଯେ ଆଖି ନ ପକାଇଚି, ସେ କଥା କିପରି କହି ପାରିବେ ? ନା - ସେଗୁଡ଼ାକ ବଡ଼ ନିରର୍ଥକ କଥା : ଆଗ ବେଲ୍‌ମନ୍ତ୍‌ଟା ତାଙ୍କ ହାତକୁ ଆସିବା ଦରକାର...ସବୁବେଳେ ସତର୍କ ରହିବା ହେଉଚି ସବୁଠାରୁ ବଡ଼ କଥା। "ସେ ମୋର ବୋହୂ ହୋଇ ଆସିଲେ ମୁଁ ତାକୁ ଠିକ୍ ତାଲୀମ ଦେଇ ଦେବି।" ସବୁ ବିଷୟ ବିଚାର କରି ଦେଖିଲେ ସାଲୋନ୍ ଘରର ସେହି ଟୋକୀଟା ଛିଡ଼ା ହୋଇଥିବା ଭୂମିଟିକୁ ଭୁଷୁଡ଼ାଇ ପକାଇବା ହିଁ ସବୁଠାରୁ ବଡ଼ କର୍ତ୍ତବ୍ୟ। ବୁଢ଼ୀ ପ୍ଲାସାକ୍ ସ୍ଥିର କଲେ ଯେ ଟେଲିଗ୍ରାମ୍ ଦ୍ୱାରା ପ୍ରଥମେ ମାଡ଼ାମ୍ ଆଗାଥେଙ୍କୁ ଡ଼କାଇ ଆଣିବା ଦରକାର। କିପରି ଶବ୍ଦ ବସାଇଲେ ଟେଲିଗ୍ରାମ୍‌ଟି ସବୁଠାରୁ ଶସ୍ତାରେ ଯାଇ ପାରିବ, ସେ ଅନେକ ସମୟ ପର୍ଯ୍ୟନ୍ତ ସେହିକଥା ଭାବିଲେ : "ଆସ -ଜରୁରୀ" -ବାସ୍ ଦୁଇଟି ଶବ୍ଦ। ଅଧିକ ସଂକ୍ଷିପ୍ତ ଭାବରେ ଟେଲିଗ୍ରାମ୍‌ଟା ପଠାଇବା ଆଉ ସମ୍ଭବପର ହେଲା ନାହିଁ। ଡ଼ାକଘରେ ବସିଥିବା ସ୍ତ୍ରୀଲୋକଟି କ'ଣ ଭାବିବ ? ଅଃ- ସେ ତ ଏହି ଡ଼ାକଘରକୁ ଏବେ ଆସିଚି, ଡ଼ୋର୍ଥେର ଲୋକମାନଙ୍କ ସମ୍ବନ୍ଧରେ ଜାଣିବାକୁ ତା'ର ବେଶୀ ଆଗ୍ରହ ହୋଇ ନଥିବ।

ଉପରବେଳା ଗଡ଼ିଗଲା ବେଳକୁ ଗାଲିଗାଇ ରୋଷେଇ ଘରର ଦରଜା ପାଖରେ ଆସି ପହଞ୍ଚିଲେ। ମାଡ଼ାମ୍ ପ୍ଲାସାକ୍ ସେତେବେଳକୁ ପିଆଜ ଭାଜୁଥାନ୍ତି।

"ଏଡ଼େ ବେଗି ?"

ଆଗାଥେ ଗୋଟାଏ କଳା ଚମଡ଼ା ବ୍ୟାଗ୍ ହାତରେ ଧରିଥାନ୍ତି। ତାଙ୍କର ବାଁ ଗାଲରେ ଅଳନ୍ଧୁର ଟିକିଏ ଦାଗ ଲାଗିଥାଏ। ହ୍ୟାଟ୍ ବଦଳରେ ସେ ପିନ୍ଧିଥିବା ଅଣ୍ଡିରି ପୁଅଙ୍କର ଟୋପି ପଛରୁ ତାଙ୍କର ବାଳଗୁଡ଼ାକ ଝୁଲି ପଡ଼ିଥାଏ। "ସେ କ'ଣ ଉପରେ ?" — ଆଗାଥେ ପଚାରିଲେ। ହଁ, ସେ ଉପର ମହଲାରେ ଥିଲା। ଆଗାଥେ ସ୍ୱସ୍ତିର ନିଶ୍ୱାସ ମାରିଲେ। ଯେକୌଣସି ପରିସ୍ଥିତି ପାଇଁ ସେ ପ୍ରସ୍ତୁତ ହୋଇ ଆସିଥିଲେ। ଯେ କୌଣସି ପ୍ରକାର ବିପର୍ଯ୍ୟୟର ଗତିରୋଧ କରିବାର କ୍ଷମତା ତାଙ୍କର ଥିଲା, ସେ କଥା ସେ ଭଲ କରି ଜାଣିଥିଲେ। ପ୍ରତ୍ୟେକ ଦିନପରି ଆଜି ମଧ୍ୟ ମାଡ଼ାମ୍ ପ୍ଲାସାକ୍ ଶବ୍ଦର ସାଗର ଭିତରେ ହାତଗୋଡ଼ ପିଟି ପହଁରିବାକୁ ଲାଗିଲେ। ଆରଦିନ ସନ୍ଧ୍ୟା ପୂର୍ବରୁ ସେ ଅନୁକୂଳ କରି ଯାଉନାହିଁ। କିନ୍ତୁ ତେବେ ଚିନ୍ତା କରିବାର ଆଉ କି ବିଷୟ ଥିଲା ?

"ସେ ସେଠାକୁ କେବଳ ଯିବ ଓ ଫେରି ଆସିବ।"

"ଆପଣଙ୍କୁ ସେ ଏହି କଥା କହିଚି ?"

"ହଁ, କହିଚି ପୁଣି କହି ନାହିଁ। ଅଧ୍ୟାପକଙ୍କୁ ସାକ୍ଷାତ୍ ନକରି ସେ ବିବାହ କରି ପାରିବ ବୋଲି ଆଦୌ ଭାବି ପାରୁନାହିଁ। ଛୁଟି ନେବାକୁ ପଡ଼ିବ, କ'ଣ ସବୁ କାଗଜରେ ଦସ୍ତଖତ କରିବାକୁ ପଡ଼ିବ। ..ତା' ପରେ ଆହୁରି କେତେ କଥା ଠିକ୍ କରି ଆସିବାକୁ ହେବ।"

"ଏହି କାରଣଗୁଡ଼ାକ ସେ ଆପଣଙ୍କୁ କହିଚି ?"

"ହୁଏ ତ କହିଚି, ହୁଏ ତ କହି ନାହିଁ। ହୁଏତ ,ସବୁ କଥା ମୁଁ ନିଜେ ଅନୁମାନ କରି କହୁଚି। ତୁମେ ତ ଭାରି ପରାକ୍ରମରେ ଏକ ଅଦ୍‌ଭୁତ ପ୍ରକାରେ ବ୍ୟବହାର କରୁଚ, ମାଡ଼ାମ୍ ଆଗାଥେ।"

ସେତେବେଳକୁ ସେ ରୋଷେଇ ଘର ଖରକିବା ଆରମ୍ଭ କରି ଦେଇଥିଲେ ଓ ତେଣୁ ଉପରକୁ ଆଖି ନ ଟେକି କଥାବାର୍ତ୍ତା କରୁଥିଲେ।

"ଖାଲି ଇଚ୍ଛା କଲେ ତ ହେବ ନାହିଁ, ସବୁ କଥାକୁ ଶକ୍ତି ଥିବା ଦରକାର ।"

ପ୍ରାୟ ଏକପ୍ରକାର ଅତି ମିଷ୍ଟ କଣ୍ଠରେ ଗାଲିଗାଇ କହିଲେ, "ତାର ଅର୍ଥ ?..."
"ତା'ର ଅର୍ଥ କିଛି ନୁହେଁ, ମାଡ଼ାମ୍ ଆଗାଥେ। ମୋ' ଆଡ଼କୁ ତୁମେ କାହିଁକି ଏପରି ଭାବରେ ଅନାଉଚ ? କିନ୍ତୁ ମୋର ପୁଅକୁ ତ ମୁଁ ଭଲ କରି ଚିହ୍ନିଚି । ମୁଁ ପରା ତା'ର ମାଆ ? ଏପରି ମିଷ୍ଟ ସ୍ୱଭାବର ପିଲା ଆଉ କୋଉଠି ନଥିବେ। କିନ୍ତୁ ତଥାପି ତ ସିଏ

ମଣିଷ, ତେଣୁ ଭଲ ମନ୍ଦ ତ ଅବଶ୍ୟ ମିଶିକରି ରହିବ।"

ଭାରି ରାଗିଯାଇ ଗାଲିଗାଇ କହିଲେ ।

"ନିକୋଲାସ୍, ବିଷୟରେ ମୋତେ ପାଠ ପଢ଼ାଇବାକୁ ତୁମକୁ ମୁଁ କହୁ ନାହିଁ।" - ସେ କହିଲେ, "ସେ କ'ଣ ଏକୁଟିଆ ଅଛି ?"

"ହଁ, ଏକୁଟିଆ। ତା'ର ଜିନିଷ ପତ୍ର ବନ୍ଧାବନ୍ଧି କରୁଚି। ଭବିଷ୍ୟତ କଥା ଚିନ୍ତା କରୁଚି। ନିଜର ଜିନିଷ ପତ୍ର ସବୁ ନେଇ ସେ ଯିବ ବୋଲି ବାହାରିଚି। ମନେ ହେଉଚି ଯେପରି ତା'ର ଫେରିବାର କୌଣସି ମତଲବ ନାହିଁ।" ତାଙ୍କ କଥାରେ ଈର୍ଷାର ଟିକିଏ ପରଖ ଲାଗି ରହିଥିଲା।

ମାଡ଼ାମ୍ ଆଗାଥେ ସିଡ଼ି ଉପରକୁ ଅଧା ଉଠି ଯାଇଥିଲେ। ବୃଦ୍ଧା ମାଡ଼ାମ୍ ପ୍ଲାସାକ୍ ଝାଡୁଦେବା ବନ୍ଦ କରି କିଛି ସମୟ ପର୍ଯ୍ୟନ୍ତ କବାଟ ଆଡ଼କୁ ମୁହଁ କରି ଠିଆ ହୋଇ ରହିଲେ।

"ଘୋଡ଼ାକୁ ସମସ୍ତେ ପାଣିକୁଣ୍ଡ ପାଖକୁ ନେଇ ପାରିବେ", ସେ ମନ୍ତବ୍ୟ ଦେଲା ପରି କହିଲେ, "କିନ୍ତୁ ତାକୁ କେହି ପାଣି ପିଆଇ ପାରିବ ନାହିଁ, ମୋ' ମାଆ।"

ମୁଣ୍ଡ ଉପରେ ନିକୋଲାସ୍‌ର କୋଠରୀରୁ ଆସୁଥିବା ଶବ୍ଦ ସେ ଶୁଣିବାକୁ ପାଇଲେ; ଗୋଟାଏ ଚେୟାରକୁ ଘୋଷାରି ସ୍ଥାନାନ୍ତରିତ କରାଯାଉଚି, ଚଟାଣ ଉପରେ ଟ୍ରଙ୍କ୍‌ଟାକୁ ଟାଣି ଅଣାଯାଉଚି। ଦୁଇଜଣଙ୍କ ମଧ୍ୟରେ ହେଉଥିବା କଥାବାର୍ତ୍ତା ଆସି ତାଙ୍କ କାନରେ ବାଜିଲା। ମଝିରେ ମଝିରେ ସବୁ ନୀରବ ହୋଇ ଯାଉଥାଏ। ମାଇ କୁକୁଡ଼ା ପରି କବାଟ ଉପରେ ମୁଣ୍ଡଟାକୁ କଣେଇ କରି ମାଡ଼ି ଧରି ସେ କାନ ଡ଼େରି ଶୁଣିଲେ।

## ସତର

"କବର ଦିଆଯିବାର ବ୍ୟବସ୍ଥାଗୁଡ଼ିକ ମୁଁ ଦେଖିବାକୁ ଆସିଥିଲି ।" -ଗାଲିଗାଇ କହିଲେ, "ସେଦିନ ଭାରି ଭିଡ଼ ହେବ, ଚାରିଆଡୁ ଅନେକ ମଣିଷ ଆସିବେ। ତୁମେ ପ୍ୟାରିସ୍ ଯାଉଚ ବୋଲି ତ ମୋତେ କୌଣସି ଖବର ଦେଇ ନ ଥିଲ ।"

ମେଲା ହୋଇଥିବା ତା'ର ଟ୍ରଙ୍କ୍‌ଟା ଆଗରେ ନିକୋଲାସ୍ ଠିଆ ହୋଇଥିଲା। ଆପଣାର ଭୟଟା ସକାଶେ ତାକୁ ବଡ଼ ଲଜ୍ଜିତ ଲାଗିଲା। ପଡ଼ି ଯିବାରୁ ଗୋଟିଏ ନିଷିଦ୍ଧ କାମ କରି ପକାଇଥିବା ପିଲାଟି ପରି ଧରାପଡ଼ି ଯିବାରୁ ସେ ଭାରି ଲଜ୍ଜା ଅନୁଭବ କଲା।

"ପାରିସ୍‌ରେ ମୋର କେତେକ କାମ ଅଛି। "

"କେବେ ଫେରି ଆସିବ ବୋଲି ଅନୁମାନ କରୁଚ ?"

ଠିକ୍ ଏହିପରି କର୍କଶ କଣ୍ଠରେ ସେ ମେରୀକୁ ମଧ୍ୟ ପ୍ରଶ୍ନ କରିଥାନ୍ତେ। ଗୃହଧାତ୍ରୀ ହିସାବରେ ସେ କୌଣସି ବିଷୟକୁ ହାଲୁକା ଭାବରେ କଦାପି ଗ୍ରହଣ କରୁ ନଥିଲେ। ମୁଣ୍ଡଟାକୁ ତଳକୁ ପୋତିରଖି ସେ ଉତ୍ତର ଦେଲା :

"ସପ୍ତାହକ ଭିତରେ।"

ବିଛଣା ଉପରେ ଖେଲା ହୋଇ ପଡ଼ିଥିବା ତଳପିନ୍ଧା, ସୁଟ୍, ବହିପତ୍ର ଆଡ଼କୁ ଗାଲିଗାଇ ତର୍ଜନୀ ନିର୍ଦ୍ଦେଶ କଲେ। ସତେ ଯେପରି ସେ କ'ଣ ଗୋଟାଏ ଦୋଷ ଦେଖାଇବାକୁ ଯାଉଚନ୍ତି।

"ମୁଁ ଜଣେ ସ୍ୱତନ୍ତ୍ର ମଣିଷ, ନୁହେଁ ?" -ସେ ପଚାରିଲା।

"ମୋ' ପାଖରେ ଖୋଲା ହୋଇ ପାରୁ ନାହଁ କାହିଁକି ?" - ତାଙ୍କର କଣ୍ଠ ସ୍ୱରରେ କୋମଳତା ନ ଥିଲା। ନିକୋଲାସ୍‌ର ନିଶ୍ୱାସ ରୁଦ୍ଧ ହୋଇଗଲା ପରି ଲାଗିଲା। ଯେପରି ସେ ଗୋଟା ସୁଦ୍ଧା ଯନ୍ତା ଭିତରେ ପଡ଼ିଗଲା। ତଥାପି ବଡ଼ ଅପ୍ରତ୍ୟାଶିତ ଭାବରେ ସେଠାରେ ତାକୁ ଗୋଟାଏ ଜଳାବାଟ ମିଳିଗଲା। ସେହିବାଟେ ସେ ଉପରକୁ ଚାହିଁଲା।

"ଆଚ୍ଛା, ଯଦି ତୁମେ ଖୁବ୍ ଜିଦ୍ କରୁଚ, ତେବେ ମୁଁ ସବୁ ଖୋଲି କରି କହିଦେଉଚି।"

"ଏଠାରେ ମୁଁ ନଥିଲା ବେଳେ ଯାହାସବୁ ଘଟିଚି, ମୋତେ ସବୁ କହିବାକୁ ହେବ। ନିଶ୍ଚୟ କିଛି ଘଟିଚି -ସେ ଘଟଣାଟା କ'ଣ ?"

ସେ ନିକୋଲାସ୍‌ର ବିଲ୍‌କୁଲ୍ ପାଖକୁ ଆସିଯାଇଥିଲେ, ଟିକିଏ ଡ଼ିମା ଡ଼ିମା ଆଖି କରି ସେ ତା' ଆଡ଼କୁ ଅନାଇଥାନ୍ତି। ଆଖିରୁ ପିଛୁଳା ପଡୁ ନଥାଏ। ନିକୋଲାସ୍ ଘୁଞ୍ଚି ଠିଆହେଲା।

"ତୁମେ ସିଧା ଟ୍ରେନ୍‌ରୁ ଆସିଚ" - ସେ କହିଲା, "ଟିକିଏ ହାତ ମୁହଁ ଧୋଇ ପକାଅ।"

ଟିକିଏ ଅପ୍ରତିଭ ହୋଇପଡ଼ି ଗାଲିଗାଇ ଦର୍ପଣକୁ ଅତିକ୍ରମ କରି ଚାଲିଗଲେ। ଗାତ୍ରକୁଞ୍ଚନ କରି କହିଲେ :

"ତୁମକୁ କ'ଣ ସେଇଥିପାଇଁ ଅଶ୍ୱସ୍ତି ଲାଗୁଚି ?"

"ଅଶ୍ୱସ୍ତି ଲାଗିବାର ଅନେକ ବିଷୟ ମୋର ଅଛି। ଦୃଷ୍ଟାନ୍ତ ସ୍ୱରୂପ, ଡୁବେର୍ନେଟ୍ ପରିବାର ତୁମକୁ ଦେଉଥିବା ଇନାମ୍‌ଟାର ଅର୍ଥ କ'ଣ ?...ମୋ'ର ଅନୁମାନ, ଡ଼ୋର୍ଥେର ଲୋକମାନେ ଯାହାସବୁ କହୁଚନ୍ତି, ତୁମେ ସେ ସବୁ ଜାଣିଚ।"

"ଆର୍‌ମାଣ୍ଡ ଡୁବେର୍ନେଟ୍ ଆଉ ମୋ' ବିଷୟରେ ?"

ଅଧିକ ନିଶ୍ଚିତ ହୋଇଗଲା ପରି ସେ ହସିଲେ। ନିକୋଲାସ୍ ପ୍ରତିବାଦ ଜଣାଇଲା।

"ଅବଶ୍ୟ ମୁଁ ଏସବୁ କଥା ବିଶ୍ୱାସ କରୁଚି ବୋଲି ତୁମକୁ କହୁନାହିଁ -ତୁମର ସେପରି

ଅନୁମାନ କରିବା ଉଚିତ ନୁହେଁ। ତୁମେ ଓ ଆରମାଣ୍ଡ ଡୁର୍ବେର୍ନଟ୍" —ସେ ଗାତ୍ରକୁଞ୍ଚନ କଲା - "ହୁଏ ତ ଏପରି ଗୋଟାଏ କଥା ତୁମେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିବ -ତୁମେ ତ ଜାଣିଚ, ମୁଁ ଏକାବେଳେକେ ନିର୍ବୋଧ ନୁହେଁ।"

"ତା'ହେଲେ ଏଇ କଥା।"

ବିଚାରା ବ୍ୟର୍ଥବଳ ନିକୋଲାସ୍, ତା'ର ସମସ୍ତ ରକ୍ଷାବ୍ୟୂହ ଏଇଠି ଭାଙ୍ଗିପଡ଼ିଲା। ପ୍ରଥମେ ଯାହା କହିଥିଲା, ସେହିଠାକୁ ପୁଣି ଫେରିଯିବା ପାଇଁ ସେ ଏକ ବ୍ୟର୍ଥ ପ୍ରୟାସ କରିବାକୁ ଲାଗିଲା - "ତଥାପି, ସମସ୍ତେ ସେହି କଥା ବାର୍ତ୍ତା କରୁଚନ୍ତି -ମୁଁ ଏସବୁ ଶୁଣି ଆଉ କ'ଣ ଭାବନ୍ତି ? ତଥାପି ମୋର ଶପଥ ଯାହା ଥିଲା, ଠିକ୍ ତାହାହିଁ ଅଛି।" ତାକୁ ଦେଖିଲା ବେଳକୁ ସତେ କେଡ଼େ ଶୋଚନୀୟ ମନେ ହେଉ ନଥିଲା । ମୁଣ୍ଡ ଉପରକୁ ଗୋଟାଏ ବଡ଼ ବୋଝ ଓହ୍ଲାଇ ଗଲା ପରି ସେ ଅନୁଭବ କରୁଥାନ୍ତି। "ତା'ହେଲେ କଥାଟା ହେଉଚି ଏଇଆ।" -ସେ ପୁଣି କହିଲେ। ସେ ଅନେକ ଉଶ୍ୱାସ ଅନୁଭବ କରୁଥାନ୍ତି, ମନେ ମନେ ବେଶ୍ ଆନନ୍ଦିତ ହେଉଥାନ୍ତି। "ତୁମେ ସତେ କେଡ଼େ ସରଳବିଶ୍ୱାସୀ, କେଡ଼େ ନିର୍ବୋଧ, ପ୍ରିୟତମେ।" ନିକୋଲାସ୍‌କୁ ଆଲିଙ୍ଗନ କରିବାର ଇଚ୍ଛା ପ୍ରକଟ କଲା ପରି ସେ ଏକ ଅସ୍ୱାଭାବିକ ଦେହଭଙ୍ଗୀ କରିବାକୁ ଲାଗିଲେ, କିନ୍ତୁ ସେ ରକ୍ଷା ପାଇବାକୁ ଦୂରକୁ ଖସିଗଲା। ତା'ର ଏହି ଅବୋଧ ଆଚରଣକୁ ସେ ଅବଶ୍ୟ କ୍ଷମା କଲେ, କିନ୍ତୁ ପ୍ରାୟ ବର୍ବରୋଚିତ ଭାବରେ ସେ ତା'ର ଗାଲରେ କଅଁଳ, ଚଟକଣାଟିଏ ଦେଲେ।

"ଗୋଟିଏ ଚଟକଣାରେ ହିଁ ତୁମେ ଆତ୍ମସମର୍ପଣ କରି ପକାଅ।..ତୁମେ କେଡ଼େ ଦୁର୍ବଳ ସତେ ? ସୌଭାଗ୍ୟବଶତଃ ମୋ' ଭିତରେ ଦୁଇଜଣଙ୍କର ମନର ବଳ ରହିଚି। ତା' ହେଲେ ତୁମେ ଭାବି ନେଇଥିଲ ଯେ ତୁମ ପାଇଁ ବେଲ୍‌ମନ୍ତଟାକୁ ଦେଇ ପାରିବି ନାହିଁ । ଆଚ୍ଛା। -ମୁଁ ତୁମକୁ କ୍ଷମା କରୁଚି। ଏ ବିଷୟରେ ମୁଁ ତୁମକୁ ଆଉ କିଛି କହିବି ନାହିଁ। " ନିକୋଲାସ୍ ଯେତେ ଯାହା କଲେ ମଧ୍ୟ ଆଉ ଗାଲିଗାଇର କବଳରୁ ନିସ୍ତାର ପାଇବାର କୌଣସି ଉପାୟ ନାହିଁ। ସେ ଅନୁଭବ କଲା, ଯେପରି ସମସ୍ତ ଆଶା ପ୍ରତିହତ ହୋଇ ପଡ଼ିଲାଣି। ନାକଟାକୁ ଟେକିଲା ବେଳକୁ ପାଟି ଭିତରୁ ତାଙ୍କର ଦାନ୍ତ ଗୁଡ଼ାକ ଦେଖାଗଲା..ଆଗରୁ ସେ କେବେ ଏପରି ଦୀର୍ଘ ସମୟ ଧରି ହସି ନଥିଲେ। ଅନୁକମ୍ପା ଦେଖାଇବା ପରି ସେ ଆପଣାର ଦୁଇ ହାତକୁ ତା'ଆଡ଼କୁ ବଢ଼ାଇ ଦେଲେ -ବାହୁ ଦୁଇଟାକୁ ସିଧା କରି ଲମ୍ବାଇ ଦେଲେ -ଠିକ୍ କୁମାରୀ ମେରୀଙ୍କର ଛୋଟ ପ୍ଲାଷ୍ଟର ମୂର୍ତ୍ତିର ହାତ ଦୁଇଟି ପରି । କିନ୍ତୁ ନିକୋଲାସ୍ ତାହା ଗ୍ରହଣ କଲା ନାହିଁ।

"ନିଷ୍ଚୟ ତୁମେ ଗୋଟିଏ ହେଲେ କଥା ବିଶ୍ୱାସ କରି ନାହଁ। ତଥାପି ଲୋକେ କ'ଣ କହୁଥିଲେ, ସେଇଥି ପାଇଁ ତୁମେ ଆତଙ୍କିତ ହୋଇ ପଡ଼ିଲ ...ନା, ମୋ' କଥାରେ ବାଧା

ଦିଅ ନାହିଁ...ଏହି କଥା ମୁଁ ସ୍ପଷ୍ଟ କହି ଦେବାକୁ ଚାହେଁ ଯେ ମୋ' ପାଖରେ କାହାରି କୌଣସି ମୂଲ୍ୟ ନାହିଁ, କାହାରି ଅସ୍ତିତ୍ୱ ନାହିଁ, କେବଳ ତୁମକୁ ବାଦ୍ ଦେଲେ। ତୁବେର୍ନେଟ୍‌ଙ୍କର ବଦାନ୍ୟ ଦାନ ମୁଁ ଗ୍ରହଣ କରିବି ନାହିଁ। ବାସ୍, ସେ ସବୁ କଥା ଏତିକିରେ ମେଣ୍ଟି ଯାଉ। ସେ ବିଷୟରେ ଆଉ ଚିନ୍ତା କରିବା ଉଚିତ ନୁହେଁ। ଅନ୍ତତଃ ମୋ' ଆଡୁ ଏହି ପ୍ରତିବନ୍ଧକଟିକୁ ମୁଁ ନଷ୍ଟ କରିଦେଉଚି। "

ପ୍ରତିବନ୍ଧକଟି ନଷ୍ଟ କରି ଦେଲେ ବୋଲି ସେ କ'ଣ ପ୍ରକୃତରେ ଭାବୁଥିଲେ ? ନିଶ୍ଚୟ ସେ ଭାବୁଥିଲେ ! -ଜୟଲାଭ କରିବା ବିଷୟରେ ତାଙ୍କ ମନରେ କୌଣସି ସନ୍ଦେହ ନଥିଲା।

"ତୁମେ ପାଗଳ ହୋଇଗଲ ନା କ'ଣ ?" ସେ କହିଲା, "ଏପରି ଏକ ତ୍ୟାଗ ସ୍ୱୀକାର କରିବା ପାଇଁ ମୁଁ ତୁମକୁ କିପରି ସମ୍ମତି ଦେଇ ପାରିବି ? -ବିଶେଷ କରି ଯେତେବେଳେ ତା'ର ପ୍ରତି ବଦଳରେ ତୁମକୁ ଦେବାଲାଗି ମୋ' ପାଖରେ କୌଣସି ଜିନିଷ ନାହିଁ ! କିଛି ନାହିଁ ! ତୁମେ ହୃଦୟଙ୍ଗମ କରୁଚ ତ ? ଆଦୌ କିଛି ନାହିଁ।"

ନିକୋଲାସ୍ ଟଙ୍କା ପଇସା ଓ ସମ୍ପତ୍ତିର କଥା ପକାଇଚି, ଗାଳିଗାଇ ଏହିପରି ଭାବିବାର ଛଳନା କରିବାକୁ ଲାଗିଲେ।

"କିନ୍ତୁ ଯାହାକୁ ତୁମେ କିଛି ନାହିଁ ବୋଲି କହୁଚ, ସେଇ ତ ମୋର ସବୁ! ତୁମେ କଣ ଜାଣି ପାରୁ ନାହଁ ସଂସାରରେ ତୁମ ଆଉ ମୋ ବ୍ୟତୀତ ଆଉ କୌଣସି ପଦାର୍ଥ ନାହିଁ ?"

ତଥାପି ସେ ସ୍ମିତ ମୁଖରେ ତା' ଆଡ଼କୁ ଅଗ୍ରସର ହେଲେ ଆହୁରି ଥରେ ହାତ ଦୁଇଟିକୁ ଲମ୍ୱାଇ ଦେଲେ। କଙ୍କଡ଼ା ବା ଅଷ୍ଟ ପଦୀର ଗୋଡ଼ଗୁଡ଼ାକ ହୁଏତ ନିକୋଲାସ୍‌କୁ ଅଧିକ ଭୟଭୀତ କରି ପାରିନଥାନ୍ତା। ତା' ପାଖକୁ ମାଡ଼ି ଆସି ତାକୁ କାମୁଡ଼ି ଧରିବା ପୂର୍ବରୁ ଗୋଟାଏ ମାଡ଼ରେ ସେ ସେହି ଗୋଡ଼ ଗୁଡ଼ାକୁ ଛଡୁ କରିଦେଇ ପାରନ୍ତା କି !

"ଆଗାଥେ, ତୁମକୁ ମୁଁ ଏ ପର୍ଯ୍ୟନ୍ତ ମିଛ କହୁଥିଲି -ମୋତେ ଭୟତ୍ରସ୍ତ କରି ପକାଉ ଥିବା କୌଣସି ଏକ ବିଷୟରୁ ରକ୍ଷା ପାଇବାର ଆଳ ଦେଖାଇ ମୁଁ ଏପରି କରୁଥିଲି।"

ଇଚ୍ଛା ନକରୁ ଥିଲେ ମଧ୍ୟ ଏହି କଥା ଗୁଡ଼ାକ ତା'ର ପାଟିରୁ ବାହରିଗଲା -ତାକୁ ଭାରି ଆଶ୍ୱସ୍ତ ଲାଗୁଥାଏ। ପରିଶେଷରେ ଯାହା ହେଉ ସେ ଯେଉଁ ମାଡ଼ଟା ମାରିଲା, ସେଥିରୁ ରକ୍ଷା ପାଇବାର କୌଣସି ଉପାୟ ନାହିଁ। ତାଙ୍କର ହାତ ଦୁଇଟା ନଥକରି ଦୁଇକଡ଼କୁ ଖସି ପଡ଼ିଲା। ଘରେ ପ୍ରବେଶ କଲାବେଳେ ଯେଉଁ କଳା ଚମଡ଼ା ବ୍ୟାଗ୍‌ଟିକୁ ସେ ଚେୟାର ଉପରେ ରଖିଦେଇଥିଲେ, ତାହାରି ଆଡ଼କୁ ହାତ ବଢ଼ାଇଲେ। ସେଥିରୁ ରୁମାଲଟିଏ ବାହାର କରି ମୁହଁ ପୋଛିଲେ ଏବଂ ପୁଣି ନିକୋଲାସ୍‌ର ସମ୍ମୁଖକୁ ଆସିଲେ। ପ୍ରତିବନ୍ଧକଟାକୁ ଦୂର କରିଦେବା ତାଙ୍କର ଇଚ୍ଛା ଥିଲା। ସେ ଭାବୁଥିଲେ ଯେ ବିବାହର ଦୈହିକ ପ୍ରକରଣଟାର କଳ୍ପନା କରି ନିକୋଲାସ୍ ତା'ର ମନ ଭିତରେ ଯେଉଁ ତ୍ରାସ ଅନୁଭବ କରୁଥିଲା, ତାହାହିଁ ଯାବତୀୟ

ପ୍ରତିବନ୍ଧକ ସୃଷ୍ଟି କରୁଚି। ଯୌବନର ପ୍ରାକ୍ କାଳରେ ସମସ୍ତେ ଠିକ୍ ଏହିପରି ଅନୁଭବ କରନ୍ତି, - ନାରୀଜାତି ସମ୍ବନ୍ଧରେ ଏତିକି ବ୍ୟତୀତ ସେମାନେ ଆଉ କିଛି ଭାବି ପାରନ୍ତି ନାହିଁ। ତେଣୁ ନିର୍ଦ୍ଦିଷ୍ଟ ଭାବରେ ତାଙ୍କରି ଯୋଗୁଁ ଯେ ନିକୋଲାସ୍ ମନରେ ଏହି ଭୟର ଉଦ୍ରେକ ହୋଇଥିଲା, ତାହା ନୁହେଁ। ଆଗାଥେ ଡ଼ି କାମ୍‌ବ୍ଲେନେସ୍‌ଙ୍କ ଯୋଗୁଁ ମଧ୍ୟ ନୁହେଁ। ଅତି ଧୀର ଓ ପ୍ରକୃତିସ୍ଥ ଭାବରେ ସେ ବୁଝାଇବାକୁ ଆରମ୍ଭ କଲେ।

"ନିକୋଲାସ୍, ତୁମେ ଯେଉଁ ଭୟର କଥା ଚିନ୍ତା କରୁଚ, ତାହା ମୁଁ ଠିକ୍ ଅନୁମାନ କରିପାରୁଚି। ସେଦିନ ଉଦ୍ୟାନ ଭିତରେ ବସି ପରସ୍ପର ପାଖରେ ପ୍ରତିଜ୍ଞାବଦ୍ଧ ହେଲାବେଳେ ତୁମେ ଏହି ବିଷୟରେ ତ କୌଣସି ସୂଚନା ହିଁ ଦେଇ ନଥିଲ । ଏପରିକି ତୁମେ ତ ଈଶ୍ୱରଙ୍କର ଉକ୍ତି ଉଦ୍ଧାର କରି କହିଥିଲ, - "ମୋତେ ସ୍ପର୍ଶ କର ନାହିଁ ।" କିନ୍ତୁ ସବୁକଥା ମୁଁ ସମ୍ପୂର୍ଣ୍ଣ ଭାବରେ ବୁଝି ପାରୁଥିଲି, ତୁମର ସେଥିପାଇଁ ଭୟ କରିବାର କୌଣସି କାରଣ ନଥିଲା। ତୁମ ପାଖରୁ ମୁଁ କିଛି ଆଶା କରୁ ନାହିଁ, ମୁଁ କେବଳ ତୁମର ଛାୟାକୁ ଆଶ୍ରୟ କରି ରହିବାକୁ, ତୁମର ସେବା କରିବାକୁ ଚାହୁଁଚି - ସେ ଦିନ ମୁଁ ଠିକ୍ ଏହି ଉତ୍ତର ଦେଇଥିଲି। ଆଉ ମୋ' କଥା ଶୁଣି ସାରିବା ପରେ ତୁମେ ଏହି ମୁଦିଟି ମୋର ଆଙ୍ଗୁଠିରେ ପିନ୍ଧାଇ ଦେଇଥିଲ। "

ତାଙ୍କର କଣ୍ଠ ସ୍ୱର ବେଶ୍ ବିନୀତ, ଆବେଗମୟ ଓ ପ୍ରବର୍ତ୍ତନା ପୂର୍ଣ୍ଣ ହୋଇ ଆସିଥିଲା। ତାକୁ ମୁଦିଟି ଦେଖାଇବା ଉଦ୍ଦେଶ୍ୟରେ ସେ ହାତକୁ ଟେକି ଧରିଲେ। ନିକୋଲାସ୍ ଆତ୍ମଗୋପନ କରି ରହି ପାରିବା ଭଳି କୌଣସି ନୂତନ ଘଟଣା ଯେ ଘଟି ନାହିଁ, ଏହି ବିଷୟରେ ତା'ର ହୃଦ୍‌ବୋଧ ଜନ୍ମାଇବା ଲାଗି ସେ ବଦ୍ଧ ପରିକର ହୋଇ ଥିବା ପରି ମନେ ହେଉଥିଲା। ପ୍ରକୃତରେ ତ ସେପରି କିଛି ଘଟି ନଥିଲା । ତାଙ୍କର ବିଜୟ ବହୁ ପୂର୍ବରୁ ସମ୍ପୂର୍ଣ୍ଣ ହାସଲ ହୋଇ ସାରିଥିଲା। ଆଉ କ'ଣ କରିବାର ବାକୀ ରହିଚି ବୋଲି ସେ ଭାବି ପାରିଲେ ନାହିଁ। ତଥାପି ନମ୍ର ଅଥଚ ଅପରାଭୂତ ଭାବରେ ସେ କହିବାକୁ ଲାଗିଲେ :

"କେବଳ ତୁମରି ସେବା କରିବାକୁ, - ଆଉ କୌଣସି କଥା ନୁହେଁ। ମୁଁ ରାଣ ପକାଇ କହୁଚି ।"

"ସତ କହୁଚ ଆଉ କିଛି ନୁହେଁ ?"

ନିକୋଲାସ୍ ବଡ଼ ପାଟିରେ କଦାପି ହସେ ନହିଁ, କେବଳ ମୁରକି ହସେ। ହଠାତ୍ ହାସ୍ୟରୋଳ ଉଠାଇ ସେ କହିଲା :

"ଆଉ କିଛି ନୁହେଁ ? କିନ୍ତୁ ଭୟ ବିଷୟରେ କହିଲାବେଳେ ମୁଁ ଠିକ୍ ସେହି କଥା ଚିନ୍ତା କରୁଥିଲି।"

ତାପରେ ଟିକିଏ ଧୀର କଣ୍ଠରେ ସେ କହିଲା :

"ପ୍ରକୃତରେ ମୁଁ ସେହି କଥାଟା ଉପରେ କୌଣସି ଗୁରୁତ୍ୱ ଦେଇ ନଥିଲି, - ଏହି ଅଭାବନୀୟ ବିଷୟଟି ଉପରେ। କାଲି ବା ଭବିଷ୍ୟତରେ ଆଉ କୌଣସି ଦିନ ସେହି ବିଷୟ ନେଇ ଆମ ଦୁହିଁଙ୍କ ଭିତରେ କୌଣସି ସମସ୍ୟା ଉପୁଜିବ ବୋଲି ମୁଁ ଆଦୌ ଭାବି ନଥିଲି," -ତା'ର କଣ୍ଠ ସ୍ୱରରେ ଏକ କ୍ରୋଧସୂଚକ ଆବେଗ ପ୍ରକାଶ ପାଉଥିଲା।

ସାଧାରଣତଃ ମିଷ୍ଟ ସ୍ୱଭାବର ଲୋକମାନେ ଯେତେବେଳେ କ୍ରୁଦ୍ଧ ହୋଇପଡ଼ନ୍ତି, ସେତେବେଳେ ତାହା ଦେଖିବାକୁ ଅତି ଭୟଙ୍କର ବୋଧ ହୁଏ। ଆଗରୁ ନିକୋଲାସ୍ ବ୍ୟବହାରରେ ସେ କୌଣସି ବନ୍ଧୁତାର ପରିଚୟ ପାଇନଥିଲେ। ଆପଣା ଭିତରେ କେଉଁ ଗଭୀରରେ ପୋତା ହୋଇ ରହିଥିବା ଘୃଣାକୁ ଯେପରି ସେ ଉଦ୍‌ଗାର କରି ପକାଉଥିଲା।

"ତୁମର ଘନିଷ୍ଠ ନିକଟକୁ ନ ଆସିଥିଲେ ମଧ୍ୟ, ତୁମକୁ ସ୍ପର୍ଶ ନ କଲେ ମଧ୍ୟ, ପ୍ରତ୍ୟେକ ଦିନ ଓ ପ୍ରତ୍ୟେକ ରାତିରେ ତୁମ ସହିତ ଏକତ୍ର ବାସ କରିବା ମୁଁ ଅସମ୍ଭବ ବୋଲି ମନେ କରୁଚି। ତା' ଅପେକ୍ଷା ବରଂ ମୋ'ର ମରିଯିବାହିଁ ଭଲ ହେବ। "

ଗୋଟାଏ ସୁତୀକ୍ଷ୍ଣ ଚିତ୍କାର କଲା ପରି ସେ ଶବ୍ଦ କଲେ। କିନ୍ତୁ ନିକୋଲାସ୍‌ର ସମସ୍ତ କଥାର ମର୍ମ ଯେ ସେ ବୁଝିପାରୁନଥିଲେ, ଏହା ଅତି ସ୍ପଷ୍ଟ ହୋଇଯାଉଥିଲା।

"ନାଁ -", ଅନୁନୟ କରି ସେ କହିଲେ, "ତୁମକୁ ମୁଁ ହରାଇଲି ବୋଲି ତୁମେ କଦାପି କହନାହିଁ।"

ନିକୋଲାସ୍ ଆଉ ପ୍ରକୃତିସ୍ଥ ହୋଇ ନଥିଲା।

"ତୁମେ ମୋତେ ପ୍ରକୃତରେ ହରାଇ ନାହଁ।" -ସେ ପାଟିକରି କହିଲା : 'ଦିନକ ସକାଶେ ମଧ୍ୟ ଯାହା ତୁମର ହୋଇ ନଥିଲା, ତାହାକୁ ତୁମେ ଆଉ ହରାଇବ କ'ଣ ? ଆଉ ଦୁହିଁଙ୍କ ମଧ୍ୟରେ ବହୁ ଦୂର ବ୍ୟାପୀ ଶୂନ୍ୟ ଓ ବୃହତ୍ ଗିରିଗର୍ଭର ବ୍ୟବଧାନ ରହିଚି।"

ଆଖି ବୁଜିଲା ପରି ତା'ର ମନକୁ ଯାହା ଆସୁଥିଲା, ସେ ସେହିକଥାର ବାଣ ମାରିବାରେ ଲାଗିଥିଲା। ତଥାପି ତାକୁ ଅବିରାମ ବାଣ ମାରିବାକୁ ହିଁ ପଡ଼ିବ।

"ମୋ' ଲାଗି କିଛି ଅବଶିଷ୍ଟ ରଖିଯାଅ" -ସେ ବଡ଼ ଅନୁନୟ କରି କହିଲେ : - "ଲେରୋଟ୍ ନଦୀ କୂଳରେ କାଷ୍ଟଲନ୍ ରାସ୍ତାରେ ସେଦିନ ସନ୍ଧ୍ୟାର ସ୍ମୃତିଟିକକ ମୋ' ପାଇଁ ଅବଶିଷ୍ଟ ରଖିଯାଅ।"

ତାଙ୍କର ହାତ ମୁଠାର ଯାବକୁ ସେ କଦାପି ହୁଗୁଳା କରିବେ ନାହିଁ, -କଦାପି ନୁହେଁ। କିନ୍ତୁ ନିକୋଲାସ୍ ମଧ୍ୟ ହଟିଯିବାର ନୁହେଁ। "ସତ କଥାଟା ମଧ୍ୟ ତୁମର ଜାଣି ରଖିବା ଉଚିତ। ସେଦିନ ସନ୍ଧ୍ୟା ପରି ମୋ' ଜୀବନରେ ଆଉ କୌଣସି ଦିନ ମୁଁ ତୁମଠାରୁ ଏତେ

ଦୂରକୁ ଚାଲି ଯାଇଥିବାର ଅନୁଭବ କରିନଥିଲି। ମନେ ହେଉଥିଲା ଯେପରି ଆମ ଦୁହିଁଙ୍କ ଭିତରେ ଅନନ୍ତ, ବ୍ୟବଧାନମାନ ଦଣ୍ଡାୟମାନ ହୋଇ ରହିଚି।"

ଗୋଟାଏ ମରଣାନ୍ତକ ଆଘାତ ପାଇଲା ପରି ତାଙ୍କର ମୁହଁ ଦେଖି ମନେ ହେଉଥାଏ। ତାଙ୍କର ଦୁଇଟା ଯାକ ହାତ କାନ୍ଧର ଦୁଇ ପାଖରେ ତଳକୁ ଝୁଲିପଡ଼ିଥାଏ।

"ତେବେ କାହିଁକି ତୁମେ ସମ୍ମତ ହେଲ, କାହିଁକି କଥା ଦେଲ...।"

ସେ ଆଉ ଅଧିକ କିଛି କହି ପାରିଲେ ନାହିଁ। ସେହି ମୁହୂର୍ତ୍ତରେ ତାଙ୍କ ସହିତ ସମ୍ପୂର୍ଣ୍ଣ ହିସାବ ନିକାଶ କରିଦେବା ନିକୋଲାସ୍ ପାଇଁ ଭାରି ସହଜ ହୋଇଥାନ୍ତା। ତା'ର ହାତ ମୁଠାରେ ଯେପରି ସେ କାହାର ତଣ୍ଟିକୁ ଚିପିଧରିଚି ! ଧୀରେ ଧୀରେ ଆପଣାର ମୁଠାଟିକୁ ସେ ଶିଥିଳ କରି ଆଣିଲା।

"ଆଗାଥେ !" -ସେ ଚିତ୍କାର କରି କହିଲା, " ଏହା ଅତି ଭୟଙ୍କର !"

ଭୟବିହ୍ୱଳ ହୋଇ ସେ ସମ୍ମୁଖରେ ଦଣ୍ଡାୟମାନ ହୋଇଥିବା ମନୁଷ୍ୟପ୍ରାଣୀଟି ଉପରେ ଦୃଷ୍ଟିପାତ କରିବାକୁ ଲାଗିଲା। ସତେ ଅବା ତାହାକୁ ସେ ଆଉ ଚିହ୍ନିପାରିଲା ନାହିଁ।

"ମୋ' ସଂଗେ ସଂଗେ ମୋର କଥାଗୁଡ଼ାକ ମଧ୍ୟ ମୋ'ଠାରୁ ବାହାରି ପଳାଇଲା। ମୁଁ ଯାହା ସବୁ କହିଗଲି, ସେଗୁଡ଼ାକ ଆଦୌ ସତ୍ୟ ନୁହେଁ।"

ଆଗାଥେଙ୍କର ସରୁଆ କାନ୍ଧଟି ଉପରେ ସେ ଆପଣାର ହାତ ରଖିଲା। ତାଙ୍କୁ ଆପଣା ଆଡ଼କୁ ଯାକି ଆଣିଲା। ନିଶ୍ୱାସ ଅଟକିଗଲା ପରି ସେ ଗୋଟାଏ ଶବ୍ଦ କଲେ। ନିକୋଲାସ୍ କହିଲା :

"ମୁଁ ଜାଣେ, ମୁଁ ବଡ଼ ଖରାପ ବ୍ୟବହାର କରିଚି। କିନ୍ତୁ ତୁମର ଜାଣିବା ଉଚିତ ଯେ ମୁଁ ତୁମରି ପକ୍ଷ ଲଢୁଥିଲି। "

ସେହି ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଅର୍ଦ୍ଧମୃତ ପରି ମନେ ହେଉଥିଲେ, କିନ୍ତୁ ହଠାତ୍ ଏହି ମୁହୂର୍ତ୍ତରେ ରାଗ ଚଢ଼ିଗଲା ପରି ସେ ଆପଣାକୁ ତା' ପାଖରୁ ମୁକ୍ତ କରିନେଇ କହିଲେ :

"ମୋ' ଆଗରେ ଆଉ ସେ ସବୁ ଘଟଣା ବର୍ଣ୍ଣନା କରିବାର କୌଣସି ଆବଶ୍ୟକତା ନାହିଁ। ଏହି ଘରକୁ ଏହାହିଁ ହେଉଚି ମୋର ଶେଷ ଆସିବା।"

ଆପଣାର ହାତ ଦୁଇଟି ଭିତରେ ତାଙ୍କର ମୁହଁଟି ଧରି ନିକୋଲାସ୍ କହିଲା : "ମୋ' ଆଡ଼କୁ ଅନାଅ ! ମୋ'ର ଅନୁରୋଧ, ମୋ' ଆଡ଼କୁ ଥରେ ଅନାଅ ! ତୁମକୁ ମୁଁ କେତେ କେତେ ଦୁଃଖ ଦେଇଚି ! ତୁମେ ଆଉ ମୁଁ -ଦୁହେଁ ଦୁହିଁଙ୍କୁ ହତ୍ୟା କରିବା ଉଚିତ ଥିଲା। ମୁଁ ଠିକ୍ କହୁଚି ନା ଭୁଲ କହୁଚି ?"

ଗଅଁ ଗଅଁ ହେଲା ପରି ସେ କହିଲେ :

"ତା' ହେଲେ ସେକଥା ହୃଦୟଙ୍ଗମ କରିବା ଲାଗି ତୁମେ ଆଜିଯାଏ ଅପେକ୍ଷା କରିଥିଲ କାହିଁକି ?"

"ହଁ, ମୋ'ର ବିଳମ୍ବ ହୋଇଯାଇଚି। କିନ୍ତୁ ଭଗବାନଙ୍କର କୃପାରୁ ଅତିରିକ୍ତ ବିଳମ୍ବ ହୋଇନାହିଁ। ତୁମର ଜୀବନକୁ ନୂତନ କରି ଆରମ୍ଭ କରିବାକୁ ବର୍ତ୍ତମାନ ମଧ୍ୟ ସମୟ ଅଛି। "

ପୁଣି ଥରେ ତାଙ୍କର କାନ୍ଧ ପାଖରୁ ଧରି ସେ ତାଙ୍କର ଆଖି ଆଡ଼କୁ ଅନାଇଲା। କିନ୍ତୁ ସେ ମୁହଁଟାକୁ ବୁଲାଇ ନେଲେ। ନିକୋଲାସ୍ ଯେ ଆର୍‌ମାଣ୍ଡ୍ ଡୁବେର୍ନେଟ୍‌ଙ୍କ କଥା ଭାବୁଚି, ସୌଭାଗ୍ୟବଶତଃ ସେ ଏହିକଥା ହୃଦୟଙ୍ଗମ କରି ପାରିନଥିଲେ।

"ତୁମ ବ୍ୟତୀତ ଏକ ଜୀବନ।"

ସେ କାନ୍ଦୁଥିଲେ, ତାଙ୍କର ଆଖିରୁ ଅତ୍ୟୁଷ୍ଣ ଲୁହ ଟୋପାମାନ ଗଡ଼ି ଆସୁଥିଲା। ତାଙ୍କର ମୁହଁଟା ବଡ଼ ଛୋଟ ଦେଖାଯାଉ ଥାଏ। ଅନୁକମ୍ପା ଅଥବା ଲଜ୍ଜା ହେତୁ ନିକୋଲାସ୍ ଆଉ ସେହି ମୁହଁକୁ ଅନାଇ ପାରିଲା ନାହିଁ। ସେ ଟିକିଏ ବିଚଳିତ ହୋଇଗଲା ପରି ଅନୁଭବ କରୁଥାଏ। ତାଙ୍କର ହାତ ଧରି ସେ ତାଙ୍କୁ ବିଛଣା ଉପରେ ନେଇ ବସାଇଦେଲା। ନିଜେ ଯାଇ ତାଙ୍କ ପାଖରେ ବସିଲା ଓ ତାଙ୍କର କାନ ପାଖରେ ମୁହଁଟାକୁ ପ୍ରାୟ ଗୁଞ୍ଜି ଦେଇ କହିବାକୁ ଲାଗିଲା :

"ମୋର ଏପରି ଆଚରଣ କରିବାର କାରଣ ରହିଚି, ଆଗାଥେ। ମୁଁ ମୋ'ର ଦୋଷ ସ୍ୱୀକାର କରିନେଉଚି, କିନ୍ତୁ ତଥାପି ତୁମକୁ ମୋ'ର କଥା ବୁଝିବାକୁ ପଡ଼ିବ। ମୁଁ ତୁମର ସେଇ ଅତି ଭୟଙ୍କର ଇଚ୍ଛାଶକ୍ତିର କବଳରେ ପଡ଼ିଯାଇଚି, -ଗୋଟାଏ ଅନ୍ଧ ଓ ପ୍ରାୟ ପାଶବିକ ଅଦମ୍ୟତା ସହିତ ତୁମର ଯେଉଁ ଇଚ୍ଛାଶକ୍ତି ଯେକୌଣସି ପ୍ରତିବନ୍ଧକ ଉପରକୁ ତୁମକୁ ନିକ୍ଷିପ୍ତ କରିଦିଏ। ମୋ'ର ସମସ୍ତ ଦୁର୍ବଳ ରକ୍ଷାବନ୍ଧକୁ ତୁମେ ଠେଲିଦେଇ ଚାଲିଗଲ, ତୁମର ପଛେ ପଛେ ତଥାପି ଯେ ସେହି ବନ୍ଧ ପୁଣି ଯୋଡ଼ି ହୋଇଗଲା, ତାହା ତୁମେ ଦେଖି ମଧ୍ୟ ତଥାପି ଦେଖି ପାରିଲ ନାହିଁ। ନୁହେଁ ?"

"ହଁ-" ସେ ଆବେଗର ସହିତ ବିନୀତ ଭାବରେ ଉତ୍ତର ଦେଲେ : "ମୁଁ ବୁଝିପାରୁଚି ମୁଁ ମୋ'ର ଭୁଲଟିକୁ ହୃଦୟଙ୍ଗମ କରିପାରୁଚି।"

ଆପଣାର ଶାସ୍ତି ବିଧାନରେ କିଞ୍ଚିତ ପରିବର୍ତ୍ତନ କରିବାକୁ ଯେ ସମ୍ମତ ହେଲା। ହାତ ଉପରୁ ଏପର୍ଯ୍ୟନ୍ତ ମଧ୍ୟ କିଛି ଖସି ପଳାଇ ଯାଇନାହିଁ। ନିକୋଲାସ୍ ଆଉ ଏକ ନୂତନ ବ୍ୟକ୍ତିହୋଇ ଜନ୍ମ ଲାଭ କରିବାର ବେଳ ତଥାପି ଗତ ହୋଇନାହିଁ।

"ମୁଁ ପ୍ରତିଜ୍ଞା କରି କହୁଚି ଯେ ମୁଁ ସଂଶୋଧନ କରିପାରିବି। ମୁଁ ବିଲୁପ୍ତ ହୋଇଯିବି। ତୁମେ ଆଉ ମୋତେ ଦେଖି ପାରିବ ନାହିଁ, କିନ୍ତୁ ତଥାପି ମୁଁ ରହିଥିବି।"

ହେ ଭଗବାନ! ଶବରେ ଜୀବନୀଶକ୍ତିର ସଞ୍ଚାର ହେଉଥିଲା। ସେ ତାଙ୍କ ପାଖରୁ ଦୂରେଇ ଠିଆହେଲା।

"ଏହିଠାରୁ ହିଁ ଏହାର ସମାପ୍ତି ହୋଇଯାଉ!" -ବିରକ୍ତିବ୍ୟଞ୍ଜକ ସ୍ୱରରେ ସେ ଚିତ୍କାର କରି କହିଲା, "ଆଗାଥେ ! ଏହିଠାରୁ ସବୁ ସମାପ୍ତ ହେଲା ବୋଲି ତୁମକୁ ମଧ୍ୟ ହୃଦୟଙ୍ଗମ କରିବାକୁ ହେବ। "

ସେ ସିଧା କଥା ଉପରକୁ ଆସିଲା, -ତା'ର ହାତକୁ ସତେ ଯେପରି ସେ ଆପଣାର ତରବାରୀ ଉପରେ ରଖିଥିଲା !

"ଏହିଠାରେ ସବୁ ସମାପ୍ତ ହେଲା ବୋଲି ତୁମର ହୃଦ୍‌ବୋଧ ହେବାକୁ ମୁଁ କ'ଣ କରିପାରିବି, ମୋତେ କହ। ମୁଁ ଅନେକ ସଂଗ୍ରାମ କରି ସାରିଲିଣି, ଅନୁଗ୍ରହ କରି ଏଥର ମୋତେ କ୍ଷମାକର। ମୋ'ର ସମସ୍ତ ବିରକ୍ତି ସତ୍ତ୍ୱେ ତଥାପି ଯେ ମୁଁ ସଂଗ୍ରାମ କରିବାକୁ ଏତେ ଦୀର୍ଘ ସମୟ ଧରି ଚେଷ୍ଟା କରୁଥିଲି, ସେଥିପାଇଁ ମୋତେ ତୁମକୁ କ୍ଷମା କରିବାକୁ ହେବ...।"

ଏହି କଥା ଶୁଣି ତାଙ୍କର ଶରୀର ଶକ୍ତ ହୋଇ ଆସିଲା। ଅକୁଞ୍ଚିତ ଅଧର ଓ ଶୁଷ୍କ ନୟନରେ ନିକୋଲାସ୍ ଆଡ଼କୁ ସେ ପାଦେ ଅଗ୍ରସର ହେଲେ ଏବଂ ପ୍ରାୟ ତା'ର ମୁହଁ ଉପରେ ସ୍ତୁ, ସ୍ତୁ, ହେଲା ପରି କହିଲେ :

"ତେବେ ତୁମକୁ ମୁଁ ବିରକ୍ତ କରୁଚି, ନୁହେଁ ? କିନ୍ତୁ କେଉଁ ନାରୀ ନ କରିଥାନ୍ତା କହିଲ ?"

ଏହିପରି ଭାବରେ ଏହାର ପରିଣତି ହେଲା! ସେ ଆପଣାକୁ ନାନା ଆବର୍ଜନା ଭିତରେ ବୁଡ଼ାଇ ରଖିବାକୁ ଚେଷ୍ଟା କରୁଥିଲେ। ଅନ୍ତତଃ ଏତିକିରୁ ପ୍ରମାଣ ମିଳିବ ଯେ ଆପଣାର ବିଫଳତାକୁ ସେ ବେଶ୍ ହୃଦୟଙ୍ଗମ କରିପାରୁଚନ୍ତି। ଅତି ଧୀର ଭାବରେ ସେ ଉତ୍ତର ଦେଲା:

"ମୋ' ବିଷୟରେ ତୁମେ ଯାହା ଭାବୁଚ, ମୁଁ ଯଦି ଠିକ୍ ତାହାହିଁ ହୋଇଥାଏ, ତେବେ ମୋ'ଠାରୁ ଉଦ୍ଧାର ପାଇଲ ବୋଲି ତ ତୁମକୁ ଖୁସୀ ହେବାକୁ ପଡ଼ିବ।"

ସେ ଝରକା ପାଖକୁ ଗଲା। ତଳେ ଝରକା ପାଖରେ ତା'ର ମାଆ ଲୁଗାପଟା ସଫା କରିବାରେ ବ୍ୟସ୍ତ ଥିବା ପରି ଅଭିନୟ କରୁଥିଲେ। ଗାଲିଗାଇ ତା' ପାଖକୁ ଆସିଲାବେଳେ ସେ ମୁହଁ ବୁଲାଇ ଚାହିଁଲା ନାହିଁ।

"ତୁମକୁ ଆପଣାର କାର୍ଯ୍ୟସାଧନ କରିବା ପାଇଁ ଲଗାଇଥିବା ସେହି ଘୁଷୁରି କଦାପି

ତା'ର ଇପ୍ସିତ ଫଳ ପାଇବ ନାହିଁ। ତୁମର ବନ୍ଧୁ ସେହି ସାଲୋନ୍ କଦାପି ତା'ର ମେରୀକୁ ପାଇ ପାରିବ ନାହିଁ। "

"ତୁମେ କ'ଣ ପ୍ରକୃତରେ ତାହାହିଁ ଭାବୁଚ ?" -ସେ ଅତି ନିଷ୍ଫଳ ଭାବରେ ପଚାରିଲା।

ସେ କହିଲେ :"ଦେଖିବ..." ଓ ଗୋଟିଏ ଚେୟାର ଉପରେ ଯାଇ ବସିପଡ଼ିଲେ। ବ୍ୟାଗ୍‌ରେ ଥିବା ରୁମାଲଟିକୁ ଖୋଜିବାକୁ ଲାଗିଲେ। ନିକୋଲାସ୍ ଅପେକ୍ଷା କରି ରହିଥାଏ। ପ୍ରକୃତରେ ଏହାହିଁ ହେଉଚି ସମାପ୍ତି। ସେ ପୁଣି କହିଲେ :

"ଆଉ ଚିନ୍ତା କରନାହିଁ, ମୁଁ ଯାଉଚି।"

ନିକୋଲାସ୍ ଝରକା ପାଖକୁ ଫେରିଆସିଲା। ସେତେବେଳକୁ ତା'ର ମାଆ ବଗିଚାରୁ ଘର ଭିତରକୁ ଚାଲିଗଲେଣି। ସେ ଲାଇମ୍ ଗଛ ଆଡ଼କୁ ଅନାଇ ରହିଲା। ଭାବିଥିଲା, ତେଣୁ ମୁହଁ ଫେରାଇବା ବେଳକୁ ଆଗାଥେ ସେହି ଘରୁ ଚାଲିଯାଇଥିବେ। ସେ ଗଭୀର ଧ୍ୟାନନିବେଶ ସହକାରେ ଆପଣାର ଘନୀଭୂତ ଶରୀରଟା ଆଡ଼କୁ ଅନାଇଥିଲେ, ତିରିଶି ବର୍ଷ ପୂରିଗଲେ ଏହି ଶରୀର ଆହୁରି ସ୍ଥୁଳ ହୋଇଯିବ । ପରିଶେଷରେ ସେ ଉଠିକରି ଠିଆ ହେଲେ। ଦରଜା ଆଡ଼କୁ ଗଲେ -ତାଙ୍କୁ ଦେଖି ଯେପରି ଟିକିଏ କୁଣ୍ଠିତ ବୋଧ ହେଉଥିଲା।

"ଏଠାରୁ ବିଦାୟ ନେଇ ଗଲା ପରେ ମୁଁ ବର୍ତ୍ତମାନ କ'ଣ କରିବି, ସେକଥା ଜାଣିବାକୁ ବୋଧହୁଏ ତୁମେ ଚିନ୍ତା କରିନାହଁ ?"

ଝରକାବନ୍ଧ ଉପରେ କହୁଣୀଭରା ଦେଇ ସେ ଠିଆହେଲା। ଆଗାଥେ କେବଳ ତା'ର ପିଠିଟାକୁହିଁ ଦେଖିପାରୁ ଥାନ୍ତି। ସେ ପୁଣି କହିଲେ :

"ହୁଏତ ମୁଁ ଆତ୍ମହତ୍ୟା କରିବି ବୋଲି କ'ଣ ତୁମର ଆଶଙ୍କା ହେଉନାହିଁ ?"

ସେ ଫେରିକରି ଅନାଇଲା ନାହିଁ। ସତେ ଅବା ସେ ମୂକ ଆଉ ଅନ୍ଧ ହୋଇଯାଇଥିଲା। ଆଗାଥେ ଘର ଭିତରୁ ବାହାରି ଚାଲିଗଲେଣି ବୋଲି ନିଶ୍ଚିତ ଭାବରେ ନଜାଣିବା ପର୍ଯ୍ୟନ୍ତ ସେ ଆଦୌ ହଳଚଳ ହେଲା ନାହିଁ। ତା'ପରେ ଆପଣାର ରୁମାଲ ନେଇ ହାତ ପୋଛିଲା। ଗାଳିଗାଇ ଚଟାଣ ଉପରେ ଫୋପାଡ଼ିଦେଇ ଯାଇଥିବା ମୁଦିଟାକୁ ସେ ଗୋଟାଇ ନେଲା ନାହିଁ। ଦର୍ପଣଟାର ସମ୍ମୁଖରେ ଠିଆ ହୋଇ ସେ ଆପଣାର ଯଥାର୍ଥ ପୁରୁଷ ରୂପ ଉପରେ ଦୃଷ୍ଟିପାତ କରିବାକୁ ଲାଗିଲା।

# ଅଠର

ଅନ୍ତ୍ୟେଷ୍ଟି କ୍ରିୟାର ଖାଇବା ପିଇବା ଏକ ସମ୍ପନ୍ନ ମିତବ୍ୟୟିତାର ଉଜ୍ଜ୍ୱଳ ପରିବେଶ ଭିତରେ ସମାହିତ ହୋଇଗଲା। ଖାଇବାଟା ଯେ ସେପରି ବିଶେଷ ଆଡମ୍ବର ପୂର୍ଣ୍ଣ ହୋଇଥିଲା, ସେକଥା କୁହାଯାଇ ପାରିବ ନାହିଁ। ବେଶ୍ ସାଧାରଣ ଭୋଜନର ବ୍ୟବସ୍ଥା ହୋଇଥିଲା - ତଥାପି, ଡ୍ରୋର୍ଥେର ଲୋକମାନେ ରନ୍ଧାବଢ଼ାର ବାଗ ଜାଣନ୍ତି : ଠେକୁଆର ମୁଣ୍ଡ, ସିମ୍ବ ଆଉ ମାଂସର ଗୋଟାଏ ତରକାରୀ। କାଷ୍ଟିଲିନ୍‌ରୁ ଆସିଥିବା ଜଣେ ଭାଇ ହିସାବ ହେବା ଲୋକ କହିଲା -"କେଡ଼େ ଚମତ୍କାର ମାଂସ ! କେବଳ ଡ୍ରୋର୍ଥେକୁ ଛାଡ଼ି ଦେଲେ ମୋ'ର ଜାଣିବାରେ ଆଉ ସବୁଠାରେ ମାଂସଟାକୁ ଅତିରିକ୍ତ ସିଝାଇ ଦିଅନ୍ତି !" ତଥାପି ଚାରିଆଡ଼େ ଗୋଟାଏ ବିରସତାର ବାୟୁମଣ୍ଡଳ ଘାରି ରହିଥିଲା ପରି ମନେ ହେଉଥିଲା। ମାଡ଼ାମ୍ ଆଗାଥେ ଖାଇବା ଟେବୁଲର ଗୋଟାଏ ମୁଣ୍ଡରେ ଆସନ ଗ୍ରହଣ କରିଥିଲେ (ପରିବାରର ପ୍ରତିନିଧିତ୍ୱ କରିବା ଲାଗି ପରିବାର ତରଫରୁ ତାଙ୍କୁ ଦାୟିତ୍ୱ ଦିଆଯାଇ ଥିଲା। ) କିନ୍ତୁ ତାଙ୍କୁ ଦେଖିଲାବେଳେ ଅବିକଳ ଦୁଃଖର ଗୋଟିଏ ପ୍ରତିମୂର୍ତ୍ତି ପରି ମନେ ହେଉଥିଲା। ବୋଧହୁଏ ଏହି ଦୃଶ୍ୟଟି ସକାଶେ ଅତିଥିମାନେ ଭୋଜନବେଳେ ଯେତେ ଉପଭୋଗ କରିବାର କଥା ସେତେ ଉପଭୋଗ କରିପାରିଲେ ନାହିଁ। ମାଡ଼ାମ୍ ଆଗାଥେ ମୃତ ଗୃହସ୍ୱାମୀଙ୍କୁ ଗଭୀର ଭାବରେ ଭଲ ପାଉଥିଲେ, ଅନ୍ତ୍ୟେଷ୍ଟି କ୍ରିୟାର ଉତ୍ସବ ଅନୁଷ୍ଠିତ ହେଲାବେଳେ ଏହାହିଁ ସମସ୍ତଙ୍କର ଦୃଷ୍ଟିରେ ସ୍ପଷ୍ଟଭାବରେ ପ୍ରକଟ ହୋଇଥିଲା। ତାଙ୍କର ଦୁଃଖ ଓ କ୍ରନ୍ଦନ ସମସ୍ତଙ୍କର ଆଖିରେ ପଡ଼ିଲା। ଏତେ ବେଶୀ ସ୍ନେହର ଉଦ୍ରେକ କରାଇବାରେ ଜୁଲିଆ ଡୁବେର୍ନେଟ୍‌ଙ୍କର ସଫଳତା ଓ ମାଡ଼ାମ୍ ଆଗାଥେଙ୍କର ଏହି ସ୍ନେହକୁ ଅନୁଭବ କରିବାର ଶକ୍ତି, ଦୁଇଟି ଭିତରୁ ଯେ କେଉଁଟିକୁ ଅଧିକ ପ୍ରଶଂସା କରିବାକୁ ପଡ଼ିବ, ସେଥିପାଇଁ ଡ୍ରୋର୍ଥେର ଅଧିବାସୀ ବଡ଼ ଦ୍ୱନ୍ଦ୍ୱରେ ପଡ଼ି ଯାଉଥିଲେ। ....କେହି ଅପରର ବିଚାର କରିବା ଉଚିତ ନୁହେ, -ଏହା ପ୍ରକୃତରେ କେଡ଼େ ବଡ଼ ସତକଥା ! ଲୁଣିଆ ଲୁହଗୁଡ଼ାକ ମାଡ଼ାମ୍ ଆଗାଥେଙ୍କର ଆଖିପତା ଉପରେ ଠିକ୍ କୌଣସି କ୍ଷୟକାରୀ ଏସିଡ଼୍ ପରି କାମ କରିଥିଲା। ଅବଶ୍ୟ ତାଙ୍କର ଆଖି ଉପରେ କ'ଣ ଗୋଟାଏ ଚର୍ମରୋଗ ହୋଇ ଆଖି ପତାଟା ସାଧାରଣ ସମୟରେ ମଧ୍ୟ ଲାଲ ଦେଖାଯାଉଥିଲା। ଯେତେ ଉପାୟ କଲେ ମଧ୍ୟ ସେହି ରୋଗଟା ଆଦୌ ଭଲ ହୋଇ ନଥିଲା।

କାଷ୍ଟଲିନ୍‌ର ସେହି ଲୋକଟିର କଡ଼କୁ ବସିଥିବା ଭଦ୍ର ମହିଳା ମତ ପ୍ରକାଶ କଲେ : "ତଥାପି ଏହି ଦୁଃଖପୂର୍ଣ୍ଣ ମୁହୂର୍ତ୍ତରେ ତାଙ୍କର ଆଖି ଆଗରେ କିଭଳି ଚିତ୍ର ପ୍ରକଟିତ ହୋଇ ଉଠୁଥିବ ! ମୋଟ କଥା ହେଉଚି ଯେ ଆର୍‌ମଣ୍ଡ୍ ତାଙ୍କୁ ଭାରି ଭଲ ପାଆନ୍ତି। ସବୁଠାରୁ କମ୍ ରୂପବତୀ ରମଣୀ ପାଇଁ ମଧ୍ୟ ଜୀବନର ଲଟେରୀରେ ଏକ ବଡ଼ ପୁରସ୍କାର ଅପେକ୍ଷା କରି ରହିଥାଏ। ମୋ' ଘରେ ଯେତେ ସ୍ତ୍ରୀଲୋକ ରୋଷେଇ କରିବା କାମରେ ନିଯୁକ୍ତ ହୋଇଚନ୍ତି,

କୌଣସି ନା କୌଣସି ପୁରୁଷ ମଣିଷ ପାଇଁ ସେମାନେ ମୋ' ପାଖରୁ ଛାଡ଼ି ଯାଇଚନ୍ତି ; - ମୋଟୀ ହୁଅନ୍ତୁ, ଆଖି ଯେତେ ଚିଲା ହୋଇଥାଉ ବା ସେମାନେ ମଦ ପିଉଥାନ୍ତୁ ପଛକେ, କେହି ବଞ୍ଚିତ ହୋଇ ରହି ନାହାନ୍ତି। ତାହାହିଁ ତ ଜୀବନ ! ବର୍ତ୍ତମାନ ହୁଏତ ମାଡ଼ାମ୍ ଆଗାଥେଙ୍କର ଜୀବନ ସଫଳ ହେବାକୁ ଯାଉଚି, -ଏହି କାରବାରରେ ଆର୍‌ମାଣ୍ଡଙ୍କର ମଧ୍ୟ ଆଦୌ କ୍ଷତି ହେବ ନାହିଁ । ସିଏ ତ ତାଙ୍କ ସହିତ ଚଳି ଆସିଚନ୍ତି, ବର୍ତ୍ତମାନ ମଧ୍ୟ ତାଙ୍କର ଘରେ ଜଣେ ଘରଣୀର ପ୍ରୟୋଜନ ରହିଚି। ବର୍ଷ ବର୍ଷ ଧରି ତ ସେ ତାଙ୍କ ଘରେ ସବୁକଥା ଚଳାଇ ଆସିଚନ୍ତି। ବର୍ତ୍ତମାନ୍ ପ୍ରଭେଦ ଏତିକି ହେବ ଯେ ଏସବୁ କଥା କରିବା ପାଇଁ ବର୍ତ୍ତମାନ କୌଣସି ପାରିଶ୍ରମିକ ଦେବାକୁ ପଡ଼ିବ ନାହିଁ। ଆର୍‌ମାଣ୍ଡଙ୍କ ପାଇଁ ଏହି ବ୍ୟବସ୍ଥାଟା ଆଦୌ ମନ୍ଦ ହେବନାହିଁ। ତା' ଛଡ଼ା, ତୁମେ ବୁଝି ପାରୁଚଟି, ଯଦି ମାଡ଼ାମ୍ ଆଗାଥେ ଆଗ ମରିଯାଆନ୍ତି, ତେବେ ବୁଢ଼ା ଆର୍‌ମାଣ୍ଡ୍ ବେଲ୍‌ମନ୍ତର ସ୍ୱପ୍ନ...ମଣିଷ ଏହି କଥାଟି ଯେତିକି ଭାବିବ, ମାଡ଼ାମ୍ ଆଗାଥେଙ୍କୁ ଗୋଟାଏ ବିୟୋଗାନ୍ତକ ନାଟକର ନାୟିକା ପରି ବସି ଥିବାର ଦେଖି ସେତିକି ବିସ୍ମିତ ହେବାକୁ ପଡ଼ିବ। ହୁଏତ ଏପରି କିଛି ଘଟିଚି, ଯାହା ବିଷୟରେ ଆମେ କେହି କିଛି ଜାଣିନାହୁଁ। "

ଏ ବିଷୟରେ ସେହି ଭଦ୍ରମହିଳା ବିସ୍ମୟ ପ୍ରକାଶ କରିବା ଭଳି କୌଣସି ନୂତନ ବିଷୟ ନଥିଲା, କାରଣ ଆପଣାର ଗ୍ଲାସଟି ଶେଷକରି ମୁହଁ ପୋଛି କାଷ୍ଟିଲନ୍‌ର ସେହି ଲୋକଟି କାନରେ ସେ ଫୁସ୍ ଫୁସ୍ କରି କହିଲେ - "ଏଥିରେ କଣ ଗୁପ୍ତକଥା ଥାଇ ପାରେ ?" ଠିକ୍ ସେହିପରି ଅତି ଧୀର ଭାବରେ ଓ ଖୁବ୍ କଷ୍ଟରେ ଆପଣାର ହସକୁ ଚାପିରଖି କାଷ୍ଟିଲନ୍‌ର ଲୋକଟି ଉତ୍ତର ଦେଲା, - ହୁଏତ ପଶ୍ଚାତାପ ଏହାର କାରଣ ହୋଇପାରେ। ହୁଏତ ସେ ମାଡ଼ାମ୍ ଆର୍‌ମାଣ୍ଡଙ୍କୁ ବିଷ ଦେଇ ଥାଇ ପାରନ୍ତି।"

"ଏ ସବୁ କଥାରେ ଆଦୌ ରହସ୍ୟ କରିବା ଉଚିତ ନୁହେଁ।" ଭଦ୍ରମହିଳା କହିଲେ, "ତାଙ୍କ ଆଡ଼କୁ ଥରେ ଅନାଇ ଦେଖିଲ, ଏ ପର୍ଯ୍ୟନ୍ତ ବି ଗୁଣ୍ଡାଏ ଖାଇବା ସେ ମୁହଁକୁ ନେଇ ନାହାନ୍ତି। ଆର୍‌ମାଣ୍ଡ୍ ଓ ମେରୀ ଠିକ୍ ମାଡ଼ାମ୍ ଆଗାଥେଙ୍କ ପରି ଏହି ଦୁଃଖ ଅନୁଭବ କରୁଚନ୍ତି କି ନାହିଁ, ମୁଁ ସେଇ କଥା ଭାବୁଚି।"

ଉପର ମହଲାରେ ଥିବା ଆପଣା କୋଠରୀରେ ଆର୍‌ମାଣ୍ଡ୍ ଡୁବେର୍ନେଟ୍ ବସିଥିଲେ, ତଳ ମହଲାରୁ ସେ ଅତିଥିମାନଙ୍କର ପାଟିତୁଣ୍ଡ ଏବଂ କଣ୍ଟା ଆଉ ଥାଳିଆର ଠଣ୍‌ଠଣ୍ ଶବ୍ଦ ବେଶ୍ ଶୁଣି ପାରୁଥିଲେ। ଟେବୁଲ୍‌ର ଡ୍ରୟରଗୁଡ଼ାକ ଖୋଲି ସେ ପୁରୁଣା କାଗଜ ପତ୍ର ଗୁଡ଼ାକୁ ଫାଇଲ୍‌ରେ ସଜାଡୁଥିଲେ। ମରଣ ପରି ଅନ୍ୟ କୌଣସି ଘଟଣା ମଣିଷକୁ ଆପଣାର ନାନା ସାଂସାରିକ ବିଷୟ ପ୍ରତି ଧ୍ୟାନ ଦେବା ଓ ସେଗୁଡ଼ିକୁ ବ୍ୟବସ୍ଥିତ କରି ରଖିବାକୁ କ୍ଷେତ୍ର ପ୍ରସ୍ତୁତ କରିପାରେ ନାହିଁ। ଆର୍‌ମାଣ୍ଡ୍ ବିସ୍ମିତ ହୋଇ ଭାବୁଥିଲେ, "ସେ ଚୁକ୍ତିଟା ବିଷୟରେ ମୁଁ

କ'ଣ କଲି ?" ଅଳ୍ପ ସମୟ ହେଲା ସେ ଆପଣାର ମନ ଭିତରେ ଖୁବ୍ ବେଶୀ ସକ୍ରିୟ ହୋଇ ଉଠିଥିଲେ। ମେରୀ ଗୋଟାଏ ଲୋ' ଚେୟାର୍‌ରେ ବସିଥିଲା। ଆପଣାର ଛାତି ଭିତରକୁ ଗଳାଇ ପକାଇଥିବା ଚିଠିଟି ତା'ର ମନରେ ଯେଉଁ ସ୍ୱାଦିଷ୍ଟ ଅସନ୍ତୋଷ ସୃଷ୍ଟି କରିଥିଲା, ସେ ବିଷୟରେ ଅତି ଉତ୍କଟ ଭାବରେ ସେ ସଚେତନ ହୋଇ ବସିଥିଲା। ବ୍ଲାଉଜ୍‌ତଳୁ ଚିଠିଟିକୁ ବାହାର କରି ଆଉ ଥରେ ପଢ଼ିବାର କୌଣସି ଆବଶ୍ୟକତା ନଥିଲା, କାରଣ ଚିଠିଟା ତ ତା'ର ବିଲ୍‌କୁଲ୍ ମୁଖସ୍ଥ ହୋଇ ଯାଇଥିଲା। "ସେହି ଦୁର୍ବଳ ପତଙ୍ଗ ନିକୋଲାସ୍‌କୁ ଉଦ୍ଧାର କରିବା ପାଇଁ ମୋର ଆଉକିଛି ସମୟ ଅପେକ୍ଷା କରିବା ଉଚିତ ଥିଲା...ତଥାପି ଜାଲଟା ବର୍ତ୍ତମାନ ସୁଦ୍ଧା ବୁଢ଼ିଆଣୀ ହାତରେ ପଡ଼ି ନାହିଁ। ପୁଣି ବୁଢ଼ିଆଣୀ ତା'ର ଜାଲ ପାଖରେ ନଥିବା ସମୟରେ ତାକୁ ଯେତେ ଶୀଘ୍ର ଗୋଡ଼ରେ ଦଳି ଦିଆଯାଇ ପାରେ, ତାହା ସେତେ ମଙ୍ଗଳର ବିଷୟ। ତଥାପି ତୋତେ ଏଣିକି ଗାଲିଗାଇ ସହିତ ସାବଧାନ ହୋଇ କାରବାର କରିବାକୁ ହେବ। ତା' କଥା ଛାଡ଼ିଦେଲେ ମଧ୍ୟ, ଆଗାମୀ ଦିନେ ଦୁଇଦିନ ପାଇଁ ଆମର ସୁଖରେ ଆଦୌ ବିହ୍ୱଳ ହେବା ଉଚିତ ନୁହେଁ। ତୋ'ର ଅଭାଗିନୀ ମାଆଠାରୁ ଆମେ ଏହି ବିଚାର କରିବାର ଶକ୍ତିଟିକକ ଶିଖିଚେ। ଅବଶ୍ୟ ମୁଁ ନିଜେ ମଧ୍ୟ ବୁଝି ପାରୁନାହିଁ କିପରି ତୋତେ ନଦେଖି ମୁଁ ଏତେ ଦୀର୍ଘ ସମୟ ଧୈର୍ଯ୍ୟ ଧରି ରହି ପାରିବି। ବର୍ତ୍ତମାନ ଆଦୌ ଦେଖା ସାକ୍ଷାତ୍ ନ ହେବାର ମଧ୍ୟ କୌଣସି କାରଣ ନାହିଁ। -ଅବଶ୍ୟ ଆମକୁ ଟିକିଏ ସୀମା ଭିତରେ ରହି ଚଳିବାକୁ ପଡ଼ିବ - କିନ୍ତୁ ସୀମାଭିତରେ ରହି ଚଳିବାର ପ୍ରଶ୍ନ ଉଠିବା ମାତ୍ରକେ, ତୁ' ନାଁ ମୁଁ କିଏ ଅଧିକ ଦୁର୍ବଳ, ସେହି କଥା ଜଣା ପଡ଼ିଗଲେ ତ ମୋର କଥା ସରିଗଲା। ସୀମା ଭିତରେ ତ ଆମେ ତିନିମିନିଟ ସମୟ ମଧ୍ୟ ଏକାଠି ରହିପାରିବା ନାହିଁ। -ଶୁଣ, ମୋର ଗୋଟାଏ ପ୍ରସ୍ତାବ ଅଛି..ରାତ୍ରି ଭୋଜନ ପରେ ତୁ ବାହାରକୁ ଚାଲିଆସିବୁ -କିନ୍ତୁ ଟୁଲିପ୍ ଗଛପାଖରେ ଥିବା କୁଦ ତଳର ଆମର ସବୁଦିନର ଜାଗାକୁ ନୁହେଁ। କିନ୍ତୁ ଲେଟୋଟ୍ ନଦୀ ପାଖକୁ, ଯେଉଁଠି ଲୋକେ ଆଲ୍‌ଡର୍ ଗଛ କାଟୁଛନ୍ତି। ତୁ କୁଆଡ଼େ ଯାଉଚୁ, ସେ ବିଷୟ ଗୋପନ କରି ରଖିବାର କୌଣସି ପ୍ରୟୋଜନ ନାହିଁ। କିନ୍ତୁ ଭଲ କରି ଘୋଡ଼ିଘାଡ଼ି ହୋଇ ଆସିଥିବୁ। ମୁଁ ସେହି ନଈ କୂଳରେ ଆର ପାଖରେ ଥିବି। ମୁଁ ଟିକିଏ ନିଆଁ ଜଳାଇବି, ସେଇଥିରୁ ମୁଁ କେଉଁଠି ଅଛି, ତୁ ଠିକ୍ ଅନୁମାନ କରି ନେଇ ପାରିବୁ, - କିନ୍ତୁ ତାହା ପୂର୍ବରୁ ମୁଁ ଯେପରି ତୋର ସିଗାରେଟ୍‌ଟି ଦେଖିବାକୁ ପାଏ...ଲୁଚୋଁରୁ ଯେଉଁ ଧଳା କୋଟଟି ତୁ କିଣିଥିଲୁ, ସେଇଟିକୁ ପିନ୍ଧି କରି ଆସିବୁ।

"ମାଆ, ତୋର ଅଭାଗିନୀ ମାଆର କେଉଁ କେଉଁ ଲୁଗାପଟା ତୁ ରଖିବାକୁ ଚାହୁଁଚୁ, ସେହି ବିଷୟରେ ମାଡ଼ାମ୍ ଆଗାଥେଙ୍କ ସହିତ ଥରେ କଥାବାର୍ତ୍ତା କରିନେବା ଉଚିତ। ବାକୀ ଲୁଗା ପଟାକୁ ଆମେ ଅନାଥାଶ୍ରମକୁ ଦେଇଦେବା। ...ମେରୀ, ମୁଁ ଯାହା କହୁଚି, ତୁ ବୋଧ ହୁଏ ସେଥିରୁ ପଦେ ହେଲେ କଥା ଶୁଣିପାରୁ ନାହୁଁ.."ହଠାତ୍ ଟିକିଏ ଅଧୀର ହୋଇପଡ଼ି

ଆର୍‌ମାଣ୍ଡ କହିଲେ।

"ମୁଁ କିଛି ରଖିବାକୁ ଚାହୁଁ ନାହିଁ ।"

ମାଆ ବ୍ୟବହାର କରିଥିବା ଯେତେ ଲୋଚା କୋଚା ତଳ ପିନ୍ଧା ବଡ଼ିସ୍ ଅଦ୍‌ଭୂତ ଡ୍ରୟର୍ ଓ ପେଟିକୋଟ୍‌ମାନ ଥିଲା, ମେରୀ ସେହି ଗୁଡ଼ିକର କଥା ଭାବୁଥିଲା।

"ମ୍ୟାଡ଼ାମ୍ ଆଗାଥେଙ୍କର କୌଣସି ନା କୌଣସି ବ୍ୟବହାରରେ ସେ ଗୁଡ଼ିକ ନିଶ୍ଚୟ ଆସିବ," —ଆଖିରେ ଗୋଟାଏ ଦୁଷ୍ଟାମିର ଭାବ ଫୁଟାଇ ମେରୀ କହିଲା।

"ତୋ'ର ଆସିବ ନାହିଁ ତ ମାଡ଼ାମ୍ ଆଗାଥେଙ୍କର କାହିଁକି ଆସିବ ?"

ତାଙ୍କର କଥା ହଠାତ୍ ବନ୍ଦ ହୋଇଗଲା। ବାହାରୁ ସଂକେତ ନଦେଇ ଗାଲିଗାଇ ଘରଭିତରେ ପ୍ରବେଶ କରିଥିଲେ। ତତ୍‌କ୍ଷଣାତ୍ କବରତଳୁ ଉଠିଆସି ଥିବା ଭୂତଙ୍କ ପରି ମାଡ଼ାମ୍ ଆଗାଥେ କାହିଁକି ଦେଖାଯାଉଥିଲେ, ତାହାର କାରଣ ମେରୀ ଖୁବ୍ ଭଲକରି ଜାଣିଥିଲା। କିନ୍ତୁ ଆର୍‌ମାଣ୍ଡ୍ କ'ଣ ଭାବୁଥିଲେ ?

"ମୁଁ ସେକଥା ଆଉ ଗୋଟାଏ ମୁହୂର୍ତ୍ତ ମଧ୍ୟ ସହ୍ୟ କରି ପାରିବି ନାହିଁ," - ମାଡ଼ାମ୍ ଆଗାଥେ କହିଲେ, "ଗୋଟାଏ ବିଷୟରେ ମୁଁ ତୋ'ର ବାପାଙ୍କ ସହିତ ଆଲୋଚନା କରିବାକୁ ଆସିଚି। ମେରୀ, କିଛି ସମୟ ପାଇଁ ତୁ ଟିକିଏ ଆର ଘରକୁ ଗଲେ ତୋ'ର କୌଣସି ଆପତ୍ତି ଅଛି କି ?"

"ମୁଁ କାହିଁକି ଯିବି ? ଯାହା ତୁମର କହିବା କଥା, ମୁଁ ଥାଇ କରି କ'ଣ କହି ପାରିବ ନାହିଁ ? ମୁଁ ଭାବୁଚି, ସବୁ ଦିନଠାରୁ ଆଜି ଅଧିକ ନିଶ୍ଚିତ ଭାବରେ ମୋର ବାପାଙ୍କ ପାଖରେ ରହିବା ଲାଗି ମୋର ଅଧିକାର ଅଛି।"

"ମେରୀ, ଏମିତି ଭାବରେ କଥା କହନ୍ତି ନାହିଁ।" -ଶ୍ରୀଯୁକ୍ତ ଆର୍‌ମାଣ୍ଡ୍ କହିଲେ।

ତଥାପି ସେହି ଘରୁ ଅନ୍ୟତ୍ର ଯିବା ଲାଗି ମେରୀକୁ ସେ ନିର୍ଦ୍ଦେଶ ଦେଇ ପାରିଲେ ନାହିଁ। ଝିଅଟି ଯାହା କହିଲା, ମାଡ଼ାମ୍ ଆଗାଥେ ସେଥିରେ କୌଣସି ପ୍ରତିକ୍ରିୟା ପ୍ରକାଶ କରି ନଥିଲେ। କୌଣସି ପ୍ରକାର ଭାବଲେଶ ଶୂନ୍ୟ ମୁଖରେ ସେ ଆର୍‌ମାଣ୍ଡ୍‌ଙ୍କ ପାଖରେ ବସି ଅଭାଗିନୀ ଜୁଲିଆର ବିଲ୍‌ଗୁଡ଼ିକୁ ସଜାଡ଼ିବାରେ ତାଙ୍କୁ ସାହାଯ୍ୟ କରିବାକୁ ଲାଗିଲେ। ମେରୀ ତା'ର ଚେୟାରରୁ ଅଦୌ ହଲଚଲ ହେଲା ନାହିଁ। ସେ ସେଇଠି ସିଧା ହୋଇ ବସିଥାଏ, ଦୁଇ ଗୋଡ଼କୁ ଯୋଡ଼ି କରି ଲମ୍ବାଇ ଦେଇଥାଏ। ଛାତି ଭିତରେ ଲୁଚାଇ ରଖିବାକୁ କାଗଜ ଖଣ୍ଡକ ସକାଶେ ସେ ଅବିଶ୍ୱାସ ପୂର୍ଣ୍ଣ ସତର୍କତାର ଏକ ଦୟନୀୟ ପରିସ୍ଥିତିରେ ପଡ଼ି ଯାଇଥିଲା। କାଗଜଟା ଭିତରେ ପୋଡ଼ି ପୋଡ଼ି ଦେଲା ପରି ଲାଗୁଥାଏ, ପ୍ରକୃତରେ ବଡ଼ ଆଘାତ ଦେଉଥାଏ।

ତଳୁ ମନୁଷ୍ୟ କଣ୍ଠର କୋଳାହଳ ଶୁଣାଗଲା, ହଠାତ୍ ଏକ ବିପୁଳ ହାସ୍ୟରୋଳ ଶୁଭିଲା, ପୁଣି ହଠାତ୍ ବନ୍ଦ ହୋଇଗଲା । ଅତିଥିମାନଙ୍କ ଭିତରୁ କେହି ଜଣେ କଥାବାର୍ତ୍ତା କରୁଥିଲେ । ସେ ହେଉଚନ୍ତି ଶ୍ରୀଯୁକ୍ତ ବୋରୋଟ ସାଧାରଣ କାଉନ୍‌ସିଲର୍ ସଦସ୍ୟ ଏବଂ ସେ ତାଙ୍କର ଆତ୍ମୀୟମାନଙ୍କୁ ଏହି ଦୁଃଖପୂର୍ଣ୍ଣ ସମ୍ବାଦଟି ଦେଉଥିଲେ ଯେ ଡ଼ୋର୍ଥେ ତା'ର ସୋସ୍-ପ୍ରିଫେକ୍‌ଚର୍‌ର ପାହ୍ୟା ହରାଇବାକୁ ଯାଉଚି । ଊଣେଇଶି ବର୍ଷ ବୟସର ଜଣେ ଶିକ୍ଷକ ଓ ଜୁଲିଆଙ୍କର ଜଣେ ପୁତୁରା ଆଁଦ୍ରେ ଦୋନ୍‌ଜାକ୍‌ଂ -ଶୀଘ୍ର ପରିପକ୍ୱ ହୋଇଥିବା ଜଣେ ତରୁଣ ଯୁବକ - ସେ ଏପର୍ଯ୍ୟନ୍ତ ନୀରବ ଥିଲେ (ଧର୍ମଯାଜକଙ୍କ ପାଖକୁ କାଳେ ତାଙ୍କୁ ବସିବାକୁ କୁହାଯିବ, ସେହି ଭୟରେ) । କିନ୍ତୁ ମାଉଁସ ପରିବେଷଣ ହୋଇଗଲା ପରେ ପରେ ତାଙ୍କର ପାଟି ଏକାବେଳେକେ ଖୋଲି ଗଲା । ସେ ବଡ଼ ପାଟିକରି ପଚାରିଲେ, ଗୋଷ୍ଠୀ ହିସାବରେ ଡ଼ୋର୍ଥେର ଏହି ଅଧଃପତନକୁ କେତେଦୂର ଏକ ବିଚ୍ଛିନ୍ନ ଘଟଣା ବୋଲି କୁହଯାଇ ପାରିବ, -ବା ବସ୍ତୁତଃ ସହରଟି କ୍ରମେ ଏକ ଜୀବନ ହୀନ ଜନ -ବସତିରେ ପରିଣତ ହେଲାଣି, ଯାହାକୁ କି ମନୁଷ୍ୟର ପାଦରେ ସମୟେ ସମୟେ ଦେଖା ଯାଉଥିବା ଗୋଦରା ଓ କର୍କଶ ଚମବିଣ୍ଡି ସହିତ ତୁଳନା କରାଯାଇ ପାରିବ ? ବା ଏହାକୁ ଗୋଟାଏ ସଂକ୍ରମଣ କେନ୍ଦ୍ର ବୋଲି କହିବାକୁ ହେବ । ସମସ୍ତ ଦେଶ, ଏପରି କି ସମଗ୍ର ଇଉରୋପ ଯେଉଁ ଦୁରାରୋଗ୍ୟ ରୁଗ୍‌ଣ ଦଶାରେ ଆସି ଉପନୀତ ହେଲାଣି, ତାହାରି ଏକ ଦୃଷ୍ଟାନ୍ତ ବୋଲି କହିବାକୁ ହେବ ? ଏହା ପଚି ଯାଉଥିବା ଏକ ଅବୟବର ସମସ୍ୟା ବା ଅତି ସୀମାବଦ୍ଧ ଅରାଏ କଠିନ ସମସ୍ୟା ? - "ମୋତେ ସେହିକଥା ଆପଣ ଭଲ କରି ବୁଝାଇ କହି ଦିଅନ୍ତୁ, ମହାଶୟ !"

ଆର୍‌ମାଣ୍ଡ୍ ଆଗାଥେ ଓ ମେରୀ ସମସ୍ତେଏହି ଉତ୍ତୋଳିତ କଣ୍ଠ ସ୍ୱର ଶୁଣି ପାରୁଥିଲେ । ମଝିରେ ମଝିରେ ଚେୟାର ଘୋଷାରି ନେବାର ଶବ୍ଦ ଶୁଭୁଥିଲା, ପୁଣି ମଝିରେ ବେଳେବେଳେ ସବୁ ଚୁପ୍ ହୋଇ ଯାଉଥିଲା । ମେରୀ ବରାବର ଗାଲିଗାଇଙ୍କର ମୁଖକୁ ଅନାଇ ରହିଥାଏ । ସେ ଯେ ତାଙ୍କୁ ଜାଗିବାକୁ ଏପରି କରୁଥିଲା, ତାହା ନୁହେଁ; ବରଂ ସେ ଭାବୁଥିଲା ଯେ ଦୁର୍ବଳତାର କୌଣସି ସଙ୍କେତ ଯେପରି ସେ ନ ଦେଖାଏ । ଶକ୍ତି ଓ ବିଜୟର ଏକ ସଚେତନତା ବିରୁଦ୍ଧରେ ସେ ସଂଗ୍ରାମ କରିବାରେ ଲାଗିଥିଲା । ଗୋଟାଏ ପ୍ରକାର ଲଜ୍ଜାନୁଭୂତି ତାକୁ ଆଚ୍ଛନ୍ନ କରି ରଖିଥିଲା ଏବଂ ଗିଲେସ୍‌କୁ ଦିନେ ହେଲେ ଭଲ ପାଇ ନଥିବା ତା'ର ମୃତା ମାଆ ଲାଗି ସେ ପ୍ରାର୍ଥନା କରିବାକୁ ଚେଷ୍ଟା କରୁଥିଲା । ହୁଏତ ଗିଲେସ୍‌କୁ ତା'ର ମାଆ ଘୃଣା ବି କରୁଥିଲେ, ପରେ ହୁଏତ ସେ ଘୃଣା ଆଉ ଭଲ ପାଇବାର ମଝିରେ ପଡ଼ି ଏପାଖ ସେ ପାଖ ହେଉଥିଲେ । ...କି ଘୃଣ୍ୟ ବିଚାର ଏଗୁଡ଼ାକ..ଭଗବାନ୍ ଦୟା କଲେ ହୁଏତ ତାଙ୍କୁ ଏଥିପାଇଁ କୌଣସି ଶାସ୍ତି ନଦେଇ ପାରନ୍ତି । "ହେ ଭଗବାନ୍ ! —ନା । ମାଆ ମରିଯିବା ପରେ ମୁଁ ପ୍ରକୃତରେ ବଡ଼ ବିବଶ ହୋଇ ପଡ଼ିଚି । ତୁମେ ତ ସବୁ ଜାଣିଚ, ତୁମେ ଅବଶ୍ୟ ଜାଣୁଥିବ ଯେ ମୁଁ ତାକୁ ଭଲ ପାଉଥିଲି ।" ମାଆଠାରୁ ଘଡ଼ିଏ ଛାଡ଼ି କେଉଁଠି ରହିବାକୁ

ଯେତେବେଳେ ସେ ଆଦୌ ସହିପାରୁ ନଥିଲା, ସେହି ଦିନ ଗୁଡ଼ିକର କଥା ସେ ମନେ ପକାଇବାକୁ ଲାଗିଲା । ସେତେବେଳେ ସେ ଘଣ୍ଟାକ ପାଇଁ ସୁଦ୍ଧା ମାଆଠାରୁ ଅନ୍ତର ହୋଇ ରହିପାରୁ ନଥିଲା । ମାଡ଼ାମ୍ ଡୁବେର୍ନେଟ୍ ସର୍ବଦା ଅଭିଯୋଗ କରୁଥିଲେ ଯେ "ପିଲାଟା ଖାଲି ସବୁବେଳେ ମୋ'ରି କାନି ତଳେ ଗୁଞ୍ଜି ହୋଇ ରହୁଚି ।" ଏ କଥା ସମସ୍ତଙ୍କୁ ଭଲ ଭାବରେ ଜଣାଥିଲା ଯେ ଆପଣା ମାଆ ବ୍ୟତୀତ ମେରୀ ଆଉ କାହାରି ବିଷୟରେ କିଛି ଅନୁଭବ କରି ପାରେ ନାହିଁ ।"...ମାଆ —ବାକସ ଭିତରେ ବର୍ତ୍ତମାନ ସେ କଣ୍ଟା ପିଟା ହୋଇ ରହିଚି, ଜପାମାଳୀ ଦେଇ ତାହାର ଦୁଇ ହାତକୁ ଛନ୍ଦି ଦିଆ ହୋଇଚି; ମୃତ ବ୍ୟକ୍ତିମାନଙ୍କୁ ପିନ୍ଧାଇ ଦିଆ ଯାଉଥିବା ଶକ୍ତ ପଟିରେ ତା'ର ଗାଲ ବନ୍ଧା ହୋଇ ରହିଚି..ଗିଲେସ୍ ! ତା'ର ନିର୍ଦ୍ଦୟ ମୁହଁଟା —ଅନ୍ୟ ସମସ୍ତଙ୍କ ପ୍ରତି ନିର୍ଦ୍ଦୟ, କେବଳ ତାହାରି ପ୍ରତି କୋମଳ । ନିହାଣ ଭାଙ୍ଗି ଦେଉଥିବା କୌଣସି ଅତି ଶକ୍ତ ପଥରରୁ କଟା ଯାଇଥିବା ପରି ତା'ର କଠିନ ଓ କୃଷ୍ଣ ଆଖି ଦିଓଟି, ତା' ଆଡ଼କୁ ଅନାଇ ରହିଥିଲା ବେଳେ ଯିଏ ଅବଗୁଣ୍ଠିତ ଓ ଅସ୍ପଷ୍ଟ ହୋଇଗଲା ପରି ଦେଖାଯାଏ । ଦିନେ ରାତିରେ ସେ ସେହି ଆଖିର ବୁନ୍ଦୁଏ ଲୁହ ବି ଚାଖିବାକୁ ପାଇଚି ! ସେ ଆଦୌ କାନ୍ଦେ ନାହିଁ ବୋଲି ଗିଲେସ୍ ଥରେ ତାକୁ କହିଥିଲା । "ଯଦି ମୁଁ ବର୍ତ୍ତମାନ କାନ୍ଦୁଥାଏ," ଗିଲେସ୍ କହିଥିଲା, "ତାର ଏକମାତ୍ର କାରଣ ହେଉଚି, ଯେ ମୁଁ ତୋତେ ଏତେ ଭଲପାଏ ।" ଠିକ୍ ଏହି ଶବ୍ଦଗୁଡ଼ିକୁ ସେ ପ୍ରୟୋଗ କରିଥିଲା । ତା'ଠାରୁ ଏପରି ପଦେ ଶୁଣିବ ବୋଲି ମେରୀ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା । "ମୁଁ କାନ୍ଦୁଚି, କାରଣ ମୁଁ ତୋତେ ଏତେ ଭଲ ପାଏ ।"

## ଉଣେଇଶି

"ଠିକ୍ ଏହି ମୁହୂର୍ତ୍ତରେ ସମ୍ଭବତଃ ମେରୀ ତାହାରି ସହିତ ଥିବ ବୋଲି କଣ ତୁମର ଆଦୌ ମନେ ହେଉନାହିଁ ?"

ଆର୍‌ମାଣ୍ଡ ଡୁର୍ବେନେଟ୍ ମୁଣ୍ଡ ହଲାଇଲେ, କିନ୍ତୁ ବିଷୟଟି ସେତିକିରେ ଶେଷ କରିବାକୁ ଆଗାଥେ ଆଦୌ ପ୍ରସ୍ତୁତ ନଥିଲେ ।

"ତେବେ ବର୍ତ୍ତମାନ ସେ କେଉଁଠାରେ ଥିବ ବୋଲି ତୁମେ ଅନୁମାନ କରୁଚ ?"

ଗାତ୍ରକୁଞ୍ଚନ କରି ଆର୍‌ମାଣ୍ଡ୍ ଆପଣାର ଅଜ୍ଞତା ପ୍ରକାଶ କଲେ :

"ଅବଶ୍ୟ ତାହା ସହିତ କଦାପି ନ ଥିବ, ମାଆର ଅନ୍ତ୍ୟେଷ୍ଟିକ୍ରିୟା ଦିନଟାରେ ସେ ଏପରି ଆଚରଣ କରିବ ବୋଲି କଦାପି କଳ୍ପନା କରାଯାଇ ନ ପାରେ । "

ଆର୍‌ମାଣ୍ଡ୍ ଡୁବେର୍ନେଟ୍ ଓ ମାଡ଼ାମ୍ ଆଗାଥେ ଏକାଠି ବସି ଶୀତଳ ମାଂସ ତରକାରୀକୁ

ପୋଛିପାଛି ଖାଇ ଦେଉଥିଲେ, ଠିକ୍ ଅନେକ ବର୍ଷ ପୂର୍ବେ ବିବାହ କରିଥିବା ଦମ୍ପତି ପରି। ରାତ୍ରି ଭୋଜନରେ ଉପସ୍ଥିତ ରହିପାରିବ ନାହିଁ ବୋଲି ମେରୀ ଆଗରୁ ଜଣାଇ ଦେଇଥିଲା। ଖାଇବା ଶେଷ ହୋଇ ଆସିବା ପର୍ଯ୍ୟନ୍ତ କେହି କାହାରିକୁ ପଦେ ହେଲେ କଥା କହି ନଥିଲେ। ମାଡ଼ାମ୍ ଆଗାଥେ ଅପାଣାର ହାତପୋଛାଟିକୁ ଭାଙ୍ଗି କରି ରଖୁଥିଲେ।

"ମୋ' ସାଙ୍ଗରେ କୁଦ ଉପରକୁ ଯିବ ଚାଲ। ମୋରି ଅନୁମାନ ସେହିଠାରେ ଟୁଲିପ୍ ଗଛ ତଳେ ଆମେ ସେମାନଙ୍କୁ ନିଶ୍ଚୟ ଦେଖିବାକୁ ପାଇବା।"

ଆର୍‌ମାଣ୍ଡ୍ ଡୁବେର୍ନେଟ୍ ଉଠିବା ପୂର୍ବରୁ ଆଉ ଗିଲାସେ ମଦ ପିଇଲେ ଏବଂ ଖୁବ୍ ଚେଷ୍ଟା କରି ତାଙ୍କର ପାଦ ସହିତ ସଂଗ୍ରାମ କରିବାକୁ ଲାଗିଲେ।

"କଦାପି ନୁହେଁ" - ସେ କହିଲେ : "ବରଂ ମୋର ସେ କଥା ଜାଣିବା ଦରକାର ନାହିଁ।"

"ଯଦି ମୁଁ ଫେରି ଆସି ସେମାନଙ୍କୁ ଧରିଚି ବୋଲି ଖବର ଦିଏ, ତେବେ ମୋତେ ବିଶ୍ୱାସ କରିବ କି ନାହିଁ ?"

ଉତ୍ତରରେ ସେ ଗୋଟିଏ ବୋଲି ଶବ୍ଦ ଉଚ୍ଚାରଣ କଲେ ନାହିଁ, କିନ୍ତୁ ବୈଠକଖାନା ଆଡ଼କୁ ଆଗେ ଆଗେ ଗଲେ। କହିଲେ ଯେ ଆଜି ରାତିରେ ଭାରି ଗରମ ହେଉଚି, ଆକାଶ ଝରକା ଗୁଡ଼ାକ କେହି ଖୋଲି ଦେଇ ନାହାନ୍ତି ବୋଲି ସେ ଭାରି ଦୁଃଖିତ ହେଲେ। ଅବଶ୍ୟ ଅନ୍ତ୍ୟେଷ୍ଟିକ୍ରିୟା ସରିବାର ଏତେ ଅଳ୍ପ ସମୟ ପରେ ସେଗୁଡ଼ିକୁ ଖୋଲିବା ଉଚିତ ହୋଇ ନଥାନ୍ତା। ନୀରବ ରହିବାକୁ ତାଙ୍କୁ ଆଦୌ ଭଲ ଲାଗୁ ନଥିଲା ବୋଲି ସେ ନାନା ପ୍ରକାର କଥା କହିବାକୁ ଚେଷ୍ଟା କରୁଥିଲେ। ଆଗାଥେ ଭାବିଲେ ଯେ ଆର୍‌ମାଣ୍ଡ୍ ନିଶ୍ଚୟ ତାଙ୍କର ଗୁପ୍ତ ବିଷୟଟି ଅନୁମାନ କରି ସାରିବେଣି କାରଣ ଯାହା ହେବାର ହେଉ ପଛକେ, ସେହି ଅତି ପ୍ରିୟ ନାମଟିକୁ ସେ କଦାପି କଥୋପକଥନରୁ ବାଦ୍ ଦେଇ ପାରିବେ ନାହିଁ। ଆର୍‌ମାଣ୍ଡ ସ୍ଥବିର ପଦକ୍ଷେପରେ ଆଗାଥେଙ୍କର ଅନୁସରଣ କରି ପ୍ରବେଶ କକ୍ଷକୁ ଗଲେ। ଆଗାଥେ ଗୋଟିଏ ଗୋଟିଏ କୋଟ ନେଇ ଆପଣା କାନ୍ଧରେ ପକାଇ ଦେଲେ, ତା' ପରେ ମୁହଁ ବୁଲାଇ କହିଲେ :

"କହ, ଫେରିଆସି ମୁଁ ସେମାନଙ୍କୁ ଧରିଚି ବୋଲି ତୁମ ଆଗରେ କହିଲେ ତୁମେ ମୋତେ ବିଶ୍ୱାସ କରିବ ନା ନାହିଁ ?"

ଏଥର ମଧ୍ୟ ସେ କୌଣସି ଉତ୍ତର ଦେଲେ ନାହିଁ। ଆପଣା ପଛରେ ସେ କାଚର କବାଟଟିକୁ ଧଡ଼୍ କରି ବନ୍ଦ କରିଦେଲେ ଓ ଉଦ୍ୟାନରେ ଅନ୍ଧକାର ଭିତରେ ପ୍ରବେଶ କଲେ।

ସେ ଠିକ୍ କହୁଥିଲେ, ଆଜି ପ୍ରକୃତରେ ବଡ଼ ଗରମ ହେଉଚି। କୁଦ ଉପରକୁ ପଡ଼ିଥିବା

ଧଳା ପଥରର ଛୋଟିଆ ରାସ୍ତାଟି ପୃଥିବୀ ଉପରକୁ ସମ୍ପ୍ରସାରିତ ହୋଇ ଆସିଥିବା ଛାୟା ପଥ ପରି ଦେଖା ଯାଉଥିଲା। ସ୍ପନ୍ଦନ ଚଞ୍ଚଳ ରାତ୍ରି ଆକାଶ ତଳେ ସତେ ଅବା ଏକ ଜୁଆର ସ୍ରୋତ ପୁଣି ଥରେ ଏହି ପୃଥବୀର ପାତ୍ରଟିକୁ ଉପରକୁ ଉଠାଇ ନେଉଥିଲା। ଗୀର୍ଜାଟି ଘରଗୁଡ଼ିକର ଛାତ ଓ କୁହୁଡ଼ି ଉପରେ ଭାସୁଥିବା ପରି ମନେ ହେଉଥିଲା। ଟୁଲିପ୍ ଗଛ ତଳେ ପରସ୍ପରକୁ ପ୍ରେମାଲିଙ୍ଗନରେ ଭିଡ଼ି ଧରିଥିବା ବେଳେ ଏହିପରି ଗୋଟିଏ ରାତ୍ରି ସେହି ତରୁଣ ଜୀବନ ଦୁଇଟିକୁ କିପରି ମନେ ହେଉଥିବ, ଆଗାଥେ ଆପଣାର ଦେହ ଭିତରେ ତାହାହିଁ ଅନୁଭବ କରୁଥିଲେ। ସେହି ତରୁଣ ଦୁହିଁଙ୍କର ସୁଖର ପଦ୍ମବନକୁ ସେ ଆଜି ନଷ୍ଟ କରିଦେବାକୁ ଯାଉଚନ୍ତି। ସେହି ଯୁଗଳ ପ୍ରେମିକ ପ୍ରେମିକା ବର୍ତ୍ତମାନ ତାର ଖୁବ୍ ନିକଟରେ ଅଛନ୍ତି। ହୁଏତ ଟେକାଟାଏ ଫୋପାଡ଼ିଲେ ଯେତିକି ବାଟ ଯିବ, ସେତିକି ଦୂରରେ। ଆଜିର ଏହି ଅନ୍ଧକାର ସେମାନଙ୍କ ପ୍ରାଣରେ କେଉଁ ସ୍ୱର୍ଗୀୟତାର ସମ୍ପଦ ଅଜାଡ଼ି ଦେଉଥିବ, ତାହାରି ସ୍ମରଣ କରି ଆଗାଥେ ଆପଣା ଲାଗି ନୈରାଶ୍ୟର ଖାଦ୍ୟ ଆହରଣ କରୁଥିଲେ। ହୁଏତ ସେମାନେ ରାସ୍ତା ଉପରୁ ତାଙ୍କର ପାଦଶବ୍ଦ ଶୁଣି ପାରି ନାହାନ୍ତି। ଶୁଣି ପାରିଥିଲେ ମଧ୍ୟ ସେମାନଙ୍କୁ ନିବିଡ଼ କରି ଧରିଥିବା କୁହୁକର ମୁଗ୍ଧତା ସେମାନଙ୍କ ମନରୁ ସମସ୍ତ ଭୟ ଦୂରୀଭୂତ କରି ନେଇଥିବ। କାହିଁକି ସେ ବାହାରକୁ ଆସିଲେ, ସତେ କାହିଁକି ଆସିଲେ ? ଅନ୍ଧାରୁଆ ଖାଇବାଘରର ଛାତରେ ଜଳୁଥିବା ଆଲୋକର ଘନୀଭୂତ ଉଦ୍‌ଭାସ ତଳେ ସେ କାହିଁକି ଘର ଭିତରେ ଆବଦ୍ଧ ହୋଇ ନରହିଲେ ? ତାଙ୍କୁ ସ୍ପର୍ଶ କରିବାକୁ ଗୋପନରେ ସତୃଷ୍ଣ ହୋଇ ରହିଥିବା ସେହି ଆଳସ୍ୟ-ସ୍ଥବିର ବୃଦ୍ଧଙ୍କ ପାଖରେ ସେ ନରହିଲେ କାହିଁକି ? ତାଙ୍କ ପରି ଏଭଳି ଏକ ଶୋଚନୀୟ ଜୀବନ ଧାରଣ କରିଥିବା ଜଣେ ମଣିଷର ଏ ମଧୁମୟୀ ରାତ୍ରି ସହିତ କି ସମ୍ପର୍କ ଅଛି ? ମେରୀ ଆଉ ଗିଲେସ୍ ହୁଏତ ମୃତ୍ୟୁ ସମୟ ପର୍ଯ୍ୟନ୍ତ ମଧ୍ୟ ଏହି ରାତିଟିକୁ ମନେ ରଖିଥିବେ। ଏପରି ଗୋଟିଏ ଆନନ୍ଦମୟ ମୁହୂର୍ତ୍ତ ସେମାନଙ୍କୁ ଆଣି ଦେଇଥିବାରୁ ସେମାନେ ଭଗବାନଙ୍କୁ ଆଶୀର୍ବାଦ କରିବେ। ଆପଣାକୁ ସବୁବେଳେ ପରିଚାଳିତ କରି ଆସିଥିବା ଚିତ୍ତବୃତ୍ତ ପାଖରେ ସେ ପୁଣି ଆତ୍ମସମର୍ପଣ କଲେ। ଜୀବନର ଯାବତୀୟ ପ୍ରତିବନ୍ଧକର ସମ୍ମୁଖୀନ ହେବାପାଇଁ ସବୁଦିନେ ସେ ଏହାରି ଶରଣାପନ୍ନ ହୋଇଚନ୍ତି। କିନ୍ତୁ ଆଉ ଏଣିକି ସେ କଦାପି ସେହି ଚିତ୍ତବୃତ୍ତି ଦ୍ୱାରା ପ୍ରବଞ୍ଚିତ ହେବେ ନାହିଁ। ଟିକିଏ ଅଗ୍ରସର ହୋଇ ସେ ବଡ଼ ଟୁଲିପ୍ ଗଛଟି ପାଖରେ ପହଞ୍ଚିଲେ। ତାଙ୍କର ମୁଣ୍ଡ ଉପରେ ଝୁଲୁଥିବା ପତ୍ର ଶାଖାଗୁଡ଼ିକ ଧୀର ସମୀରଣରେ ମର୍ମରିତ ହୋଇ ଉଠୁଥାଏ। ସତେ ଯେପରି ରାତ୍ରି ନିଶ୍ୱାସ ମାରୁଚି ! କାଇଁ, ସେଠି ତ କେହି ନଥିଲେ। ସେମାନଙ୍କର ଗୋପନ-ମିଳନର ସ୍ଥାନଟିରେ ଥିବା ଘାସଗୁଡ଼ିକ ମଣିଷ ପାଦରେ ମଡ଼ା ହୋଇଥିବା ପରି ଦେଖା ଯାଉଥିଲା। କିନ୍ତୁ ଆଜି ରାତିରେ ସେମାନେ ନିଶ୍ଚୟ ଆଉ ଏକ ଲୁଚିବା ସ୍ଥାନ ସ୍ଥିର କରି ସେହିଠାକୁ ଯାଇଚନ୍ତି।

"ତୁମେ ମୋତେ ଖୋଜୁଥିଲ କି, ମାଡ଼ାମ୍ ଆଗାଥେ ?"

ମେରୀର କଣ୍ଠରୁ ବିଦ୍ରୂପମିଶ୍ରିତ ଏହି ବାକ୍ୟଟି ଶୁଣାଗଲା।

"ମୋତେ କ'ଣ ତୁମେ ଦେଖି ପାରୁ ନାହଁ? କୁଦଉପରୁ ତ ତୁମର ଦେହ -ରେଖାକୁ ମୁଁ ସ୍ପଷ୍ଟ ଭାବରେ ଦେଖି ପାରୁଚି। ମୁଁ ଆସି ଏଠି, କଟା ହୋଇଥିବା ଆଲଡ଼ର ଗଛଗୁଡ଼ିକ ପାଖରେ।"

ଲାଙ୍ଗୁଳ ଜାକି ସେଠାରୁ ପଳାଇ ପାରିଥିଲେ ବରଂ ଭଲ ହୋଇଥାନ୍ତା, - ଗାଲିଗାଇ ଭାବିବାକୁ ଲାଗିଲେ। ନା - ସେ ଅବଶ୍ୟ ଦେଖିବେ, ଅପରର ସୁଖକୁ ସେ ଅବଶ୍ୟ ସ୍ପର୍ଶ କରିବେ।

"ଏଇଠି.....ମୁଁ ଗୋଟିଏ କଟା ଗଛର ମୂଳ ଉପରେ ବସିଚି ।"

ବାଳିକାଟି ସେଠାରେ ପ୍ରକୃତରେ ଏକାକୀ ବସିଥିଲା, ଅନ୍ଧାର ଭିତରେ ନିଶ୍ଚଳ ହୋଇ ବସିଥିଲା, ଠିକ୍ ଗୋଟିଏ ଛୋଟିଆ ମାଈ ଠେକୁଆଟି ପରି ଚତୁର୍ଦ୍ଦିଗରେ ଖେଳି ବୁଲୁଥିବା ପବନରେ ଆପଣାର ସୁଗନ୍ଧ ଖେଳାଇ ଦେଇ ପୁରୁଷ-ଠେକୁଆକୁ ମୁଗ୍ଧ କରି ଆଣିବା ପାଇଁ।

"ମୋ' ପାଖରେ ବସ, ମୁଁ ତୁମ ପାଇଁ ଜାଗା କରିଦେଉଚି।"

"ଲେରୋଟ ନଈ ଭିତରୁ କିପରି ଗୋଟାଏ କାଲୁଆ ପବନ ଆସୁଚି।" ମାଡ଼ାମ୍ ଆଗାଥେ କହିଲେ, "ଏଠି ବସିଲେ ଥଣ୍ଡାରେ ସନ୍ନିପାତ ହୋଇଯିବ।"

"ନାଇଁ ମ, ସେଠି ଜଳୁଥିବା ନିଆଁ ମତେ ଭାରି ଉଷୁମ ଲାଗୁଚି।"

"ନିଆଁ? -କି ନିଆଁ?"

"ସେଇଠି,- ନଈ ଆରପାରିରେ।"

ଗାଲିଗାଇ ହୁତୁହୁତୁ ହୋଇ ଜଳୁଥିବା ନିଆଁ ଆଡ଼କୁ ନୀରବରେ ଅନାଇ ରହିଲେ। ପ୍ରାୟ ନିଭିଯିବା ପର୍ଯ୍ୟନ୍ତ ଶିଖାଟି କ୍ରମେ କମିକମି ଆସୁଥାଏ -ଶେଷକୁ ହଠାତ୍ ପୁଣି ଜଳିଉଠିଲା।

"ଏତେ ଦୂରରେ ଜଳୁଥିବା ନିଆଁରୁ ମୁଁ କୌଣସି ଉଷୁମ ପାଇପାରୁ ନାହିଁ। ତୋ' ଦେହରୁ ଆସୁଥିବା ଉତ୍ତାପ ହିଁ ମୋତେ ଉଷୁମ କରି ଦେଉଚି।"

ଦୁହେଁ ପରସ୍ପରର ଦେହକୁ ଦେହ ଲଗାଇ ବସିଥାନ୍ତି। ମେରୀର ତରୁଣ ଶରୀରରୁ ନିର୍ଗତ ହେଉଥିବା ଜୈବିକ ତାପ କ୍ରମେ ମାଡ଼ାମ୍ ଆଗାଥେଙ୍କୁ ଅସହ୍ୟ ବୋଧହେଲା। ମେରୀ କିଛି କହୁ ନଥାଏ। ସେ ତ ଅତି ପିଲାଟିଏ, ଠିକ୍ ପିଲାଟି ପରି ତା'ର ଜଳନ୍ତା ସିଗାରେଟ୍ ସାହାଯ୍ୟରେ ଅନ୍ଧାର ଶୂନ୍ୟଉପରେ ନାନାରକମର କୋଠି କାଟି ସେ ବେଶ୍ ଆନନ୍ଦ ଲାଭ କରୁଥିଲା। ଏତେବେଳେ ଯାଇ ଗାଲିଗାଇ ବୁଝିପାରିଲେ। ନଈ ଆର ପାରିରେ ଏ ଜଳନ୍ତା ଡ଼ାଙ୍ଗଟିଏ ଧରି କିଏ ହଲାଉଥିବାର ଦେଖାଯାଉଥିଲା। ଯୁବକଟି ଉପରେ ତା'ର ଆଖି

ପଡ଼ିନଥିଲା । କିନ୍ତୁ ଯୁବକଟି ଯେ ସେହିଠାରେ ଅଛି, ସେକଥା ସେ ଭଲକରି ଜାଣିଥିଲେ । ତା'ର ମୁଣ୍ଡ ଉପରେ ବୁଲାଉଥିବା ନିଆଁ ଡ଼ାଙ୍ଗଟି ଅପେକ୍ଷା ସେ ନିଜେ ଅଧିକ ଉଜ୍ଜ୍ୱଳ ଦେଖାଯାଉଥିଲା । ଯେତେବେଳେ ନିଆଁଟା ହଠାତ୍ ଟିକିଏ ଅଧିକ ଜଳି ଉଠିଲା, ସେତିକିବେଳେ ମୁହୂର୍ତ୍ତକପାଇଁ ତା'ର ମୁହଁଟା ଦିଶିଗଲା -ସେ ଗୋଡ଼କୁ ଫରକଟା କରି ଠିଆ ହୋଇଥାଏ । ତାପରେ ସେ ତା'ର ଦୁଇହାତକୁ ଲମ୍ୱାଇଲା -ତା'ପରେ ଅନ୍ଧାରରେ ଗ୍ରାସ ଭିତରେ ଅଦୃଶ୍ୟ ହୋଇଗଲା ।

ହଁ, ଗାଲିଗାଇ ସବୁ ବୁଝି ପାରିଲେ । ପ୍ରେମିକ ଓ ପ୍ରେମିକା ଉଭୟେ ଇଚ୍ଛା କରିଥିଲେ ଯେ ଗୋଟିଏ ତରବାରୀ ସେମାନଙ୍କୁ ବ୍ୟବହିତ କରି ରଖିବ, ବୃକ୍ଷଲତା-ପରିପୂର୍ଣ୍ଣ ପଥ-ଉପରେ ମର୍ମର ଶବ୍ଦ କରୁଥିବା ଓ ପ୍ରସ୍ତରଶଯ୍ୟା ଉପରେ କଳକଳ ନାଦ କରୁଥିବା ବହମାନ ଏହି ତରବାରୀର ଫଳକକୁ ଆପଣା ମଧ୍ୟରେ ରଖି ସେମାନେ ପରସ୍ପର ସହିତ ମିଳିତ ହେବେ । ଆଜି ସନ୍ଧ୍ୟାକାଳର ମିଳନ ଯଥାର୍ଥରେ ଅତୁଳନୀୟ । ପୃଥିବୀର ବୃକ୍ଷଲତା ଓ ତାରାପୁଞ୍ଜ ସହିତ ଆଜି ପରି ସେମାନେ ଆଉ କେବେ ଏକାତ୍ମତା ଅନୁଭବ କରିନଥାନ୍ତେ, -ଅନାଦି ଅଯୋନି ପରମପୁରୁଷ ସହିତ କଦାପି ଏପରି ସମ୍ମିଳିତ ହୋଇଥିବାର ଅନୁଭବ କରିନଥାନ୍ତେ । ଦଉଡ଼ି ପଳାଉଥିବା କୌଣସି ପଶୁ ଚାଲିଗଲାବେଳେ ଯେମିତି ଶୁଭେ, ଡ଼ାଳପତ୍ରଗୁଡ଼ାକ ସେମିତି ମଡ଼ମଡ଼ ହୋଇ ଭାଙ୍ଗିଯିବାର ଶବ୍ଦ ମେରୀ ଶୁଣିପାରିଲା । ସେତେବେଳକୁ ଗାଲିଗାଇ ଉଠି ଚାଲିଗଲେଣି ।

ବୈଠକଖାନାରେ ସେ ପ୍ରବେଶ କରି ଦେଖିଲେ, ଗଲାବେଳେ ଆର୍‌ମାଣ୍ଡ ଡୁବେର୍ନେଟ୍ ଯେଉଁଠି ଥିଲେ, ବର୍ତ୍ତମାନ ଠିକ୍ ସେହିଠାରେ ବସିଚନ୍ତି, ଖଣ୍ଡିଏ ଚୁରୁଟ୍ ଲଗାଇ ଟାଣୁଚନ୍ତି । ତାଙ୍କର ନାକ ଓ ମୁହଁ ଉପରୁ କୁଣ୍ଡଳାକାର ହୋଇ ଉଠୁଥିବା ଦୁର୍ଗନ୍ଧ ଧୂଆଁର ଆଚ୍ଛାଦନ ଭିତରେ ବସି ସେ କେଉଁ ବିଷୟରେ ଚିନ୍ତା କରୁଚନ୍ତି ? ତାଙ୍କର କୁଞ୍ଚିତ ଓ ଶିଥିଳ ଆଖିପତା ଦୁଇଟି ଭାରି ନିଷ୍ପଳ ଦେଖାଯାଉଥାଏ । ଠିକ୍ ଏହି ମୁହୂର୍ତ୍ତରେ ମାଡ଼ାମ୍ ଆଗାଥେଙ୍କୁ ଦେଖିବାକୁ ପଡ଼ିବ ନାହିଁ ବୋଲି ସେ ଭଲ କରି ଜାଣିଥିଲେ । ସିଧା ତାଙ୍କର (ଆଗାଥେଙ୍କର) ଘରକୁ ଯିବାରେ ତାଙ୍କର ଖୁବ୍ ବେଶୀ ଆପତ୍ତି ଅଛି କି ? -ବୋଲି ମାଡ଼ାମ୍ ଆଗାଥେ ତାଙ୍କୁ ପଚାରିଲେ ।

ଆଗାଥେ ପ୍ରକୃତରେ ସମ୍ପୂର୍ଣ୍ଣ କ୍ଳାନ୍ତ ହୋଇ ପଡ଼ିଥିଲେ ।

"ମେରୀକୁ ଦେଖିଲ ?"

ସେ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

"ଏକୁଟିଆ ?"

କିଛି କହିବା ଲାଗି ଗାଲିଗାଇ କେତେ ସେକେଣ୍ଡ ଯାଏ କୁଣ୍ଠାବୋଧ କଲେ। ସେ ଯାହା ଦେଖି ଆସିଚନ୍ତି, ଯଦି ଠିକ୍‌ଠିକ୍ ସେହି କଥା କହି ଦିଅନ୍ତି, ତାହା ଦ୍ୱାରା ତ ତରୁଣୀ ଦୁହିଁଙ୍କର ବାହାଦୁରୀ ଜଣା ପଡ଼ିଯିବ।

ସେ ଉତ୍ତର ଦେଲେ, - "ହଁ ଆଉ ନାହିଁ ।"

ସେ ଆଉ କଥାରୁ ଶିରାକାଢ଼ି ପଚାରିବାକୁ ଇଚ୍ଛା କଲେ ନାହିଁ। ଏଥର କଥା କହିଲାବେଳକୁ ତାଙ୍କର କଣ୍ଠ ବେଶ୍ କ୍ଷୀଣ ହୋଇ ଯାଇଥିଲା।

"ମୋର ଅନୁମାନ ଯେ ଆମେ ଏପରି ଏକ ଅବସ୍ଥାରେ ଆସି ପହଞ୍ଚିଲୁଣି...", କବାଟର କିଳିଣି ଉପରେ ହାତ ରଖୁରଖୁ ଆଗାଥେ ବୁଲିପଡ଼ି ତାଙ୍କ ଆଡ଼କୁ ଅନାଇଲେ।

"ମେରୀକୁ ତା'ର ଯାହା ଇଚ୍ଛା ତାହା କରିବା ଲାଗି ଛାଡ଼ିଦେବା କଥା ତୁମେ ଭାବୁନାହଁ ତ ?"

ଆର୍‌ମାଣ୍ଡ୍ କିଛି କହିଲେ ନାହିଁ। ଜୁଲିଆଙ୍କର ସମାଧି ଉପରେ ପଡ଼ି ଥିବା କଞ୍ଚାମାଟି ଶୁଖିଯିବା ପର୍ଯ୍ୟନ୍ତ ଅପେକ୍ଷା କରିବାଟା ଅଧିକ ସୁନ୍ଦର ହେବ ନାହିଁ କି ବୋଲି ଆଗାଥେ ତାଙ୍କୁ ପଚାରିବାକୁ ଯାଉଥିଲେ। ସେ ମୁଣ୍ଡ ହଲାଇଲେ।

"ହାୟ, ଅଭାଗିନୀ ଜୁଲିଆ, ପ୍ରିୟତମ ଜୁଲିଆ...ବର୍ତ୍ତମାନ ତାଙ୍କର କ'ଣ ଦଶା ହେବ ?..ଅବସ୍ଥାର ସମ୍ମୁଖୀନ ଅବଶ୍ୟ ହେବାକୁ ପଡ଼ିବ, ସେକଥା ତ ତୁମେ ଜାଣିଚ। କାଲି ଅତ୍ୟନ୍ତ ଅର୍ଥପୂର୍ଣ୍ଣ ଚାହାଣୀରେ ଡ଼ାକ୍ତର ସାଲୋନ୍ ମୋତେ କହୁଥିଲେ, "ଯେତେ ଶୀଘ୍ର ସେତେ ଭଲ ଶ୍ରୀଯୁକ୍ତ ତ୍ରୁବେର୍ନେଟ୍।"

ଗୃହଧାତ୍ରୀ ଗାତ୍ରକୁଞ୍ଚନ କଲେ, ସତେଅବା ସେ କହିବାକୁ ଚାହୁଁଥିଲେ -"ଓଃ, ଆମେ ସମସ୍ତେ ଡ଼ାକ୍ତର ସାଲୋନ୍‌ଙ୍କ କଥା ଜାଣିଚୁ! କିନ୍ତୁ ତାଙ୍କର ଉଦ୍ଦେଶ୍ୟରୁ ତାଙ୍କୁ ବହିଷ୍କୃତ କରିଦେବା ଉଚିତ ହେବ ନାହିଁ।

"ଡ଼ାକ୍ତର ସାଲୋନ୍ ବଡ଼ ବିଚାରଶୀଳ ମେଜାଜ୍‌ର ଲୋକ - ଡ଼ୋର୍ଥେର ତାଙ୍କ ଭଳି ଖୁବ୍ କମ୍ ଲୋକ ଅଛନ୍ତି -ଅବଶ୍ୟ ସଂସାରରେ ଏହିପରି ଲୋକ ଯେ ବିକ୍ଷିପ୍ତ ହୋଇ ରହିଚନ୍ତି, ସେଥିରେ କୌଣସି ସନ୍ଦେହ ନାହିଁ...ମନୁଷ୍ୟ ଜାତିଟା ପ୍ରତି ତୁମର ଭାରି ଅଶ୍ରଦ୍ଧା ରହିଚି, ଆଗାଥେ। କିନ୍ତୁ ଜାଣିଥାଅ, ଏପରି ସମୟ ଆସେ, ଯେତେବେଳେ ମନୁଷ୍ୟ ଉପରେ ଆସ୍ଥା ରଖିବାକୁ ହିଁ ପଡ଼େ। "

ନିଜକୁ ସଂବୃତ କରି ରଖିବାର କୌଣସି ଚେଷ୍ଟା ନକରି ସେ କହିଗଲେ, ଏଥିପୂର୍ବେ ଜୁଲିଆଙ୍କଠାରୁ କଥାର ଗୁଳି ଆସି ବାଜିଯିବ ବୋଲି ଆଶଙ୍କା କରି ସେ କେତେଥର ଏହିପରି ମନ୍ତବ୍ୟ ମାନ ଦେଇଥିଲେ। "ତୁମର ଶିକାର-କୋଟଟି ଧୋବାଘରେ ଦେଇ ଆସିବା କଥା ତୁମର ମନେ ପଡ଼ିଲା ନା ନାହିଁ ? -ସୁତୀକ୍ଷ୍ଣ କଣ୍ଠରେ ସେ ଏହି କଥାଗୁଡ଼ାକ ଯେପରି ଆଜି

ମଧ୍ୟ ଶୁଣିପାରୁଥିଲେ। କିନ୍ତୁ ଜୁଲିଆଙ୍କର ବନ୍ଧୁକ ଆଜି ଚିରଦିନପାଇଁ ଅପସୃତ ହୋଇଯାଇଚି। ଆଜି ପୃଥିବୀର କୌଣସି ଶକ୍ତି ଆର୍‌ମାଣ୍ଡ ଡୁବେର୍ନେଟ୍‌ଙ୍କୁ ତାଙ୍କ ନିଜର କଣ୍ଠର ସ୍ୱର ନିଜେ ଶୁଣିବାରୁ ନିବୃତ୍ତ କରି ପାରିବନାହିଁ। କୁଣ୍ଠିତ ଭାବରେ ପୁଣି ସେ କହିଲେ :

"ଯେତେ ଶୀଘ୍ର ସେତେ ଭଲ ଏଥିରେ ତୁମର ସମ୍ମତି ଅଛି ତ ?"

ଗାଲିଗାଇ ଘର ଭିତରକୁ ଫେରିଆସିଲେ : 'ତାହାହେଲେ ମୁଁ ବୁଝିବି ଯେ ତୁମେ କୌଣସି ଏକ ବିବାହ ସମ୍ପର୍କରେ ବର୍ତ୍ତମାନ କହିବାକୁ ଯାଉଚ ? ଡ଼ାକ୍ତର ସାଲୋନ୍‌ଙ୍କ ପୁଅ ବିଷୟରେ ତୁମେ ଆଦୌ କୌଣସି କଥା ଜାଣକି ?...ପ୍ରକୃତରେ ସେ କିପରି ଧରଣର ପିଲା, ସେ ସମ୍ବନ୍ଧରେ ତୁମର ଏତେଟିକିଏ ହେଲେ ଧାରଣା ଅଛି କି ?"

"ସେ ଯେପରି ପିଲା ହୋଇଥାଉ ପଛକେ, ମେରୀ ତାକୁ ଭଲପାଏ ...ତା'ର ବୟସରେ ସବୁ ଯୁବକ ସେହି ଏକା ପରି। ତେଣୁ ଜଣକୁ ଛାଡ଼ି ଆଉଜଣକୁ ବାଛିବାରେ କୌଣସି ଲାଭ ନାହିଁ।"

ଆପଣାର ସ୍ୱରକୁ କ୍ରମଶଃ ଧୀରକରି ଆସି ଆଗାଥେ ଫୁସ୍ ଫୁସ୍ କରି କହିଲେ : "ସେ ବିଲ୍‌କୁଲ୍ ଗୋଟାଏ ଅସତ ଚରିତ୍ର ପିଲା...ତା' ବିଷୟରେ ଘଟଣାକ୍ରମେ ମୁଁ କେତେଗୁଡ଼ାଏ କଥା ଜାଣିବାକୁ ପାଇଚି।"

"କିଭଳି କଥା ?" -ସେ ପଚାରିଲେ। ଗାଲିଗାଇ କାନ୍ଥକୁ ଆଉଜି ଠିଆ ହୋଇଥାନ୍ତି। ଅବଶ୍ୟମ୍ଭାବୀ ଘଟଣାଚକ୍ର ଉପରେ ପ୍ରଭାବ ବିସ୍ତାର କରିବାକୁ ତାଙ୍କର ଯେଉଁ କ୍ଷମତା ଥିଲା, ସେହି କ୍ଷମତା ଉପରୁ ତାଙ୍କର ସମସ୍ତ ବିଶ୍ୱାସ ତୁଟି ଯାଇଥାଏ। ତଥାପି ସେ ଆପଣାର ଇଚ୍ଛାବୃତ୍ତର ପ୍ରତିଫଳନ -ପ୍ରକ୍ରିୟା ପାଖରେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହେଲେ।

"ସେଗୁଡ଼ାକ ସହଜରେ କୁହା ଯାଇପାରିବ ନାହିଁ -କିନ୍ତୁ ମୁଁ ଯେଉଁସବୁ କଥା କହିବାକୁ ଯାଉଚି -ଅଃ, ସେଗୁଡ଼ାକ ପ୍ରକୃତିରେ ବଡ଼ ଘୃଣାକର କଥା," ତାଙ୍କର ସ୍ୱରରେ ଘୃଣା ଅପେକ୍ଷା ଅଧିକ କ୍ଳାନ୍ତିର ଭାବ ପ୍ରକାଶ ପାଉଥିଲା।

"କେଉଁସବୁ କଥା ?" ଶ୍ରୀଯୁକ୍ତ ଡୁବେର୍ନେଟ୍ ପୁଣି ପଚାରିଲେ। ଆପଣାର କପାଳ ଉପରେ ଥରେ ହାତ ବୁଲାଇ ଆଣି ଶୁଷ୍କ ଭାବରେ ଆଗାଥେ କହିଲେ.."କିନ୍ତୁ ଯେତେ ଯାହା ହେଉ ପଛକେ, ମୋ' ପାଖରେ କୌଣସି ପ୍ରମାଣ ନାହିଁ.." ଠିକ୍ ସେହି ମୁହୂର୍ତ୍ତରେ ସେ ତାଙ୍କର ଦୁଃଖର ସର୍ବୋଚ୍ଚ ଚୂଡ଼ାରେ ଯାଇ ପହଞ୍ଚିଲେ। ଧୂଆଁର ମେଘ-ପଟଳ ଭିତରେ ବସି ରହିଥିବା ବୃଦ୍ଧ ଆଦୌ ହଲଚଲ ହେଉ ନଥାନ୍ତି। ତାଙ୍କର ଚିଲା ଆଖି ଦୁଇଟା ଶିଥିଳ ଓ ରେଖାଙ୍କିତ ଆଖିପତା ଭିତରେ ଚିକ୍‌ଚିକ୍ କରୁଥାଏ। ତାଙ୍କର ଅଚଳ ଶରୀରରେ ବେଙ୍ଗର ଏକ ଚମତ୍କାର ସାମଞ୍ଜସ୍ୟ ପ୍ରତୀତ ହେଉଥାଏ। ସେମାନେ ଶୁଣିପାରିଲେ, ମେରୀ ଘର

ଭିତରକୁ ଆସିବା ପୂର୍ବରୁ ବାହାରେ କବାଟ ପାଖରେ ଟିକିଏ ଠିଆ ହେଲା । କବାଟଟାକୁ ସେ ଅଧା ମେଲା କଲା, ତା'ର ଧାତ୍ରୀଙ୍କୁ ଦେଖିଲା ଓ ପୁଣି ତତ୍‌କ୍ଷଣାତ୍ କବାଟ ବନ୍ଦ କରିଦେଲା । ତା'ର ଧୀର ପଦକ୍ଷେପଗୁଡ଼ିକ କ୍ରମେ ଅଶ୍ରାବ୍ୟ ହୋଇ ମିଳେଇ ଯିବାର ଗାଲିଗାଉ କାନଡ଼େରି ଶୁଣୁଥିଲେ ।

"ଏଠାରେ ଆଉ ମୁଁ କୌଣସି କାମରେ ଆସିବି ନାହିଁ" -ସେ କହିଲେ: "ମୁଁ ଏହି ସପ୍ତାହରେ ଏଠାରୁ ଚାଲିଯିବି ।"

ଏ କଥା ଶୁଣି ବେଙ୍ଗର ବପୁଟି ଈଷତ୍ ଭାବ ଚଞ୍ଚଳ ହୋଇ ଉଠିଲା । ଆପଣାର ଛୋଟ ଗୋଡ଼ ଦୁଇଟି ଉପରେ ଭରା ଦେଇ ସେ ଉଠି ଠିଆ ହେଲେ ।

"ତୁମେ ନିଶ୍ଚୟ ପାଗଳ ହୋଇଗଲଣି, ଆଗାଥେ !" -ସେ କହିଲେ ।

"ତୁମେ ହିଁ ପାଗଳ ହୋଇଗଲଣି । ଯେଉଁ ପିଲାଟିର ଧାତ୍ରୀ ଭାବରେ ମୁଁ ଏଠାରେ ରହିଥିଲି, ସେ ତ ବିବାହ କରିବାକୁ ଯାଉଚି । ତେବେ ଏ ଘରେ ରହିବା ପାଇଁ ମୋର ଆଉ କଣ ଯୁକ୍ତିଯୁକ୍ତତା ରହିଲା ?"

ପାଉଁଶଦାନୀ ଭିତରେ ଆର୍‌ମାଣ୍ଡ୍ ଚୁରୁଟ୍‌ଟାକୁ ପକାଇ ଦେଲେ ଏବଂ ମାଡ଼ାମ୍ ଆଗାଥେଙ୍କ ଆଡ଼କୁ ଅଗ୍ରସର ହେଲେ ।

"ଆଜି ସନ୍ଧ୍ୟାରେ -ଅନ୍ତ୍ୟେଷ୍ଟିକ୍ରିୟାର ଏହି ସନ୍ଧ୍ୟାରେ -ମୋର ମନ କଥା ଖୋଲି ତୁମକୁ କହିବାଲାଗି ମୋର ସୁଅବସର ନାହିଁ । ତଥାପି ମୁଁ ନିଶ୍ଚିତ ଭାବରେ ଅନୁଭବ କରୁଚି ଯେ ଜୁଲିଆ ଏହି ପ୍ରସ୍ତାବକୁ ଅବଶ୍ୟ ସମର୍ଥନ କରିବ..ବସ୍ତୁତଃ, ଜୁଲିଆ ତାହାହିଁ ଆଶା କରିଥିଲା...ମୋର କଥାର ଅର୍ଥ ତୁମେ ଅବଶ୍ୟ ଜାଣି -ସାରିବଣି । ବର୍ତ୍ତମାନ ତୁମକୁ ମୁଁ ଏତିକି ବୁଝାଇଦେବାକୁ ଚାହେ ଯେ ତୁମର ଜୀବନଯାପନ ପ୍ରଣାଳୀରେ କୌଣସି ପରିବର୍ତ୍ତନ ହେବ ନାହିଁ । ବର୍ତ୍ତମାନ ତୁମେ ଯେଉଁ ବଖରାରେ ରହୁଚ, ଇଚ୍ଛା କଲେ ସେହି ବଖରାରେ ମଧ୍ୟ ରହିପାରିବ ।"

ଟିକିଏ ଦୂରକୁ ଚାଲିଯାଇ ସେ ପୁଣି କ୍ଷୀଣ କଣ୍ଠରେ କହିଲେ : "ତୁମଠାରୁ ମୁଁ କିଛି ଆଶା କରୁ ନାହିଁ । ତୁମର ସମ୍ମତି ନ ନେଇ ତୁମ ଉପରେ ମୁଁ ଅଙ୍ଗୁଳିସ୍ପର୍ଶ ମଧ୍ୟ କରିବି ନାହିଁ ବୋଲି ଶପଥ କରି କହୁଚି । ଠିକ୍ ତୁମର ବାପା ପରି ମୁଁ ତୁମ ସହିତ ବ୍ୟବହାର କରିବି । ଏହି ଅଭ୍ୟାସଟି ମୁଁ ଭଲକରି ଶିଖିଚି ।"

ଆପଣାର କ୍ରନ୍ଦନକୁ ସେ ସଂବରଣ କରି ରଖିଲେ । ନିକୋଲାସ୍ ତାଙ୍କ ମୁହଁକୁ ଛେପ ପକାଇବା ଦିନର କ୍ରନ୍ଦନ ସହିତ ଏହାର ତୁଳନା କରାଯାଇ ପାରିବ -"ତୁମର ବ୍ୟବହାରରେ ମୋ'ର ଘୃଣାଜାତ ହେଉଚି ।" ତଥାପି ଆଗାଥେ ବିସ୍ମିତ ହୋଇ ଲକ୍ଷ୍ୟ କଲେ ଯେ ତାଙ୍କର

ଗୋଟାଏ ଅଂଶ 'ନାହିଁ' ବୋଲି କହି ପାରିଲା ନାହିଁ। ପ୍ରକୃତରେ କହିବାକୁ ଗଲେ ଏକ ପ୍ରକାର ସମ୍ମତିଜ୍ଞାପନ କରି ସାରିଥିଲା। କିନ୍ତୁ ତଥାପି ସେ କଦାପି ସମ୍ପୂର୍ଣ୍ଣ ପରାଜୟ ସ୍ୱୀକାର କରିବାର ଜନ୍ତୁ ନୁହନ୍ତି। ତାଙ୍କ ଜୀବନର ଅନୁଦ୍‌ଘାଟିତ ଦୁର୍ଘଟଣାଟିକୁ ଡ଼ୋର୍ଥେର ଲୋକମାନେ ଏକ ବିଜୟରୂପେ ଦେଖିବାକୁ ପାଇବେ। ଏପରି କି ମେରୀ ଆଗରେ ମଧ୍ୟ ସେ ମୁଣ୍ଡ ଟେକି ବାଟ ଚାଲି ପାରିବେ। କେବଳ ସେ ନିଜେ ଯୁଦ୍ଧକ୍ଷେତ୍ରର ଅଧିକାରିଣୀ ହୋଇ ରହିବେ। ଆପଣାର ସମ୍ମୁଖକୁ ଚାହିଁ ସେ ଅନାଗତ କେତେ କେତେ ବର୍ଷର ଚିତ୍ର ଦେଖି ପାରିଲେ। ଯେଉଁ ବାଳିକା ଆଜି ତାଙ୍କୁ ଏପରି ଅପମାନଜନକ ଭାବରେ ବିଦ୍ରୂପ କରିଚି, ବଞ୍ଚିଥିବା ପର୍ଯ୍ୟନ୍ତ ତାହାରି ଭାଗ୍ୟ ଉପରେ ଏକ ପଥର ପରି ହୋଇ ରହି ପାରିବେ।

ଶ୍ରୀଯୁକ୍ତ ଡୁବେର୍ନେଟ୍ ବସି ବସି ମୁହୂର୍ତ୍ତ ଗଣୁଥିଲେ। ଇତି ମଧ୍ୟରେ ପୂରା ଗୋଟାଏ ମିନିଟ ଗତ ହୋଇଗଲାଣି, ତଥାପି ଆଗାଥେ କୌଣସି ପ୍ରତିବାଦ କରି ନାହାନ୍ତି।

"ବର୍ତ୍ତମାନ ଆମ ଭିତରେ ଯାହାସବୁ କଥାବାର୍ତ୍ତା ହେଲା, ତୁମେ ସେସବୁ ଭୁଲିଯାଅ, ଆଗାଥେ! ତରବର ହେବାର କୌଣସି କାରଣ ନାହିଁ। ସବୁଠାରୁ ବଡ଼ କଥା ହେଉଚି ଯେ ତୁମେ ସ୍ଥିର ହୋଇ ସବୁକଥା ଚିନ୍ତା କରିବ ଓ ମୁଁ ଯାହା ସବୁ କହିଲି, ସେ ବିଷୟରେ ଏକ ସମୀଚୀନ ନିଷ୍ପତ୍ତିରେ ଉପନୀତ ହେବ। ବିବାହ ପୂର୍ବରୁ ଏହି କେତୋଟି ଦିନ ମେରୀ ତୁମକୁ ସବୁଠାରୁ ଅଧିକ ଆବଶ୍ୟକ କରିବ। ତୁମେ ତା'ର ଲୁଗାପଟାର ବନ୍ଦୋବସ୍ତ କରିଦେବ, ତୁମେ ତା'ର ପରିଚାରିକା ହୋଇ ରହିବ। ..ତୁମ ବୟସରେ ଲୋକେ ସୁଖ କହିଲେ ସାଧାରଣତଃ ଯାହା ବୁଝନ୍ତି, ସୁଖ ପ୍ରକୃତରେ ତାହା ନୁହେଁ। ଅପର ଉପରେ ମୁଁ ଆଦୌ ନିର୍ଭର କରୁ ନାହିଁ -ଏହି ସତ୍ୟକୁ ହୃଦୟଙ୍ଗମ କରିବା ହେଉଚି ସୁଖ। ମୋ'ର ସମାଜରେ ମୁହିଁ ସର୍ବାଗ୍ର ସ୍ଥାନ ଅଧିକାର କରିଚି, ଏହି ବିଷୟରେ ନିଶ୍ଚିତ ରହିବା ହେଉଚି ସୁଖ। ସୁଖ...."

ଆଗାଥେ କଥା ମଝିରେ ବାଧା ଦେଲେ।

"ମୋ' ମୁଣ୍ଡରେ ମୁଁ କ'ଣ ସବୁ ଚିନ୍ତା କରୁଥିଲି। ତୁମର କଥା ମୁଁ ଆଦୌ ମନେ ରଖି ପାରିଲି ନାହିଁ।"

ଆଗାଥେ ତାହା ହେଲେ ଇତି ମଧ୍ୟରେ ଜୁଲିଆଙ୍କର ବନ୍ଧୁକଟିକୁ ଆପଣା ହାତରେ ଉଠାଇ ସାରିଲେଣି।

ସେ ଗୃହତ୍ୟାଗ କରି ଗଲା ପରେ ଆର୍‌ମାଣ୍ଡ୍ ଆଲୁଅ ପାଖକୁ ଯାଇ ପୁଣି ବସି ପଡ଼ିଲେ। ସେ ଭାବୁଥିଲେ : ଅଠାବନ ବର୍ଷ ବୟସରେ ପୁଅଟିଏ ପାଇବା ଲାଗି କ'ଣ ସେ ଅତି ବୁଢ଼ା ହୋଇଗଲେଣି ? ଡ଼ାକ୍ତର ସାଲୋନ୍‌ଙ୍କ ସହିତ ଏ ବିଷୟରେ ପରାମର୍ଶ କରିବାକୁ ପଡ଼ିବ। କିନ୍ତୁ ନା – ଜୀବନଠାରୁ ଏତେ ଗୁଡ଼ାଏ ଆଶା କରିବା ତାଙ୍କ ପକ୍ଷରେ ଆଦୌ ଉଚିତ ନୁହେଁ।

ତାଙ୍କର ଆଉ କୌଣସିକାଳେ ପୁଅ ହେବାଟା ଆଦୌ ସମ୍ଭବ ନୁହେଁ। କିନ୍ତୁ ବର୍ତ୍ତମାନ, ଏଇ ମୁହୂର୍ତ୍ତରେ ତାଙ୍କ ପାଇଁ ଯେଉଁଟା ସବୁଠାରୁ ବଡ଼ ସତ କଥା, ସେ ତାହା ଜାଣିଥିଲେ। ବେଲମନ୍ତର ଉତ୍ତରାଧିକାରିଣୀ ସହିତ ସେ ବିବାହ କରିବାକୁ ଯାଉଚନ୍ତି। ସେ ମାଡ଼ାମ୍ ଆଗାଥେଙ୍କର ସ୍ୱାମୀ ହେବେ, ଆଉ ବେଲ୍‌ମନ୍ତ୍ ତାଙ୍କର ସମ୍ପତ୍ତି ହୋଇଯିବ।

## କୋଡ଼ିଏ

"ହାୟରେ ବିଧାତା, ମୁଁ ତ ଶକ୍ତ ପ୍ରଲୋଭନରେ ପଡ଼ିଯାଇଥିଲି, କିନ୍ତୁ ମୋର ସୌଭାଗ୍ୟକୁ କଣ୍ଟା ଗିଳିବାଟା ବାକୀ ଥିଲା" -ଠିକ୍ ସେହିଦିନ ସନ୍ଧ୍ୟାରେ ମାଡ଼ାମ୍ ପ୍ଲାସାକ୍ ପୁଅ ଆଗରେ କହିଲେ। ତହିଁଆରଦିନ ସକାଳେ ନିକୋଲାସ୍‌ର ପାରିସ୍ ଯିବା କଥା। ଛାତରେ ଝୁଲୁଥିବା ଆଲୁଅଟି ତଳେ ବର୍ତ୍ତମାନ ସେ ବସିଥାଏ, ମାଆ ତାକୁ ରାତ୍ରିଭୋଜନ ପରିବେଷଣ କରି ଦେଉଥାନ୍ତି। ମାଆ ଏ ଘଟଣାଗୁଡ଼ିକୁ ଏପରି ସହଜ ଭାବରେ ଗ୍ରହଣ କରିନେବେ ବୋଲି ସେ କଳ୍ପନା କରି ନଥିଲା। ଅନ୍ତତଃ ସେହି କଥାଟା ତାକୁ କେତେକ ପରିମାଣରେ ସାନ୍ତ୍ୱନା ଦେଉଥିଲା।

"ମାଡ଼ାମ୍ ଆଗାଥେଙ୍କୁ ମୁଁ ଯେଉଁ ମୁହୂର୍ତ୍ତରେ ମୋ' ରୋଷେଇଘରକୁ ପ୍ରବେଶ କରିବାର ଦେଖିଲି, ମୁଁ ଠିକ୍ ଅନୁମାନ କରିନେଲି ଯେ ଏଥର ସବୁ ଭୁଷୁଡ଼ି ପଡ଼ିବା ସୁନିଶ୍ଚିତ ହୋଇ ଆସିଲାଣି। ତଥାପି ଯାହା ହେଲା, ତାହା ଆମର ମଙ୍ଗଳ ପାଇଁ ହିଁ ହେଲା। ମୋର ଆଖି ଯେ ଏପରି ହଠାତ୍ ଖୋଲିଗଲା, ଏହାକୁ ତୁ ଗୋଟାଏ ଅଦ୍‌ଭୁତ ଘଟଣା ବୋଲି ମନେ କରୁ ନାହୁଁ କି ? ତା' ସହିତ ମୋତେ ଏକତ୍ର ବାସ କରିବାକୁ ପଡ଼ିବ, ତା'ର ଅଧୀନରେ ରହିବାକୁ ପଡ଼ିବ, ଏ କଥା ଭାବିଲାବେଳକୁ ତ ମୋର ମଧ୍ୟ ଆତଙ୍କିତ ହେବାର ଉଚିତ ଥିଲା। ଆଉ ତୋ' ପରି ଜଣେ କୋମଳ ଓ ସରଳ ପ୍ରକୃତିର ଜୀବନକୁ ଗିଳି ପକାଇବାକୁ ତାକୁ ଗୋଟାଏ ସପ୍ତାହ ମଧ୍ୟ ଲାଗି ନଥାନ୍ତା, ସେଥିରେ ଆଉ ସନ୍ଦେହ ଅଛି ନା ? ଓଃ ତୋ'ର ଟିକିଏ ବଳବାନ୍ ହେବା ଉଚିତ ଥିଲା, ମୋର ଜାଣିବାରେ ଠିକ୍ କୌଣସି ବଳବାନ୍ ଲୋକ ପରି। ଏ ସଂସାରରେ ଏପରି କେତେକ ସ୍ତ୍ରୀଲୋକ ଅଛନ୍ତି, ଯେଉଁମାନଙ୍କୁ କି ଆଚ୍ଛାକରି ଗୋଟିଏ କଠିନ୍ ଆଘାତ ଦେବା ପାଇଁ ଜଣେ ପୁରୁଷର ପ୍ରୟୋଜନ ଥାଏ।"

"ତାକୁ ମୁଁ ଗୋଟାଏ ଭଲକରି କଠିନ ଆଘାତ ଦେଇ ପାରିଚି।" ନିକୋଲାସ୍ କହିବାକୁ ଲାଗିଲା : "ତୁ ଯେତେ କଠିନ ବୋଲି କଳ୍ପନା କରି ପାରିବୁ। ତା'ଠାରୁ ଅନେକ ଅଧିକ।" -କିନ୍ତୁ ମାଆ ଶୁଣି ପାରିବା ଭଳି ବଡ଼ ପାଟିରେ ସେ ଏତକ କହିଲା ନାହିଁ। ଆପଣାର ନାକ ଚାରିପାଖରେ ଥିବା ସଂସାରଟି ଛଡ଼ା ଆଉ ଅଧିକ ଦେଖି ପାରିବାର କି ଶକ୍ତି ଏହି ବୁଢ଼ୀର ଅଛି ? (ତାହାର ଚଷମା ଏ ବିଷୟରେ ତାକୁ କୌଣସି ସାହାଯ୍ୟ କରି ପାରୁନାହିଁ) ଏଇ

ବୁଢ଼ୀ ହେଉଚି ତା'ର ମାଆ, ଆଉ ସେ ନିଜେ ଏ ବୁଢ଼ୀର ପୁଅ। ଯେଉଁମାନେ ଆପଣା ଜୀବନରେ ତାକୁ ପ୍ରଶସ୍ତ ସ୍ଥାନ ଦେଇଥିଲେ, ତା'ର ଜୀବନର ଶେଷ ରକ୍ଷାବନ୍ଧ ପାଖକୁ ଫେରି ଆସିବାକୁ ଯେଉଁମାନେ ତାକୁ ବାଧ୍ୟ କରୁ ନଥିଲେ, ସେହି କୋମଳ ହୃଦୟ ବ୍ୟକ୍ତିମାନଙ୍କ ପ୍ରତି ତା'ର ହୃଦୟରେ ଅନେକ କୋମଳତା ଓ ମଧୁରତା ଭରି ରହିଥିଲା।

"ସେ ବର୍ତ୍ତମାନ ଭାରି ସୁନ୍ଦର ଦେଖାଯାଉଚି, ସବୁବେଳେ ତାକୁ ଏହିପରି ସୁନ୍ଦର ଦେଖିବା ହିଁ ମୋ'ର ଇଚ୍ଛା। ସେ ଯେତେବେଳେ ଗୀର୍ଜା ଭିତରୁ ବାହାରିକରି ଆସୁଥିଲା, ସେତେବେଳେ ଅତି ନିକଟକୁ ଯାଇ ତାକୁ ଦେଖିବା ଉଚିତ ନଥିଲା। ତା'ର ଆଖି ଦୁଇଟି ଦେଖିବାକୁ ମତେ ଭଲ ଲାଗିବା ଉଚିତ ଥିଲା।"

ନିକୋଲାସ୍ ଆଡ଼କୁ ମୁହଁ କରି ସେ ବସିଲେ। ଖଣ୍ଡେ ଚିଜ କାଟି ତା'ର ଥାଳୀରେ ଦେଲେ। ଖୁବ୍ ଶାନ୍ତ ଭାବରେ ନିକୋଲାସ୍ ଉତ୍ତର ଦେଲା।

"ତା'ର ଆଖି ଶୁଷ୍କ ହୋଇଯିବାକୁ ଆଉ ବେଶୀ ବିଳମ୍ବ ହେବ ନାହିଁ। -ଅତି ଅଳ୍ପଦିନରେ ତ ସେ ମାଡ଼ାମ୍ ଆର୍‌ମାଣ୍ଡ୍ ଡୁବେର୍ନେଟ୍‌ରେ ପରିଣତ ହୋଇଯିବ।"

"ମାଡ଼ାମ୍ ଡୁବେର୍ନେଟ୍? ତା' ହେଲେ ପବନ ସେଇ ଆଡ଼କୁ ବୋହିବାକୁ ଆରମ୍ଭ କଲାଣି? ହୁଏ ତ ତୋ' କଥା ସତ ହୋଇପାରେ - କିନ୍ତୁ କେଡ଼େ ଅଦ୍‌ଭୂତ କଥା ଏ !"

ମାଡ଼ାମ୍ ପ୍ଲାସାକ୍ ପ୍ରକୃତରେ ବଡ଼ ଅବାକ୍ ହୋଇଗଲେ।

"ଯଦି ମାଡ଼ାମ୍ ଆଗାଥେ ସେ କଥା କରି ପାରିବେ, ତେବେ ତାଙ୍କ ଭିତରେ ଭାରି ସାହସ ଅଛି ବୋଲି କହିବାକୁ ହେବ। କିନ୍ତୁ ଆମ ସହିତ ସେ କେଡ଼େ ନିକୃଷ୍ଟ ଖେଳଟାଏ ଖେଳିବେ ?"

"କେତେ ନିକୃଷ୍ଟ ଖେଳ ସେ ଖେଳିବେ ?" ଅତି କ୍ଳାନ୍ତ ଭାବରେ ସେ ପଚାରିଲା, "ମୋତେ ବିଶ୍ୱାସ କର, ତଦ୍ୱାରା ଆମର ମଙ୍ଗଳ ହିଁ ହେବ।"

ସମ୍ମୁଖରେ ଥିବା ଟେବୁଲ ଉପରେ ତା'ର ସ୍ୱଚ୍ଛ ହାତ ଦୁଇଟି ନିଶ୍ଚଳ ହୋଇ ପଡ଼ିଥାଏ। ହଁ, ସବୁ କେବଳ ମଙ୍ଗଳ ପାଇଁ। ଆଖିରେ ଗୋଟାଏ ଶୂନ୍ୟ ଦୃଷ୍ଟି ଭରି ଦେଇ ମାଡ଼ାମ୍ ପ୍ଲାସାକ୍ ଭାବୁଥିଲେ। ସେ କହିଲେ :

"କିନ୍ତୁ ଯାହା ହେଉ ପଛକେ, ସାଲୋନ୍ ଘରର ସେହି ପିଲାଟିର ପଛେ ପଛେ ଏଣିକି ଗୋଟିଏ ଶତ୍ରୁ ଲାଗିରହିବ, ଯଦି ସେ କୌଣସି ଚକ୍ରାନ୍ତ କରି ଦୁହିଁଙ୍କର ବିବାହକୁ ସ୍ଥଗିତ କରିଦେଇ ନ ପାରେ।"

ନିକୋଲାସ୍ ମୁଣ୍ଡ ହଲାଇଲା।

"ନାଁ, ବର୍ତ୍ତମାନ ବନ୍ଦ କରିବା ପାଇଁ ଆଉ କାହାର ଶକ୍ତି ନାହିଁ..କିନ୍ତୁ ତା'ର ଜୀବନସାରା

ସେ ଆନନ୍ଦର ସମସ୍ତ ସୁଖସୌଧକୁ ଭାଙ୍ଗିଦେବାକୁ ଚେଷ୍ଟା କରୁଥିବ।"

"ସେ ସବୁଥିରେ ହାତ ପୂରାଇ ଆଉ ଚୁମୁଟା ଖାଇବା ଦରକାର ନାହିଁ।"

"ସେ ବିଷୟରେ ତୁ ନିଶ୍ଚିନ୍ତ ହୋଇଯା'। ସେ ସବୁ ଗୋଳମାଳରେ ଆଉ ମୁଁ କଦାପି ପଶିବାକୁ ଯିବି ନାହିଁ।

ଆପଣା ପକେଟ୍ ଭିତରେ ଥିବା ଚିଠିଟିକୁ ସେ ହାତମାରି ଦେଖିଲା। ସେ ଦିନ ଗିଲେସ୍ ସେହି ଚିଠିଟି ତାହାର ହାତରେ ଦେଇଥିଲା। ମେରୀ ତା' ପାଖକୁ ଆସିଥିବା ଚିଠିଟିକୁ ମୁଖସ୍ଥ କରି ପକାଇଥିବା ପରି ସେ କିନ୍ତୁ ଚିଠିଟି ମୁଖସ୍ଥ କରି ପାରି ନଥିଲା। ଗିଲେସ୍ ସେହି ଶେଷ ସନ୍ଧ୍ୟାଟି ନିକୋଲାସ୍ ସହିତ କଟାଇ ପାରିଲା ନାହିଁ ବୋଲି କ୍ଷମା ପ୍ରାର୍ଥନା କରିଥିଲା। ଆଉ ଅଳ୍ପଦିନ ପରେ ତ ପାରିସ୍‌ରେ ଦେଖା ହେବ ? ସେଠି ଛାଡ଼ି ଆସିଥିବା କେତେକ ଲୁଗାପଟା ଓ ବହିପତ୍ର ଆଣିବା ଲାଗି ଗିଲେସ୍‌କୁ ପାରିସ୍ ଯିବାକୁ ପଡ଼ିବ। ତା'ପରେ ସଂଗେ ସଂଗେ ସେ ପୁଣି ଡ୍ରୋର୍ଥେକୁ ଫେରି ଆସିବ। ଜାନୁଆରୀ ମାସରେ ବିବାହ ହେବାର ସ୍ଥିର ହୋଇ ସାରିଚି। ମେରୀ ଆଉ ସେ ବାଲୁଜ୍‌ରେ ରହିବାକୁ ସ୍ଥିର କରିଚନ୍ତି।

ଧୀର ସ୍ୱରରେ ନିକୋଲାସ୍ କହିଲା : "ମଣିଷ ଆଉ ପତଙ୍ଗଙ୍କ ମଧ୍ୟରେ ବେଶୀ କିଛି ପ୍ରଭେଦ ନାହିଁ।"

"ତାହାର ଅର୍ଥ ?"

"ଗିଲେସ୍ ଆଉ ମୁଁ ଦୁହେଁ ଯାକ ଖୋସାଭିତରୁ ବାହାରିଚୁ।"

"ତୁ ସବୁବେଳେ ଏହିପରି ନିରର୍ଥକ କଥା ଗୁଡ଼ାକ କହୁ।"

ନିକୋଲାସ୍ ଉଠି ଠିଆ ହେଲା। ଅନ୍ଧାରରେ ଏକୁଟିଆ ଟିକିଏ ବୁଲି ବାହାରିବା ତା'ର ମନ ହେଉଥାଏ। ମାଆକୁ ସେ ଚାବିଟା ମାଗିଲା।

"କାଲି ତୁ ଅନୁକୂଳ କରି ଯିବୁ, ଆଜି ରାତିରେ କଣ ସେହି ସାଲୋନ୍ ଟୋକା ତୋତେ ମୋ'ଠାରୁ ଅପହରଣ କରି ନେଇଯିବ ?"

"ନାଁ ସେପରି କିଛି ନୁହେଁ," – ସେ ଶୁଷ୍କ ଭାବରେ ଉତ୍ତର ଦେଲା : "ଗିଲେସ୍ ଆଜି ସନ୍ଧ୍ୟାରେ ତା'ର ବାଳିକା ସାଙ୍ଗରେ ଥିବ। ମୁଁ ଖାଲି ଟିକିଏ ଖୋଲା ପବନରେ ବୁଲି ଆସିବି ବୋଲି ଯାଉଚି।"

ଯଦି କେବଳ ସେଇଥି ସକାଶେ ବାହାରକୁ ଯାଉଚୁ, ତେବେ ତ ମାଆ ସେ ଫେରି ଆସିବା ଯାଏ ଅପେକ୍ଷା କରି ପାରିବ। ସବୁଦିନେ ତ ସେ ସେମିତି ଅପେକ୍ଷା କରିଥାଏ।

କିନ୍ତୁ ସେହିପରି ଶୁଷ୍କଭାବରେ ସେ ଜିଦ୍‌ଧରି କହିଲା :

"ମୋତେ ଚାବିଟା ଦିଅ!" -ହାତରେ ଇଙ୍ଗିତ କରି ବୃଦ୍ଧା ମନା କରିବାକୁ ଚେଷ୍ଟା କଲେ, ଦାନ୍ତର ଅଗ୍ରଭାଗରେ ହସିବାକୁ ଲାଗିଲେ। ନିକୋଲାସ୍ ଜାଣିଲା ଯେ ମାଆ ଚାବି ନ ଦେବାକୁ ମନସ୍ଥ କରିଚନ୍ତି। ଟେବୁଲ ଚାରିପାଖରେ ଥରେ ବୁଲିଆସି ସେହିପରି ଥିର ସ୍ୱରରେ ସେ କହିଲା : "ଦିଅ, ଚାବିଟା ଦିଅ, ଶୀଘ୍ର ଦିଅ!"

ବୃଦ୍ଧା ହୋଇ ଅତି ବିସ୍ମୟର ସହିତ ଟେଙ୍ଗା ହୋଇଯାଇ ଚେୟାର ଉପରକୁ ଆଉଜି ପଡ଼ି ଠିଆ ହେଲେ।

"ତୋର କଣ ହେଲାଣି," -ସେ କହିଲେ, "ଏପରି ବ୍ୟବହାର କରିବା ଆଦୌ ଉଚିତ ନୁହେଁ। ଏ ଚାବି ମୋ'ର......"

"ତୁମର ? -ମାଆ, ତୁମେ ବୋଧ ହୁଏ ଭୁଲିଯାଉଚ ଯେ ଏଇଟା ମୋର ଘର....!"

ଏକଥା ଶୁଣି ସେ ବସି ପଡ଼ିଲେ। ତଳୁ ଉପର ଯାଏ ପୁଅ ଆଡ଼କୁ ଅନାଇବାକୁ ଲାଗିଲେ :

"ଏଁ -ଏଁ-," ସେ କହିଲେ। ପୁଣି କହିଲେ: "ଏ-ଏ-" "ମୋତେ ଠିଆକରି ରଖନାହିଁ!"

"ଚାବିଟା ମୁଁ କେଉଁଠି ରଖିଲି କେଜାଣି ?" - ସେ କହିଲେ।

"ତୁମ ଆପ୍ରନ୍‌ର ପକେଟ୍‌ରେ !"

ମୁହୂର୍ତ୍ତକ ପାଇଁ ତାଙ୍କର ପାଟିରୁ କୌଣସି କଥା ବାହାରିଲା ନାହିଁ। ଅଳ୍ପ ଅଳ୍ପ ଥରୁଥିବା ହାତରେ ଚାବିଟା ସେ ହାତକୁ ବଢ଼ାଇ ଦେଲେ। ଝାମ୍ପିନେଲା ପରି ସେ ତାଙ୍କ ହାତରୁ ଚାବିଟା ନେଇଗଲା। ବାଟଘର ପର୍ଯ୍ୟନ୍ତ ସେ ତା'ର ପଛେ ପଛେ ଗଲେ।

"ତୋ'ର ବୁଢ଼ୀମାଆକୁ ତେବେ ଗୋଟିଏ ଚୁମ୍ବନ ଦେଇଯାଅ। ତୋତେ ତ ଅଠେଇଶି ପୂରିଲାଣି -ତୋତେ ଏଥର ଗୋଟାଏ ବୟସ୍କ ପୁରୁଷ ବୋଲି କୁହାଯାଇ ପାରେ।"

କାଷ୍ଟଲନ୍‌ରାସ୍ତାଟି ମଧ୍ୟ ଛାୟାପଥର ଏକ ସଂପ୍ରସାରଣ ପରି ଦିଶୁଥିଲା। ଆପଣାର ନିଃସଙ୍ଗ ପଦକ୍ଷେପ ଗୁଡ଼ିକର ଶବ୍ଦକୁ ସେ କାନ ଡେ଼ରି ଶୁଣିବାକୁ ଲାଗିଲା। ଗିଲେସ୍ ତା'ର ସାଙ୍ଗରେ ଥାଆନ୍ତା ଏପରି କୌଣସି ବାସନା ତା'ର ମନରେ ଉଦୟ ହେଲା ନାହିଁ। ସେହିପରି ନିର୍ଜନ ଓ ନିଃସଙ୍ଗ ଭାବରେ ସେ ଚାଲିବାକୁ ଲାଗିଲା। ସତେ ଅବା ସେ କୌଣସି ଦୁଃଖୋଦ୍ଦୀପକ କ୍ଷୁଧାରେ ପଡ଼ିଯାଇ ଥିଲା, ସେହି କ୍ଷୁଧାର ଉପଶମ କରିବା ଲାଗି ପୃଥିବୀରେ କୌଣସି ରାଜ୍ୟର ସାମର୍ଥ୍ୟ ନଥିଲା। କେବଳ ଏକ କୋମଳତା ହିଁ ତା'ର ଏକମାତ୍ର ଯାତ୍ରା ସହଚର ଥିଲା, ସେହି କୋମଳତା ଉପରେ କୌଣସି ଚକ୍ଷୁର ଦୃଷ୍ଟି ପଡୁ ନଥିଲା, ଅନ୍ୟମନସ୍କ ତାରପୁଞ୍ଜ ତଳେ ସେହି କୋମଳତା ଏକ ସମୁଦ୍ର ପରି ପ୍ରସାରିତ ହୋଇ ରହିଥିଲା। ଗୋଟାଏ

ଜାଗାରେ ଲୋକମାନେ ପାଇନ୍ ଗଛ ଗୁଡ଼ିକୁ କାଟି ନେଇଥିଲେ, ସେହିଠାରେ ଟିକିଏ ଅଧିକ ଆକାଶ ଦୃଷ୍ଟି ଗୋଚର ହେଉଥିଲା, ସେହିଠାରେ ଠିଆ ହୋଇ ନିକୋଲାସ୍ ଅନାଇଲା। ସହରର ଛାତ ଉପରକୁ ବାହାରି ପଡ଼ିଥିବା ଗୀର୍ଜାଟିର କଳା ଆକାରଟାକୁ ସେ ସେହିଠାରୁ ବେଶ୍ ଦେଖିବାକୁ ପାଇଲା। ମନୁଷ୍ୟ-ପତଙ୍ଗମାନେ ଅନ୍ତତଃ ଏହି ଜାହାଜଟିକୁ ଉଚ୍ଚ କରି ତିଆରି କହିଥିଲେ, -ଯେଉଁ ପ୍ରେମ ସେମାନଙ୍କ ଭିତରୁ ଅନେକଙ୍କୁ ତଣ୍ଟିରୁ କାମୁଡ଼ି ଧରିଥିଲା। ସେହି ପ୍ରେମର ପରିମାପରେ ସେମାନେ ଏହାକୁ ତିଆରି କରିଥିଲେ। ପୁନରାୟ ସେ ଆଗକୁ ଚାଲିବାକୁ ଲାଗିଲା ଓ ଯେଉଁଠାରେ ରାସ୍ତାଟି ନଦୀକୁ ଅତିକ୍ରମ କରି ଯାଇଚି, ସେହିଠାରେ ଯାଇ ପହଞ୍ଚିଲା। ପୋଲର ବାଡ଼ା ଉପରେ ଯାଇ ସେ ବସିଲା-ଆପଣା ନିକଟରେ ସେ ଆପଣାକୁ ଏକ ଅପରିଚିତ ଅତିଥି ପରି ଭାବୁଥାଏ, ତା'ର ସମସ୍ତ ସୁହୃତ୍ ସହଚରଙ୍କଠାରୁ ବିଚ୍ଛିନ୍ନ ହୋଇଯାଇଥିବା ପରି ସେ ସେହି ପୋଲ ଉପରେ ବସିଥାଏ। ସତେ ଯେପରି କେଉଁ ପରମ ସହଚର ସହିତ ସମ୍ମିଳିତ ହେବାକୁ ପ୍ରତିଶ୍ରୁତି ଦେଇ ସେ ଏହି ସ୍ଥାନକୁ ଆସିଥିଲା ।

## ପୁନଶ୍ଚ

ବର୍ତ୍ତମାନ "ଗାଲିଗାଇ' ପ୍ରକାଶିତ ହେବାକୁ ଗଲାବେଳେ ମୋ' ମନରେ କିଞ୍ଚିତ ଉଦ୍‌ବେଗ୍ ଜାତ ହେଉଚି। ତିରିଶି ବର୍ଷ ପୂର୍ବେ, ମୋ'ର କୌଣସି ରଚନା ପ୍ରକାଶିତ ହେଲା ବେଳେ ମୋ' ମନରେ ଠିକ୍ ଏହିପରି ଉଦ୍‌ବେଗ ଜାତ ହେଉଥିଲା। ମୋ' ପରି ମୋର ପାଠକମାନଙ୍କ ଭିତରୁ ଯେଉଁମାନଙ୍କର ଜୀବନରେ ଏକ ଧର୍ମ ପ୍ରଧାନ ଦୃଷ୍ଟିକୋଣ ରହିଚି, ସେମାନଙ୍କର ମନରେ ମୁଁ କୌଣସି ଭୟ ବା ସଂଶୟ ଜାତ କରାଉଥିବି ବୋଲି ମୋର ସେତେ ଚିନ୍ତା ନାହିଁ। କାରଣ ଏସବୁ କ୍ଷେତ୍ରରେ ଯେଉଁ ସବୁ ଭୁଲ ବୁଝିବା ଉପୁଜିବାର ଆଶଙ୍କା ରହିଚି, ଗୋଟିଏ ଉପନ୍ୟାସ ପ୍ରକାଶ ପାଇବା ବ୍ୟତୀତ ଅନ୍ୟାନ୍ୟ ଭିନ୍ନ ପରିସ୍ଥିତିରେ ମଧ୍ୟ ସେ ସବୁ ବେଶ୍ ଉପୁଜି ପାରେ। ଏଠାରେ ଗୋଟିଏ ଦୃଷ୍ଟାନ୍ତ ଦିଆଯାଇ ପାରେ। କୌଣସି ଏକ ଧର୍ମ ସମ୍ପ୍ରଦାୟର ଜଣେ ସଦସ୍ୟ ମୋ' ପାଖକୁ ଲେଖିଥିଲେ ଯେ LA Table Rounde ପୁସ୍ତକଟି ତାଙ୍କୁ ବଡ଼ ନିରାଶ କରି ପକାଇଚି। ପୁସ୍ତକଟିକୁ ସମ୍ପାଦନା କରିଥିବା ବ୍ୟକ୍ତିମାନଙ୍କର ନାମ ତାଲିକାରେ ପ୍ରଥମେ ହିଁ ମୋର ନାମଟି ଥିଲା ଖାସ୍ ସେଇଥି ପାଇଁ କୁଆଡ଼େ ପତ୍ରିକାଟି ପଢ଼ିବାକୁ ଆଣିଲେ, ତାଙ୍କର ତତ୍ତ୍ୱାବଧାନରେ ଥିବା ଅନ୍ୟାନ୍ୟ ଯୁବକମାନଙ୍କୁ ସେ ସେହି ପତ୍ରିକାଟି ପଢ଼ିବାକୁ ସୁପାରିଶ୍ କରିବେ ବୋଲି ଭାବିଥିଲେ। ଏପରି ଏକ ଅନାବଶ୍ୟକ ପୁସ୍ତକର ପ୍ରଣୟନ ପାଇଁ ଯେ ମୁଁ ଏତେ ସମୟ ଦେଇଚି, ପୁସ୍ତକଟି ପଢ଼ିବାରେ ସେହି ପାଦ୍ରୀମହାଶୟ ସେଥିଲାଗି ଭାରି ବିସ୍ମିତ ହୋଇଚନ୍ତି। ଯେଉଁ ଭୁଲବୁଝିବା ବିଷୟରେ

ମୁଁ ଉପରେ ଉଲ୍ଲେଖ କରିଚି, ଏହି ଘଟଣାଟି ତାହାରି ହେଉଚି ଗୋଟିଏ ଚମତ୍କାର ଉଦାହରଣ। କୌଣସି ଏକ ଧର୍ମସମ୍ପ୍ରଦାୟର ସଦସ୍ୟ ବା ଏପରିକି ଜଣେ ସାଧାରଣ ବ୍ୟକ୍ତି (ଯଦି ସେ ଯଥେଷ୍ଟ ଆଗ୍ରହୀ ହୋଇଥାନ୍ତି) ଭାବନ୍ତି ଯେ ଲେଖିବାର ଅର୍ଥ ହେଉଛି ସେବା କରିବା। ଆପଣାର ସମସ୍ତ ଦକ୍ଷତା ପ୍ରୟୋଗ କରି ଜୀବନର ଚିତ୍ରଣ କରିବା ବ୍ୟତୀତ - ବା ଆଁଦ୍ରେ ଜିଦ୍‌ଙ୍କର କଥାନୁସାରେ, - ଆପଣା ଦ୍ୱାରା ଚିତ୍ରିତ ବିଷୟବସ୍ତୁକୁ ଯଥାସମ୍ଭବ ପ୍ରକାଶ ସମ୍ପନ୍ନ କରି ଉପସ୍ଥାପିତ କରିବା ବ୍ୟତୀତ କଳାକାର ଆଉ କୌଣସି ବିଷୟରେ ଚିନ୍ତା କରିବା ଉଚିତ ନୁହେଁ,- ଧର୍ମ ପ୍ରଚାର କରିବାକୁ ଆପଣାର ବ୍ରତ ବୋଲି ଗ୍ରହଣ କରିଥିବା କୌଣସି ବ୍ୟକ୍ତି ପକ୍ଷରେ ଏହା ବୁଝିବା ଅତି ଦୁରୁହ ବ୍ୟାପାର ବୋଲି କହିବାକୁ ହେବ।

ସାହିତ୍ୟିକ ସୃଷ୍ଟିରେ ଅନ୍ତର୍ନିହିତ ସମସ୍ୟାଗୁଡ଼ିକ ବିଷୟରେ ଗଭୀର ଭାବରେ ବିଚାର କରୁଥିବା ବ୍ୟକ୍ତି ଯେ ଧର୍ମ ସମ୍ପ୍ରଦାୟ ମାନଙ୍କରେ ଅଛନ୍ତି, ଏକଥା କହିବା ବାହୁଲ୍ୟ ମାତ୍ର। କିଛି ପ୍ରମାଣ କରି ଦେଖାଇ ଦେବାର ପ୍ରବୃତ୍ତି ପ୍ରତି ଉପନ୍ୟାସକାରକୁ ଯେ ସତର୍କ ରହିବାକୁ ପଡ଼ିବ, ସେମାନେ ତାହା ଅବଶ୍ୟ ସ୍ୱୀକାର କରିବେ। ସେମାନେ ହୃଦୟଙ୍ଗମ କରୁଥିବେ ଯେ ମାନବ -ଜୀବନ ଓ ମାନବ-ଚରିତ୍ର ବିଷୟରେ ଆପଣାର ନିଜସ୍ୱ ଦୃଷ୍ଟିଟିକୁ ସ୍ପଷ୍ଟକରି କହିଦେବା ହେଉଚି ଉପନ୍ୟାସକାରର କର୍ତ୍ତବ୍ୟ। ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ଜଣେ ଉପନ୍ୟାସକାର ତା'ର ପୁସ୍ତକରେ ଯେଉଁ ଜଗତର ଚିତ୍ରଣ କରୁଚି; ସେଥିରୁ ଯଦି ସମସ୍ତ ଭଗବତ୍ କରୁଣା କ୍ଷୟ ହୋଇ ଯାଇଥାଏ, ଯଦି ସେହି ଜଗତରୁ ଈଶ୍ୱର ଅନୁପସ୍ଥିତି ରହିଯିବା ପରି ପ୍ରତୀତ ହୁଅନ୍ତି, ତେବେ ସେହି ପୁସ୍ତକକୁ ତା'ର ଲେଖକ ବିରୁଦ୍ଧରେ ଏକ ପ୍ରମାଣ ପରି ବ୍ୟବହାର କରାଯିବା ଉଚିତ ବୋଲି ମତପ୍ରକାଶ କରିବାର ସମ୍ପୂର୍ଣ୍ଣ ଅଧିକାର ଯେ କୌଣସି କର୍ତ୍ତବ୍ୟାନୁରକ୍ତ ସମାଲୋଚକର ଅବଶ୍ୟ ରହିଚି।

ମୋର ରଚନାଗୁଡ଼ିକର ଏକ ସଂଗୃହୀତ ସଂସ୍କରଣ ପାଇଁ ପ୍ରୁଫ୍ ସଂଶୋଧନ କଲାବେଳେ ମୋତେ ମୋର ରଚିତ ସମସ୍ତ ପୁସ୍ତକ ଗୁଡ଼ିକୁ ପୁନରାୟ ପଢ଼ିବାକୁ ପଡ଼ିଲା। ସେଥିରୁ ମୁଁ ଜାଣିପାରିଚି ଯେ ମୋର ପୁସ୍ତକମାନଙ୍କରେ ଅନେକ ସମୟରେ ଏହି ଭଗବତ୍ କରୁଣା ପ୍ରକଟ ହୋଇପାରିଚି, ତଥାପି ମୋର ବୟସ ଅଧିକ ହେବା ସଂଗେ ସଂଗେ ଏହି ପ୍ରକଟ କରିବାର ପ୍ରବୃତ୍ତି କ୍ରମେ କମିକମି ଯାଇଚି। (Le Sagouin) ପୁସ୍ତକରେ କେବଳ ଶେଷ କେତୋଟି ପୃଷ୍ଠାରେ ଏହା ଦେଖିବାକୁ ମିଳେ ଏବଂ 'ଗାଲିଗାଇ'ରେ ପୁସ୍ତକର ସର୍ବଶେଷ ବାକ୍ୟଟିର ପୂର୍ବରୁ ପାଠକକୁ ଏ ବିଷୟରେ କିଛି କୁହାଯାଇ ନାହିଁ। ପୁସ୍ତକର ପ୍ରାୟ ଶେଷ ଶବ୍ଦଟିରେ ଉପନ୍ୟାସର ଗୋଟିଏ ଚରିତ୍ର ଭଗବାନଙ୍କର ଉଦ୍ଦେଶ୍ୟରେ ଅଗ୍ରସର ହେଉଚି ବୋଲି ସୂଚିତ କରାଯାଇଚି।

ତଥାପି, ରାସ୍ତାଟି ଲେରୋଟ୍ ନଦୀକୁ ଅତିକ୍ରମ କରି ଯାଇଥିବା ସ୍ଥାନଟିରେ ନିକୋଲାସ୍ ପ୍ଲାସାକ୍ ପାଇଁ ଅପେକ୍ଷା କରି ରହିଥିବା 'କେଉଁ ପରମ ସହଚର' ହେଉଚନ୍ତି ଭଗବାନ। କିନ୍ତୁ ଏହି ସାକ୍ଷାତ୍କାର ସମ୍ଭବ ହେବାପୂର୍ବରୁ ଗିଲେସ୍ ସାଲୋନ୍‌ରୂପୀ ପିତୁଳାକୁ ମୋତେ ଭାଙ୍ଗି ଦେବାକୁପଡ଼ିଚି। ନିକୋଲାସ୍ ସମସ୍ତ ପ୍ରକାର ନାମରୂପରୁ ନିର୍ଲିପ୍ତ ହୋଇ ରହିବା ଓ ଆପଣା ବିଷୟରେ ସେ ପୋଷଣ କରିଥିବା ଭ୍ରାନ୍ତ ପ୍ରତିମୂର୍ତ୍ତିଠାରୁ ମଧ୍ୟ ଆପଣାକୁ ବିଚ୍ଛିନ୍ନ କରିଦେବା ଅତ୍ୟାବଶ୍ୟକ ଥିଲା। ଦେହର କାମନାରୁ ଯେ ଅତୀବ ନିଦାରୁଣ ଦୁଃଖର ଉତ୍ପତ୍ତି ହୁଏ, ନିଷ୍ଠୁରତାର ଆଚରଣ କରିବାରେ ଅନ୍ୟାନ୍ୟ ଲୋକମାନଙ୍କ ଅପେକ୍ଷା ତା'ର ଯେ ଆଦୌ କମ୍ କ୍ଷମତା ନାହିଁ, ଭଗବାନଙ୍କ ବ୍ୟତୀତ ଯେ ଅନ୍ୟ କାହାରିକୁ ସେ ପ୍ରକୃତରେ ଭଲ ପାଇପାରି ନାହିଁ, ଗାଲିଗାଇ ନିକୋଲାସ୍‌କୁ ଏହି ସତ୍ୟର ଉପଲବ୍ଧି କରାଇ ଦେଇଚି।

'ଗାଲିଗାଇ'କୁ ମୁଁ 'କାମନା ଓ ଘୃଣା' ବୋଲି ଅଭିହିତ କରି ପାରିଥାନ୍ତି। ନାରୀ ଓ ପୁରୁଷ ମଧ୍ୟରେ ଯେଉଁ ଘୃଣାଭାବ ରହିଚି, ସେହି ଘୃଣାର ଗୋଟିଏ ଦିଗକୁ ଅଧ୍ୟୟନ କରିବା ଲାଗି ଏହି ପୁସ୍ତକର ବିଷୟବସ୍ତୁ ଗ୍ରହଣ କରାଯାଇଚି। ଏହି ଦିଗଟିର ଅଧ୍ୟୟନ ଅନ୍ୟତ୍ର କ୍ୱଚିତ୍ ହୋଇଛି। କାରଣ ପ୍ରଥମତଃ ଏହା ଏପରି ଗୋଟିଏ ବିଷୟ ଯାହା ବିଷୟରେ ଆଲୋଚନା କରିବାକୁ ଆମର ମନ ହୁଏ ନାହିଁ। ଦ୍ୱିତୀୟତଃ ମଣିଷ ଯେତେ ଦିନଯାଏ ପ୍ରେମର ଅଭାବ ଅନୁଭବ କରୁଥିବ, ସେତେ ଦିନଯାଏ ପାରସ୍ପରିକ ପ୍ରେମର ଛବି ଓ ଚିତ୍ରଣ ସବୁବେଳେ ମଣିଷକୁ ଅଧିକ ଭଲ ଲାଗୁଥିବ। 'ଗାଲିଗାଇ'ରେ ପାଠକମାନଙ୍କୁ ଅବଶ୍ୟ ସେଥିରୁ ମୁଁ ବଞ୍ଚିତ କରିନାହିଁ। ଅନ୍ୟାନ୍ୟ ଅନେକ କଥା ଥିଲେ ମଧ୍ୟ ପୁସ୍ତକଟିକୁ ଏକ ଯୁଗଳ ପ୍ରେମିକ ପ୍ରେମିକାଙ୍କର କାହାଣୀ ବୋଲି କହିବାକୁ ହେବ। କିନ୍ତୁ ପୁସ୍ତକଟିର ଅସଲ ବିଷୟବସ୍ତୁକୁ ଅଧିକ ସ୍ପଷ୍ଟ କରି ଦେଖାଇ ଦେବା ପାଇଁ ଏକ 'ସବଳା' ନାରୀର କବଳରେ ପଡ଼ିଥିବା ଜଣେ ଯୁବକର ଘୃଣା ଓ ବିରକ୍ତିର ଚିତ୍ରଣ ମଧ୍ୟ ପୁସ୍ତକଟିରେ କରାଯାଇଚି। ପ୍ରେମକ୍ଷେତ୍ରରେ ମଧ୍ୟ କେବଳ ସଂକଳ୍ପ ଓ ଦୁର୍ଦ୍ଧର୍ଷ ଇଚ୍ଛାଶକ୍ତିର ପରାକ୍ରମ ଦେଖାଇ ଯେ ବିଜୟିନୀ ହେବା ସମ୍ଭବ, ଏପରି ଏକ ଦୃଢ଼ବିଶ୍ୱାସ ସେହି 'ସବଳା'ର ଥିଲା। ପ୍ରକୃତିଗତ ଭାବରେ କୌଣସି ପାପ ପ୍ରତି ଆକାଙ୍କ୍ଷିତ ନଥିବା ଜଣେ ଯୁବକ ତା'ର ଜଣେ ଆବାଲ୍ୟ ସହଚରର ପ୍ରେରଣାରେ ଉତ୍ପନ୍ନ ହୋଇଥିବା କେବଳ ଏକ ବନ୍ଧୁତାର ଅନୁଭୂତିରେ, -ବା ବନ୍ଧୁତା ଓ ପ୍ରେମର ମଧ୍ୟବର୍ତ୍ତୀ ଏକ ଭାବାନୁଭୂତିରେ -ଏପରି ସନ୍ତୁଷ୍ଟ ହୋଇ ରହିପାରିବ ଯେ ତାହାର ଭଗବତ୍-ଅନୁରକ୍ତିର ସମସ୍ତ ଆବଶ୍ୟକତାକୁ ତାହା ପୂରଣ କରିଦେଇ ପାରିବ, ହୁଏତ ଏପରି ଏକ ସତ୍ୟକୁ ଗ୍ରହଣ କରିବା ଗାଲିଗାଇ'ର ପାଠକମାନଙ୍କ ପକ୍ଷରେ କଷ୍ଟକର ହୋଇପାରେ। ଆରିସିଆକୁ ବାଦ୍ ଦେଇ ଚିତ୍ରଣ କରାଯାଇଥିବା ଏହି ହିପୋଲିଟସ୍ ବିଷୟରେ ସେ ହୁଏତ ସବୁପ୍ରକାର ଅଧୋଗତ ଅବସ୍ଥା ଅନୁମାନ କରିନେବାକୁ ଇଚ୍ଛା କରିବ। (ରାସିନ୍‌ଙ୍କର

ବିୟୋଗାନ୍ତକ ନାଟକ (Phedre) ରେ ଏଥେନ୍‌ସ୍‌ର ରାଜକୁମାରୀ ଆରିସିଆ ସହିତ ହିପ୍ପୋଲିଟସ୍‌ର ବିବାହ ହୋଇଥିଲା -ଅନୁବାଦକ) କିନ୍ତୁ ମୁଁ ଭାବୁଚି, ଏପରି ଅନୁମାନ କଲେ ପାଠକ ବଡ଼ ଭୁଲ କରିବସିବ।

କିନ୍ତୁ ଏଥର ପ୍ରଧାନ ଆଲୋଚ୍ୟ ବିଷୟକୁ ଫେରି ଆସିବା। ମୋର ସମସ୍ତ ପରିଶ୍ରମର ଫଳ କଣ ହେବ, ପଢ଼ିବାଲୋକଙ୍କର ତଦ୍ୱାରା ପରମାର୍ଥ ସ୍ତରରେ କି ଉପକାର ହେବ, ମନୁଷ୍ୟ ଭିତରେ ଥିବା ପ୍ରାଣୀଟି ବିଷୟରେ ଏପରି ଏକ ପ୍ରକ୍ଷିପ୍ତ ଦୃଷ୍ଟିକୁ, ତା'ର ଧାର୍ମିକତା-ପ୍ରଣୋଦିତ ବୃତ୍ତ ମଧ୍ୟରେ ରହିଚି ବୋଲି ମୁଁ ଦାବୀ କରୁଥିବା ବିଶ୍ୱାସ ସହିତ କିପରି ମୁଁ ଖାପ୍ ଖୁଆଇ ପାରିବି, ସେ କଥା ଭାବି ମୋ'ପାଖକୁ ପତ୍ର ଲେଖିଥିବା ଧର୍ମଯାଜକ ଆହୁରି ବିସ୍ମିତ ହୋଇ ପଡ଼ିବେ। ଗତ ଚାଳିଶି ବର୍ଷ ଯାବତ୍ ମୁଁ ଯେଉଁ ଯୁକ୍ତି ଦର୍ଶାଇଚି, ସେହି ଯୁକ୍ତି ବଳରେ ହିଁ ଏହି ପ୍ରତିବନ୍ଧକରୁ ମୁକ୍ତ ହେବା ମୋ' ପକ୍ଷରେ ସହଜ ବୋଲି ମୁଁ ବିଚାରୁଚି। ମୋର ମତ ହେଉଚି ଯେ ଆମର ପୃଥିବୀରେ ପାପ ଗୋଟିଏ ସତ୍ୟ; ମୋର ପୁସ୍ତକରେ ଯେଉଁ ଚରିତ୍ର ଗୁଡ଼ିକର ଚିତ୍ରଣ ମୁଁ କରିଚି, ସେମାନେ ସମସ୍ତେ ପତିତ, -ଜନ୍ମରୁ ହିଁ ସେମାନେ ପଙ୍କିଳ ଓ କଳୁଷିତ। କୌଣସି କଳାକାର ଆପଣାର ପ୍ରତିଭାଉପରେ ବଳ ପ୍ରୟୋଗ କରିବା ଉଚିତ ନୁହେଁ ବୋଲି ଜଣେ ବସୁଏଟ୍ (Bossuet) ବା ଜଣେ ବୋର୍ଦାଲୋ (Bourdaloue) ଯାହା ଉଲ୍ଲେଖ କରିଚନ୍ତି, ତାହାର ଏକ ନାଟକୀୟ ଦୃଷ୍ଟାନ୍ତ ଦେବା ବ୍ୟତୀତ ମୁଁ କିଛି ଅଧିକ କରିନାହିଁ।

ଏସବୁ ସମ୍ପୂର୍ଣ୍ଣ ସତ୍ୟକଥା, କିନ୍ତୁ ଧର୍ମଯାଜକ ଓ ଧର୍ମପରାୟଣ ନାଗରିକ ପ୍ରକାଶ କରିଥିବା ଆପତ୍ତିର କୌଣସି ଉତ୍ତର ଏଥିରୁ ମିଳିବ ନାହିଁ। ସେମାନେ ତତ୍‌କ୍ଷଣାତ୍ ପ୍ରତିବାଦ କରି କହିବେ ଯେ ମୋର ପ୍ରତିଭା ଉପରେ ବଳ ପ୍ରୟୋଗ କରି ମଧ୍ୟ ନିକୋଲାସ୍‌ର ଜୀବନରେ ଭଗବତ୍ କରୁଣାର ବିଜୟକୁ ପ୍ରଦର୍ଶିତ କରି ପୁସ୍ତକର ଏକ ଶେଷ ଅଧ୍ୟାୟ ଯୋଡ଼ି ଦେବା ମୋର କର୍ତ୍ତବ୍ୟ ଥିଲା। ଭଗବତ୍-କରୁଣା ଅବତରଣ କରିଥିବାର କଥା ଖାଲି ମୁଁ କହୁଚି ବୋଲି ସେମାନେ କଦାପି ସେଥିରେ ବିଶ୍ୱାସ କରି ପାରିବେ ନାହିଁ। ସେମାନେ କହିବେ ଯେ ମଣିଷର ପାପ ସହିତ ଯୁଦ୍ଧ କରିବା ଉଦ୍ଦେଶ୍ୟରେ ଧର୍ମବେଦୀ ଉପରେ ଠିଆ ହୋଇ ସେଗୁଡ଼ିକର ନିନ୍ଦା କରିବା ଗୋଟାଏ କଥା, କିନ୍ତୁ ସେଗୁଡ଼ିକୁ ଚିତ୍ତାକର୍ଷକ କରି ଦେଖାଇବାର ଉଦ୍ଦେଶ୍ୟରେ ନହେଲେ ମଧ୍ୟ, ପରମ ସାଧ୍ୟ ରୂପେ ବିଚାର କରାଯାଇଥିବା ଏକ କଳାକୃତିର ଉଦ୍ଦେଶ୍ୟ ସାଧନ କରିବା ଉଦ୍ଦେଶ୍ୟରେ ସେହି ପାପଗୁଡ଼ାକର ଚିତ୍ରଣ କରିବା ସମ୍ପୂର୍ଣ୍ଣ ଭିନ୍ନ କଥା। ମନୁଷ୍ୟର ଯାବତୀୟ ଚିତ୍ତୋଦ୍‌ଗମ ଓ ଅନୁରାଗକୁ ବର୍ଣ୍ଣନା କରିବାକୁ ଗୁରୁତର ଅପରାଧ ବୋଲି ମନେ କରୁଥିବା ଜାନସେନ୍ -ପନ୍ଥୀମାନଙ୍କର ଦାବୀକୁ ବାଦ୍ ଦେଲେ ମଧ୍ୟ ମୁଁ ତଥାପି ମତ ଦେବି ଯେ ଏହିଠାରେ ହିଁ ପ୍ରକୃତ ପାପ ନିହିତ ରହିଚି। ଆପଣା ଧର୍ମବିଶ୍ୱାସର

ଉଦ୍ଦେଶ୍ୟସାଧନ ପାଇଁ ପ୍ରକାଶ୍ୟ ଭାବରେ ଆପଣାର ପ୍ରତିଭାକୁ ଖଟାଉ ନଥିବା କୌଣସି ଖ୍ରୀଷ୍ଟୀୟାନ୍‌ପନ୍ଥାବଲମ୍ବୀ କଳାକାର ଏହି ପାପକୁ ଅବଜ୍ଞା କରି ପାରିବ ନାହିଁ। ଆପଣାକୁ ଆପଣାର ଚରମ ସାଧ୍ୟ ବୋଲି, ମାନୁଥିବା କଳାକୁ କେବଳ ଏକ ପିତୁଳା ବୋଲି କହିବାକୁ ହେବ, ଯାହାର ପୂଜାଲାଗି କଳାକାରକୁ ତାର ସମସ୍ତ ବଳି ଦେବାକୁ ହୁଏ, ସେହି ବଳି ଭିତରେ କଳାକାର ନିଜେ ମଧ୍ୟ ଅନ୍ତର୍ଭୁକ୍ତ ହୋଇଯାଏ – ପ୍ରାଉସ୍ତଙ୍କ କ୍ଷେତ୍ରରେ ଠିକ୍ ଯେପରି ଘଟିଥିଲା।

କିନ୍ତୁ ମୁଁ ଅନେକବାର ମତ ପ୍ରକାଶ କରି ଆସିଚି ଯେ କଳା ଜଗତର ସମସ୍ତ କୃତୀ ମନୁଷ୍ୟର ସେବା କରେ, ତା'ର ଏକମାତ୍ର କାରଣ ହେଉଚି ଯେ ସେବା କରିବାର ଉଦ୍ଦେଶ୍ୟ ରଖି କଳା କିଛି କରିବାକୁ ଲୋଡ଼େ ନାହିଁ। ଏହି ସତ୍ୟକୁ ମୁଁ ପ୍ରକୃତରେ ବିଶ୍ୱାସ କରେ କି ? କୌଣସି ବିଳମ୍ବ ନ କରି ମୋତେ ସ୍ୱୀକାର କରିବାକୁ ହେବ ଯେ ଶିକ୍ଷା ଦେବା ପରିବର୍ତ୍ତରେ କଳାକୃତି ଅଧିକାଂଶ ସମୟରେ ପ୍ରକ୍ଷେପର ସୃଷ୍ଟି ହିଁ କରିଥାଏ। ଅମିତ ବ୍ୟବହୃତ ଘନ ରଙ୍ଗ ଦ୍ୱାରା ଏକ ଜୀବନଛବିର ଚିତ୍ରଣ କରି ଯେଉଁ ସୃଷ୍ଟିକାରୀ କଳାକାର ମଣିଷକୁ ବୁଝିବା ଲାଗି ଆମକୁ ସାହାଯ୍ୟ କରୁଚି ବୋଲି ଦାବୀ କରେ, ସେହି କଳାକାରର ଦାବୀକୁ କେବଳ କପଟ ଛଳନା ବୋଲି କହିବାକୁ ହେବ। ଜୀବନ୍ତ ବ୍ୟକ୍ତିମାନଙ୍କୁ କଦାପି ଉପନ୍ୟାସର ବ୍ୟକ୍ତିମାନଙ୍କର ସମତୁଲ କରାଯାଇ ନପାରେ। ଉପନ୍ୟାସ ବା ରଙ୍ଗମଞ୍ଚରେ ଉପସ୍ଥାପିତ କରାଯାଇଥିବା ବ୍ୟକ୍ତିମାନଙ୍କୁ ଏକ ସ୍ୱତନ୍ତ୍ର ଗୋଷ୍ଠୀର ବୋଲି କହିବାକୁ ପଡ଼ିବ। ସେମାନେ ଆମକୁ ଆମ ବିଷୟରେ କୌଣସି ଶିକ୍ଷା ଦିଅନ୍ତି ନାହିଁ, ଦେଉଥିଲେ ମଧ୍ୟ ସେଥିରେ ଆମର କୌଣସି ଉପକାର ହୁଏ ନାହିଁ। ତା'ର ପ୍ରଥମ କାରଣ ହେଉଚି ଯେ ସେମାନେ ଲେଖକର କଳ୍ପନା ପ୍ରସୂତ ପରିସ୍ଥିତି ଓ ପରିବେଶ ଦ୍ୱାରା ସୃଷ୍ଟ ହୋଇଥାନ୍ତି, ଦ୍ୱିତୀୟତଃ ସେମାନେ ଯେତେ ଜଟିଳ ହେଲେ ମଧ୍ୟ ସେମାନଙ୍କର ଚରିତ୍ର ମଧ୍ୟ ଦେଇ ନିଃସନ୍ଦେହ ଭାବରେ କୌଣସି ନିର୍ଦ୍ଦିଷ୍ଟ ମନୋଗତି, ବାସନା ବା ପାପ ପ୍ରକାଶ ପାଉଥାଏ, ଏବଂ ସେଇଥି ଲାଗି ମାନବୀୟ ଭୂମି ସହିତ ସେମାନଙ୍କର କୌଣସି ସମ୍ପର୍କ ସୂତ୍ର ନଥାଏ। କୃପଣ ଓ କପଟୀ ବ୍ୟକ୍ତି ସମ୍ବନ୍ଧରେ ପ୍ରାୟ ଆମ ସମସ୍ତଙ୍କର ଅଭିଜ୍ଞତା ରହିଚି, କିନ୍ତୁ ଆମଭିତରୁ କେହି ଏ ସଂସାରରେ ଜଣେ ଟାର୍ତୁଫ୍ ଜଣେ ହାର୍‌ପାଗଁ ବା ଜଣେ ଗ୍ରାଁଦେର ପରିଚୟରେ କଦାପି ଆସି ନଥିବେ। କିନ୍ତୁ ବାଲ୍‌ଜାକ୍ ଓ ଡ଼ଷ୍ଟୋ'ଭ୍‌ସ୍କି ନାମକ ଗୋଟାଏ ଗୋଟାଏ ରାକ୍ଷସାଧ୍ୟୁସିତ ଗ୍ରହ ଅଛି, ସେଠି ରାକ୍ଷସ ଗୁଡ଼ାକ ନାରୀ ଓ ପୁରୁଷର ମୁଖାମାନ ପିନ୍ଧିଚନ୍ତି। ଆମ ଗ୍ରହ ପୃଥିବୀର ଅଧିବାସୀମାନେ ଯେତିକି ଜୀବନ୍ତ, ସେମାନେ ମଧ୍ୟ ସେତିକି ଜୀବନ୍ତ; ହୁଏତ ତା'ଠାରୁ ଅଧିକ ଜୀବନ୍ତ ଓ କମ୍ ନଶ୍ୱର। କିନ୍ତୁ  କେବଳ ବାହ୍ୟ ଦିଗଟାକୁ ବାଦ୍‌ଦେଲେ ତଥାପି ଦୁହିଁଙ୍କ ମଧ୍ୟରେ ଆଦୌ କୌଣସି ସାମଞ୍ଜସ୍ୟ ନାହିଁ। ଗ୍ରାମାଞ୍ଚଳର କୌଣସି ସହରରେ ଥିବା ଜଣେ ସ୍ତ୍ରୀଲୋକ ବିଷୟରେ ଯଦି ଆମେ ଆଲୋଚନା କରି କହିବା ଯେ ସେ ହେଉଚନ୍ତି ଜଣେ 'ବୋଭାରି'

ତେବେ କଥୋପକଥନର ସୁବିଧା ଲାଗି ଆମେ ତାକୁ କେବଳ କୌଣସି ଏକ କାଳ୍ପନିକ ଟାଇପ୍ ବା ଛାଞ୍ଚ ସହିତ ତୁଳନା କରୁଚୁ ବୋଲି କହିବାକୁ ପଡ଼ିବ। ଆମେ ଭାରି ଭଲକରି ଜାଣୁ ଯେ ମାଡ଼ାମ୍ ବୋଭାରି ଓ ରକ୍ତମାଂସରେ ଗଢ଼ା ହୋଇଥିବା କୌଣସି ପ୍ରାଣୀ ମଧ୍ୟରେ ପ୍ରକୃତରେ କୌଣସି ସମ୍ପର୍କ ନାହିଁ, ଯାହାକୁ କି ନୀତିଶିକ୍ଷାର ଏକ ବିଷୟ ରୂପେ ବ୍ୟବହାର କରାଯାଇ ପାରିବ।

ତଥାପି ଟାଇପ୍ ଓ ଚରିତ୍ରର ଉପସ୍ଥାପନାକୁ ଏଡ଼ିବା ଉଦ୍ଦେଶ୍ୟରେ ଯେତେବେଳେ କଳାକାର ତା'ର ସ୍ୱାଭାବିକ ମାର୍ଗକୁ ଛାଡ଼ିଦେଇ ଯାଏ ସେତେବେଳେ ସେ ଆମକୁ ଯେଉଁପରି ଏକ ବୈଚିତ୍ର୍ୟହୀନ ଓ ସାରହୀନ ଜଗତରେ ପ୍ରବେଶ କରାଇ ଦିଏ। ସେହି ଜଗତ ସହିତ ଆମ ନିଜ ଜଗତର କୌଣସି ସାମଞ୍ଜସ୍ୟ ନଥାଏ। ଏକଥା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ ବାସ୍ତବ ଜଗତରୁ ମାଗି ନେଇ ଥିବା ଉପାଦାନ ଗୁଡ଼ିକରେ ହିଁ ସେ ତା'ର ଜଗତଟିକୁ ନିର୍ମାଣ କରେ। ଯେଉଁ ପ୍ରକାରର ବା ଯେଉଁ ଗୋଷ୍ଠୀର ହେଉ ପଛକେ, ସବୁ ଉପନ୍ୟାସ ବିଷୟରେ ଠିକ୍ ଏହି କଥା କୁହାଯାଇ ପାରେ। ଆପଣାର ସ୍ମରଣ ଶକ୍ତି ଦ୍ୱାରା କଳାକାର ତା'ର ସ୍ମୃତି ଭଣ୍ଡାରରୁ ଅତି ସୂକ୍ଷ୍ମ ଭାବରେ ସ୍ମୃତି-କଣିକାମାନ ସଂଗ୍ରହ କରି ଆଣେ, ତାହାକୁ ଏକ ସମଗ୍ର 'ଚିତ୍ର'ର ରୂପ ଦେଇ ଦେଖାଇବା ଉଦ୍ଦେଶ୍ୟ ରଖି ସେଥିରେ ସେ ଏଠି ସେଠି ଆପଣାର ହାତ ମଧ୍ୟ ଲଗାଏ, ଆପଣାର କାରିଗରୀ ଦେଇ ସେ ସେଗୁଡ଼ିକୁ ଆଉ ଥରେ ସିଦ୍ଧ କରିବାରେ ଲାଗିଯାଏ। ସବୁଠାରୁ ଭଲ ଓ ସବୁଠାରୁ ଖରାପ ଉପନ୍ୟାସର ନିର୍ମାଣ ଏହି ଗୋଟିଏ ପ୍ରଣାଳୀରେ ହୁଏ। ବାସ୍ତବ ମନୁଷ୍ୟ ଜୀବନର ଅନିର୍ଦ୍ଦେଶ୍ୟତାକୁ ବିଶୁଦ୍ଧ ଭାବରେ ଚିତ୍ରିତ କରିଥିବା ଉପନ୍ୟାସ ଏ ପର୍ଯ୍ୟନ୍ତ ପୃଥିବୀରେ ଲେଖା ହୋଇ ନାହିଁ।

ବାସ୍ତବ ପୃଥିବୀରେ ବାସ କରୁଥିବା ଲୋକମାନଙ୍କ ବିଷୟରେ କୌଣସି ଆଲୋକପାତ କରୁ ନଥିଲେହେଁ, ଉପନ୍ୟାସରୁ ଆମେ ସେହି ଉପନ୍ୟାସର ଲେଖକ ସମ୍ବନ୍ଧରେ ଅନେକ ବିବରଣୀ ପାଇପାରୁ, ପାଇଥାଉ ମଧ୍ୟ। ଉପନ୍ୟାସ ବିଷୟରେ ଏହାଠାରୁ ଅଧିକ କିଛି କୁହାଯାଇ ପାରିବ ନାହିଁ। ମନୁଷ୍ୟ-ପ୍ରକୃତି ବିଷୟରେ ଆମର ଜ୍ଞାନ ବୃଦ୍ଧି କରିବାର ଏକ ସାଧନ ରୂପେ ଉପନ୍ୟାସର କୌଣସି ପ୍ରୟୋଜନ ନାହିଁ, ତେଣୁ ସ୍କୁଲ ମାଷ୍ଟର ବା ନୀତିବାଦୀମାନେ ଏହାକୁ ସେମାନଙ୍କର ହତିଆର ଭାବରେ ବ୍ୟବହାର କରି ପାରିବେ ନାହିଁ। କିନ୍ତୁ ଯେଉଁ ବ୍ୟକ୍ତିଟି ତାହା ଲେଖିଚି, ତାହାରି ବିଷୟରେ ଉପନ୍ୟାସ ଆମକୁ ଅନେକ ତଥ୍ୟ ପ୍ରମାଣ ଯୋଗାଇ ଦିଏ। କିନ୍ତୁ ଏହାକୁ ଏକ ବଡ଼ ଲାଭ ବୋଲି କଦାପି କୁହାଯାଇ ପାରିବ ନାହିଁ, ତେଣୁ ଫ୍ରାସୋୟା ମୋରିଆକ୍‌ଙ୍କର ଉପନ୍ୟାସ ପଢ଼ି ତାଙ୍କ ବିଷୟରେ କେତେକ ବିବରଣୀ ସଂଗ୍ରହ କରିବାର ଉତ୍ସାହ ତାଙ୍କର ରଚନାବଳୀର ସମଗ୍ର ଅପ୍ରୟୋଜନୀୟତାର କ୍ଷତିପୂରଣ କରିବା ଲାଗି ଆଦୌ ଯଥେଷ୍ଟ ନୁହେଁ ଓ ଯେଉଁମାନଙ୍କ ଲାଗି ସାହିତ୍ୟ ରଚନା କରୁଚନ୍ତି, ସେମାନଙ୍କ ଲାଗି ସେ ସବୁ କ୍ଷତିକାରକ ହେବାର ଅନେକ ସମ୍ଭାବନା ରହିଚି

ବୋଲି ମୁଁ ଉଲ୍ଲେଖ କରିଥିବା ଧର୍ମଯାଯକ ଯଦି କହନ୍ତି, ତେବେ ସେପରି ବିଚାର କରିବାର ସମ୍ପୂର୍ଣ୍ଣ ଅଧିକାର ତାଙ୍କୁ ମୁଁ ଅବଶ୍ୟ ଦେବି। ତେଣୁ ଖ୍ରୀଷ୍ଟିଆନ୍ ଯଦି ଉପନ୍ୟାସକାର ମଧ୍ୟ ହୋଇଥାଏ, ତେବେ ଉପନ୍ୟାସ ଲେଖିବାକୁ ତା'ର 'ବେଉସା' ବୋଲି କହିବା ବ୍ୟତୀତ ଅନ୍ୟ କୌଣସି ପ୍ରକାର କୈଫିୟତ୍ ସେ ଦେଇପାରିବ ନାହିଁ। ସେ ଉପନ୍ୟାସ ଲେଖେ, କାରଣ ସେ ବେଶ୍ ଯୁକ୍ତିଯୁକ୍ତ ଭାବରେ ଭାବେ ଯେ ଲେଖିବା ପାଇଁ ହିଁ ସେ ଏହି ସଂସାରରେ ଜନ୍ମ ହୋଇଚି। ସେ ଦେଖୁଚି ଯେ ତା'ର ବାଲ୍ୟକାଳରୁ ସେ ଏଇଥି ଲାଗି ଅବିରାମ ସଂଗ୍ରାମ କରି ଆସିଚି। ତାକୁ ମୁଁ ମୋର ଜଣେ ପରିଚିତ ନୃତ୍ୟଶିକ୍ଷୀଙ୍କ ସହିତ ତୁଳନା କରିବି, ଯିଏ କି ଛଅ ବର୍ଷ ବୟସରେ ମଧ୍ୟ କଷ୍ଟସାଧ୍ୟ ନୃତ୍ୟ ଗୁଡ଼ିକର ଅଭ୍ୟାସ କରୁଥିଲେ, ବା ପାଦ୍ରୀ ହୋଇଥିବା ମୋର ଭାଇଙ୍କ ସହିତ ତୁଳନା କରିବି ଯିଏ କି ଠିକ୍ ସେହି ଛଅବର୍ଷ ବୟସରେ ତାଙ୍କର ଶିଶୁ ହାତରେ ତିଆରି କରିଥିବା ପୂଜାବେଦୀ ସମ୍ମୁଖରେ ଭକ୍ତିଭରେ ପ୍ରଣାମ କରିବାକୁ ମୋତେ ବାଧ୍ୟ କରିଥିଲେ। ଆମର ପୂର୍ବ ନିର୍ଦ୍ଦିଷ୍ଟ ଭାଗ୍ୟ ହେଉଚି ଈଶ୍ୱରଙ୍କର ଇଚ୍ଛାର ପ୍ରକାଶ ମାତ୍ର, ସବୁ ତଥ୍ୟ ପ୍ରକାଶ ପାଇଲା ପରେ ତଥାପି ଏପରି ଏକ ନିଷ୍ପନ୍ନ ସତ୍ୟରେ ଉପନୀତ ହେବାରେ ଯେ କେତେ ଭ୍ରାନ୍ତି ରହିଚି, ତାହା ମୁଁ ଜାଣିଚି। ଯେ କୌଣସି ପୁଣ୍ୟ-ବ୍ୟବସାୟ ପରି ଯେ କୌଣସି ପାପ ବ୍ୟବସାୟ ମଧ୍ୟ ତରୁଣମାନଙ୍କ ମନରେ ଯଥେଷ୍ଟ ପ୍ରେରଣା ଜାଗ୍ରତ କରି ପାରିବ।

ତଥାପି ହୁଏତ ଏକଥା ହୋଇପାରେ ଯେ ଯେଉଁ ଯୁଗରେ ପ୍ରାୟ ସମସ୍ତ ମାନ୍ୟଗଣ୍ୟ ଚିନ୍ତାଶୀଳ ଲେଖକ ସେମାନଙ୍କର ଶକ୍ତିକୁ ବିପ୍ଳବର ବିଷୟ ବସ୍ତୁ ଲାଗି ନିୟୋଜିତ କରୁଚନ୍ତି, ସେହି ଯୁଗରେ ମୋର ସୃଷ୍ଟି ହୋଇଚି ଓ ବିଶ୍ୱବ୍ରହ୍ମାଣ୍ଡର ଏକ କ୍ଷୁଦ୍ରାଦପିକ୍ଷୁଦ୍ର ଅଂଶରେ ମୋର ସ୍ଥାନ ନିର୍ଦ୍ଦିଷ୍ଟ କରି ଦିଆଯାଇଚି। ଭଗବାନଙ୍କର ଅପାର ପରିଶୁଦ୍ଧତାର ସମ୍ମୁଖରେ ମଣିଷକୃତ ପାପର ସାକ୍ଷୀ ହୋଇ ରହିବାକୁ, ବା "Le Sagouin" ର ସମାଲୋଚନା କରି ଶ୍ରୀ R. M. Alberes କହିଲା ପରି "ତତ୍ତ୍ୱ ଶାସ୍ତ୍ରଦ୍ୱାରା ନିର୍ଣ୍ଣିତ ହୋଇଥିବା ସାହିତ୍ୟର ସମ୍ମୁଖରେ ମନୋବିଜ୍ଞାନକୁ ଭିତ୍ତି କରି ସୃଷ୍ଟି କରାଯାଇଥିବା ଏକ ସାହିତ୍ୟକୁ ଠିଆ କରାଇବା ଲାଗି " ମୋର ସୃଷ୍ଟି ହୋଇଚି। "ତତ୍ତ୍ୱଶାସ୍ତ୍ରରେ ମଣିଷ ପ୍ରତ୍ୟେକ ଜିନିଷକୁ ବିଦ୍ରୂପ କରେ, ମନୋବିଜ୍ଞାନରେ କେବଳ ଆପଣାକୁ ବିଦ୍ରୂପ କରିବାକୁ ହୁଏ।"



# ଫ୍ରାଁସୋୟା ମୋରିୟାକ୍

ଖ୍ୟାତି ଓ ପ୍ରଭା ଅଧିକରୁ ଅଧିକ ବୃଦ୍ଧି ପାଉଛି । ତାଙ୍କର ସୁଦୃଢ଼ ସାହିତ୍ୟିକ ଦୃଷ୍ଟିକୁ ସେ ତାଙ୍କର ସମସାମୟିକମାନଙ୍କୁ ସନ୍ତୁଷ୍ଟ କରିବାଲାଗି କଦାପି ବ୍ୟବହାର କରି ନାହାନ୍ତି, କାହାରି ସହିତ କୌଣସି ସାଲିସ୍ କରି ସେ ଆପଣାର ଖ୍ୟାତି କିଣି ନାହାନ୍ତି । ଅଧିକନ୍ତୁ ତାଙ୍କର ସାହିତ୍ୟରେ ଏକ ଆଧ୍ୟାତ୍ମିକ ପ୍ରେରଣାର ଗତିସ୍ରୋତ ସୁସ୍ପଷ୍ଟ ହୋଇ ରହିଛି; ଦୈନନ୍ଦିନ ଜୀବନର ଘଟଣା ଉପରେ ତାଙ୍କର ମନ୍ତବ୍ୟଗୁଡ଼ିକ ବୃହତ୍ତର ପୃଥିବୀର ସମ୍ମାନିତ ଦୃଷ୍ଟି ଆକର୍ଷଣ କରି ପାରିଛି । ମଣିଷର ହୃଦୟକୁ ସେ ଠିକ୍ ଯେଉଁପରି ଦେଖିଛନ୍ତି, ଠିକ୍ ସେହିପରି ମନୁଷ୍ୟତିତ, ଅତି ମନୁଷ୍ୟଚିତ ଓ କେବଳ ମନୁଷ୍ୟଚିତ ଭାବରେ ତାହାର ପରିବେଷଣ କରିଛନ୍ତି ।

**ସୁଇଡିଶ୍ ଏକାଡେମୀ**

ପାପକୁ ଏତେ ପ୍ରାଧାନ୍ୟ ଦେବାର ଅର୍ଥ ହେଉଛି ଶୁଦ୍ଧତାକୁ ପ୍ରାଧାନ୍ୟ ଦେବା, ଶିଶୁ ଓ ଶିଶୁ-ସୁଲଭତାକୁ ପ୍ରାଧାନ୍ୟ ଦେବା । ଲୋକେ ମୋର ଉପନ୍ୟାସରେ କେବଳ ବିଷଧର ସର୍ପଗୁଡ଼ାକୁ ଦେଖିଛନ୍ତି, କିନ୍ତୁ ଏକାଧିକ ସ୍ଥାନରେ ସେଥିରେ ଯେଉଁ କପୋତମାନେ ବସାବାନ୍ଧି ରହିଛନ୍ତି, ସେଗୁଡ଼ିକ ଉପରେ କାହାରି ଆଖି ପଡ଼ି ନାହିଁ ।

**ଫ୍ରାଁସୋୟା ମୋରିୟାକ୍**

ପ୍ରାଚ୍ୟରୁ ପାଶ୍ଚାତ୍ୟ ଉଦ୍ଦେଶ୍ୟରେ ଏବଂ ପାଶ୍ଚାତ୍ୟରୁ ପ୍ରାଚ୍ୟ ଉଦ୍ଦେଶ୍ୟରେ ବାହାରିଥିବା ଏହି ସମାନ୍ତରାଳ ଅନୁବାଦ-ସମାରୋହକୁ ମାନବିକ ଭ୍ରାତୃତ୍ୱର ଏକ ସମାନ୍ତରାଳ ସ୍ପନ୍ଦନ ବୋଲି କହିବାକୁ ହିଁ ହେବ ।

**ଆନ୍ତର୍ଜାତିକ-ସଭାପତି, ପି.ଇ.ଏନ୍.**